# ପଦ୍ମ ପୁରାଣ

## ସୃଷ୍ଟିଖଣ୍ଡ

ପ୍ରଥମ ସଂସ୍କରଣ–୧୯୭୯
ଦ୍ୱିତୀୟ ସଂସ୍କରଣ– ୨୦୦୧
ତୃତୀୟ ସଂସ୍କରଣ– ୨୦୦୯

(ମୂଳ ସଂସ୍କୃତରୁ– ଅନୁବାଦିତ)

ପ୍ରକାଶକ/ ପ୍ରାପ୍ତିସ୍ଥାନ– ଧର୍ମଗ୍ରନ୍ଥ ଷ୍ଟୋର



ପରିଚାଳକ– ଶ୍ରୀ ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ-୨
(ଫୋନ୍ : ୦୬୭୧-୨୫୦୮୨୯୬
ମୂଲ୍ୟ : ଷାଠିଏ ଟଙ୍କା ମାତ୍ର

# ସୂଚୀପତ୍ର

ଓଁ

## ଶ୍ରୀ ଗଣେଶାୟ ନମଃ

# ପଦ୍ମପୁରାଣ – ସୃଷ୍ଟିଖଣ୍ଡ

### ମଙ୍ଗଳାଚରଣ

ପୁରାଣ ପୁରୁଷ ଭଗବାନ ନାରାୟଣ
ନମୋ ନମୋ ନରଶ୍ରେଷ୍ଠ ପୁରୁଷ ପୁରାଣ
ବିଦ୍ୟା ବୁଦ୍ଧି ପ୍ରଦାୟିନୀ ମାଗେ ସରସ୍ୱତୀ
ଜଡ଼ତା ବିନାଶିନୀ ତୁ ମାଗେ ଭଗବତୀ
କରଯୋଡ଼ି ତୋର ପାଦେ କରେ ନମସ୍କାର
ଜୟ ମାଗୋ ବୀଣାପାଣି ବିଦ୍ୟାର ଭଣ୍ଡାର
ଓଁକାରରେ ବିଭୂଷିତା ବ୍ରହ୍ମଦୃଷ୍ଟି ପୂତା
ହେପୁଷ୍କର ତୁମଜଳ ଅଶୁଭ ନିହନ୍ତା
ସଂଭୋଗ ଅଭୋଗ ସେବା ଅତୀବ ସୁନ୍ଦର
ହେ ପୁଷ୍କର ତୀର୍ଥବର ମୋରେ ରକ୍ଷାକର
ଜୟ ଜୟ ପୁଷ୍କର ହେ ତୀର୍ଥଙ୍କ ରାଜନ
କମଳ ବାସିତ ଜଳେ ସର୍ବଦା ପାବନ
ସୁନିର୍ମଳ ଚନ୍ଦ୍ର ଜିଣା ତୁମ ଦେହକାନ୍ତି
ମଣିଗଣେ ନିନ୍ଦାକରେ ତୁମ ଅଙ୍ଗ ଜ୍ୟୋତି
ସଂଲଗ୍ନ ଚିତ୍ତଯାହାର ବ୍ରହ୍ମ ଉତ୍ପତ୍ତିରେ
ନିରତ ଯେ ରତ ନୀତି ବ୍ରତ ପାଳନରେ
ସେହି ଗୁରୁଦେବ ପାଦେ ମୋର ନମସ୍କାର
ବିପ୍ର ବୃନ୍ଦରେ ସେବିତ ସଦା ଯା ପୟର
ପଦ୍ମ ପୁରାଣ ଅଟଇ ଅପାର ସାଗର
କ୍ଷୁଦ୍ର ଜ୍ଞାନ ନାବରେ ମୁଁ ଭାବେ ହେବି ପାର
ଗଣପତି ସରସ୍ୱତୀ ନକଲେ କରୁଣା
ଜାଣୁଛିଭଲେ ମୋ ବୁଦ୍ଧି ହୋଇଯିବ ବଣା
କରୁଣାନିଧି ସେ ତାଙ୍କ କୃପାକଣା ପାଇ
ତରିବାକୁ ଏ ଦୁସ୍ତର ସିନ୍ଧୁ ବିଚରଇ
ଦିନେ ବ୍ୟାସ ଶିଷ୍ୟ ନାମ ଲୋମହରଷଣ
ଉଗ୍ରଶ୍ରବା ବୋଲି ମଧ ଅଟେ ତାଙ୍କନାମ
ଗଲେ ଦିନେ ସୂତଋଷି ଥିଲେ ଏକାନ୍ତରେ
କହିଲେ ତାହାଙ୍କୁ ଏହା ଅତ୍ୟନ୍ତ ଆଦରେ
ହେ ସୁତ ଆଶ୍ରମେ ଥାଇ ବିଜ୍ଞ ଋଷିଗଣ
କରନ୍ତିଇଚ୍ଛା ଶୁଣିବେ ଧର୍ମ ଓ ପୁରାଣ
ମୋହଠାରୁ ସବୁକଥା ଶୁଣି ତୁମ୍ଭେ ଯିବ
ଯାହା ପଚାରିବେ ତାଙ୍କୁ ସେ ସବୁ କହିବ
ଏବେ ମୁଁ ଯାହା ତୁମ୍ଭଙ୍କୁ କହିବି ବୁଝାଇ
ପୂର୍ବରୁ ଶୁଣିଛି ବେଦବ୍ୟାସ ପାଶେ ଥାଇ
ବଦରିକା ବନେ ମୁନିଙ୍କର ଜିଜ୍ଞାସନେ
ବ୍ୟାସଦେବ କହିଥିଲେ ଏହା ହୃଷ୍ଟମନେ
ଧର୍ମଜ୍ଞାନ ଆକାଂକ୍ଷାରେ ପ୍ରୟାଗ ତୀର୍ଥରେ
ଶ୍ରେଷ୍ଠମୁନିମାନେ ଛନ୍ତି ବିଚାରଚିତ୍ତରେ
ସରବ ବ୍ୟାପକ ତୁମେ ସର୍ବହିତକର
ତୁମଦ୍ୱାରା ହେବ ସେମାନଙ୍କ ଉପକାର
ଇଚ୍ଛାଥାଏ ଯାର ପୁଣ୍ୟ ପ୍ରଦେଶ ଦର୍ଶନ
ସୁନ୍ଦର ଆଚର ସତ୍ୟ ପଥରେ ଗମନ
ମଙ୍ଗଳ ବିକ୍ରମଶୀଳ ଅଟନ୍ତି ଯେମାନେ
ଉପମାରହିତ ଜାଣ ଅଟନ୍ତି ସେମାନେ
ସାବଧାନ ହୋଇ ଏହି ପନ୍ଥା ଯେ ଧରିବ
ନିଶ୍ଚୟ କହୁଛି ହିତ ନିଶ୍ଚେ ସେ ପାଇବ
ଏ ପଥରେ ଯାଏ ଯେହୁ ତାର ଉପଦେଶ
ପରମ ପୁଣ୍ୟ ରୂପରେ ଲଭଇ ପ୍ରକାଶ
ବ୍ୟାସଙ୍କ ମୁଖରେ ଏହା ହୋଇଛି କଥିତ
ଏଥିରେ ସନ୍ଦେହ କିଛି ନମଣ ହେ ସୁତ
ପ୍ରୟାଗ ତୀର୍ଥର ମୁନିଗଣେ ଏହା କହି
ଥରେ ବ୍ୟାସ ଶିଷ୍ୟ ଗଲେ ଅନ୍ତର୍ଦ୍ଧ୍ୟାନହୋଇ
ଏହିଠାରେ ଗଙ୍ଗା ହୋଇ ଅଛନ୍ତି ସଂକୀର୍ଣ୍ଣ
ନଇମିଷାରଣ୍ୟ ବୋଲି ଅଟେ ତାର ନାମ

ସେହିସ୍ଥାନେ ଏବେ ଋଷିମାନଙ୍କ ଯାଗରେ
ତୁମେ ଯାଇ ଧର୍ମଶିକ୍ଷା ଦିଅ ସୁଚିତ୍ତରେ
ତଦପରେ ସୂତଋଷି ସର୍ବଶାସ୍ତ୍ର ବେତ୍ତା
ମୁନିଙ୍କ ସମ୍ମୁଖେ ଗଲେ ମନୁଛାଡ଼ି ଚିନ୍ତା
ତାହାଙ୍କ ପ୍ରବେଶ ଜାଣି ଶ୍ରେଷ୍ଠ ମୁନିଗଣ
ଆସନରୁ ଉଠି ନେଲେ ପାଛୋଟି ବହନ
ସର୍ବଋଷି ଗଣେ ମୁନି ବିହିଲେ ପ୍ରଣାମ
ସର୍ବଋଷି ଦେଖି ତାହା ହେଲେ ପୂର୍ଣ୍ଣକାମ
ଯାଗର ସଦସ୍ୟ ସହ ଅନ୍ୟ ଋଷିଗଣ
ବିହିତ ବିଧାନେ ତାଙ୍କୁ କଲେ ସନମାନ
ଉପଯୁକ୍ତ ଆସନରେ ସୁମନେ ବସାଇ
କହିଲେ ଆଗତ କହ କେଉଁ କାର୍ଯ୍ୟପାଇଁ
ଦେବତା ମାନଙ୍କପରି ତୁମ୍ଭେ ତେଜସ୍କର
ଆଗମନର କାରଣ କହନ୍ତୁ ତୁମ୍ଭର
କେଉଁ ଦେଶେ ଥିଲ ଏବେ କେଉଁଠୁ ଆସିଲ
ଭାଗ୍ୟଥିଲା ଏ ସ୍ଥାନକୁ ପଦରଜ ଦେଲ
ନୈମିଷାରଣ୍ୟରେ ସ୍ଥିତ ଋଷିମାନଙ୍କର
ପ୍ରତିନିଧିଥିଲେ ସଉନକ ଋଷିବର
ଋଷିଗଣଙ୍କ ଅଗ୍ରଣୀ ସୌନକ ପ୍ରଶ୍ନରେ
କହିଲେ ସୂତ ମହର୍ଷି ଏହା ମୋଦଭରେ
ବ୍ୟାସସୁତ ଶୁକ ନିଜ ପିତା ଆଦେଶରେ
କହିଗଲେ ଏହା ମୋତେ ଆସି ସୁଚିତ୍ତରେ
ନୈମିଷାରଣ୍ୟ ନିବାସୀ ସର୍ବତପଚାରୀ
ବୁଝିବେ ଧର୍ମର ତତ୍ତ୍ୱ ଅଛନ୍ତି ବିଚାରି
ଏବେ ଯାଇ ଋଷିଗଣ ପଚାରିବେ ଯାହା
ବିରକ୍ତ ନହୋଇ ତାଙ୍କୁ ବୁଝାଇବ ତାହା
ପଚାରୁଛି କହ ତେଣୁ ବିଜ୍ଞଋଷିଗଣ
ସନ୍ଦେହ ଯାହା ରହିଛି କରିବି ଭଞ୍ଜନ
ନିଗମ ପୁରାଣ ଇତିହାସ ଯାହା ଅଛି
ପଚାରିବ ଯାହା ତାହା କହିଦେବି ବାଛି
ଋଷିଗଣ ଶୁଣି ସୂତ ବଚନ ମଧୁର
ଲାଭକଲେ ହୃଦୟରେ ଆନନ୍ଦ ଅପାର
ନିଜ ନିଜ ଅଭିଳାଷ ପୁରାଣ ଶ୍ରବଣେ
କହି କହିଲେ ତାହାଙ୍କୁ ପ୍ରଫୁଲ୍ଲିମନେ
ଆହେ ସୂତପତି ତୁମ୍ଭେ ଅଟ ମହା ଜ୍ଞାନି
ବ୍ୟାସଶିଷ୍ୟ ଗୁଣୀଗଣ ମାନଙ୍କେ ଅଗ୍ରଣୀ

ତେଣୁ ତୁମ୍ଭେ ଅଟ ସର୍ବଜ୍ଞାନୀଙ୍କର ବର
ବ୍ରହ୍ମଜ୍ଞାନେ ବିଶେଷରେ ଅଛି ଅଧିକାର
ଅରଜିଛ ଜ୍ଞାନ ଇତିହାସ ପୁରାଣରେ
ସନ୍ତୁଷ୍ଟ କରିଛ ବ୍ୟାସେ ଉତ୍ତମ ସେବାରେ
ପୁରାଣଗାଭୀକୁ ତୁମେ କରିଛ ଦୋହନ
ଦୟାବହି କରଏବେ ତ ପରିବେଷଣ
ସାର୍ଥକ ପୁରାଣ ଯେବେ ଯୋଗ୍ୟ ଶ୍ରୋତାବକ୍ତା
ନୁହନ୍ତି କେହି ଅଯୋଗ୍ୟ ଏଥି ଯେତେ ଶ୍ରୋତା
ଭିନ୍ନ ଭିନ୍ନ ଗୋତ୍ର ଜାତ ଏହି ଋଷି ଯେତେ
ପୁରାଣ ତୁମ୍ଭ ମୁଖରୁ ଇଛନ୍ତି ସମସ୍ତେ
କରନ୍ତି ଯେମାନେ ବ୍ରହ୍ମ ବିଷୟେ ବିବାଦ
ଦୂର ହୋଇଯିବ ଶୁଣି ତାହାଙ୍କ ବିଷାଦ
ଉପସ୍ଥିତ ଏ ଯାଗରେ ଯେତେ ମୁନିବର
ପୁରାଣ ଶୁଣି ସମସ୍ତେ ହେବେ ହର୍ଷଭର
ପୁରାଣ ମାନଙ୍କେ ଶ୍ରେଷ୍ଠ ଶ୍ରୀ ପଦ୍ମପୁରାଣ
କହୁଛନ୍ତି ସର୍ବେ ଏହା ଶୁଣିଅଛି କାନ
କର ତେଣୁକରି ପଦ୍ମପୁରାଣ ବର୍ଣ୍ଣନା
ଜନ୍ମିଲା ସେ କାହୁଁ ତାହା କହ ମହାମନା
କହିବ ପ୍ରଥମେ ପଦ୍ମ ଜନମ ବୁଝାଇ
ବ୍ରହ୍ମା ତହୁଁ କେଉଁପରି ଥିଲେ ଜାତହୋଇ
ଜନମି ପଦ୍ମରୁ ସୃଷ୍ଟି ସର୍ଜିଲେ କିପରି
ସେହି ସବୁ କଥା ଦେବ କହନ୍ତୁ ବିସ୍ତାରି
ସୌନକଙ୍କ ଏହି ପ୍ରଶ୍ନେ ସୂତ ମହାମତି
କହିଲେ ଯେ ବାଣୀ ତାହା ସୁମଧୁର ଅତି
ଋଷିଗଣେ ପୃଷ୍ଟ ସୂତ ବିହିଲେ ଉତ୍ତର
ଏ ସତ୍ୟ ପଦ୍ମପୁରାଣ ପୁରାଣଙ୍କେ ସାର
ସମସ୍ତେ ସବୁ ଧର୍ମରେ ହୋଇଛ ତତ୍ପର
ପୁରାଣ ତତ୍ତ୍ୱରେ ଇଚ୍ଛା ବଳିଛି ଆବର
ଜାଣେ ତୁମ୍ଭେ ସର୍ବେ ଅଟ ମହତ ପୁରୁଷ
ତୁମ୍ଭଙ୍କୁ ପୁରାଣ କହି ବଢୁ ମୋ ପୌରୁଷ
ଉତ୍ତମ ପୁରୁଷ ରାଜଋଷି ଦେବଗଣ
ତେଜସ୍ୱୀ ବୋଲିଣ ଭବେ ରହିଛି ପ୍ରମାଣ
ଏହିମାନେ ସନାତନ ଧର୍ମର ରକ୍ଷକ
ଧନ୍ୟହୁଏ ତାଙ୍କୁ ଧର୍ମ ଜ୍ଞାନ ଦେବ ଲୋକ
ପୁରାଣ ଇତିହାସରେ ଧର୍ମବାଦୀ ଯେତେ
ସେ ମହାତ୍ମାଗଣେ ସ୍ତୁତି କରନ୍ତି ସମସ୍ତେ

ନିଗମରେ ସୂତଙ୍କର ନାହିଁ ଅଧିକାର
ବୋଲି ଭବେ ଏହିମାନେ କରନ୍ତି ପ୍ରଚାର
ନରପତି ବେଣୁନାମେ ତାହାଙ୍କ ତନୟ
ପୃଥୁଙ୍କର ଯଶଭବେ ହୁଅନ୍ତେ ଉଦୟ
ଯଜ୍ଞ ସ୍ଥାନକୁ ତାଙ୍କର ହୋଇ ଆମନ୍ତ୍ରିତ
ସମାଗତ ଶୁକ ସଙ୍ଗେ ଅନ୍ୟଋଷିବ୍ରାତ
ସନ୍ତୋଷ କରିଣ ପୃଥୁ ତାହାଙ୍କୁ ସ୍ତବରେ
ଲାଭକଲେ ବର ବେନି ଅତି ହର୍ଷଭରେ
ମାଗଧ ଯୋଗୁଁ ମଗଧ ସୁତ ହେତୁସୂତ
ହୁଅନ୍ତେ ପ୍ରକାଶ ନାମ ହୋଇଅଛି ସୁତ
ଗ୍ରହଙ୍କ ସହିତ ଭୃଗୁ ଇନ୍ଦ୍ରଙ୍କ ଯାଗରେ
ପ୍ରବୃତ୍ତ ହୁଅନ୍ତେ ଗାର୍ହସ୍ପତ୍ୟ ହବନରେ
ହୋଇଥିଲେ ଉତପନ୍ନ ତହୁଁ ଯେଉଁ ସୁତ
ଶିଷ୍ୟକର ପୃତ ଗୁରୁ କରରେ ସଂଯୁତ
ନିମ୍ନ ଅଧରରୁ ମନ୍ତ୍ର ଉଚ୍ଚରିତ ଯେଣୁ
ଜନ୍ମ ବର୍ଣ୍ଣଶଙ୍କରଙ୍କ ହୋଇଥିଲା ତେଣୁ
କ୍ଷତ୍ର ବୀର୍ଯ୍ୟରେ ତପ୍ରେ ବ୍ରହ୍ମଯୋନୀ ଜାତ
ତାହାଙ୍କ ଦ୍ୱାରା ଚୌଧର୍ମ ହୋଇଛି କୀର୍ତ୍ତୀତ
କ୍ଷେତେ ଯେମାନେ ନିର୍ବାହ କରନ୍ତି ଜୀବନ
ମଧ୍ୟମ ସେହି ଧରମ ସୁତ ତାଙ୍କ ନାମ
ମୋଦ୍ୱାରା ସୂତ ବ୍ରାହ୍ମଣ ହୋଇଲେ ସ୍ୱୀକୃତ
ତେଣୁ ପୁରାଣ କଥନେ ଅଟନ୍ତି ସମର୍ଥ
ବ୍ରହ୍ମବାଦୀ ବେଦ ଅର୍ଥ ଚର୍ଚ୍ଚାରୁ ତାଙ୍କର
ପୁରାଣରେ ସମାନରେ ଅଛି ଅଧିକାର
ପୁରାଣ ଯଦ୍ୟପି ଦେବ ମୁନିଙ୍କେ ପୂଜିତ
କହିବାର ତୁମ୍ଭେ ତାହା ନୁହେ ଅବିହିତ
ପିତୃଙ୍କ ମାନସ ଜାତ କନ୍ୟା ବାସବର
ହୋଇବାରୁ ପୀଡ଼ା ସେହି ଲଭିଲା ଅପାର
କ୍ଷୋଭରେ ମତ୍ସ୍ୟ ଗରଭେ ହେଲା ଅବସ୍ଥିତ
ଅରଣୀ ଗର୍ଭେ ପାବକ ବାସକଲା ମତ
ତାହାର ଗର୍ଭରୁ ଋଷି ହୋଇଲେ ଜନମ
ପରାଶର ବୋଲି ବିଶ୍ୱେ ଖ୍ୟାତ ତାଙ୍କ ନାମ
ଶ୍ରୀହରିଙ୍କୁ ଆଶ୍ରାକରି ସତ୍ୟ ଅନୁସରି
ପୁରାଣ ପୁରୁଷ ବ୍ରହ୍ମ ବାକ୍ୟକୁ ଆଦରି
ଛଦ୍ମମେ ନର ରୂପକୁ ଯେ କଲେ ଧାରଣ
ତାହାଙ୍କର ସୁତ ବ୍ୟାସଦେବ ବୋଲିଜାଣ
ଜନ୍ମହୋଇ ସବୁବେଦ ସଂଗ୍ରହ ସେ କଲେ
ମତି ମନ୍ଦିରରେ ସ୍ମୃତି ସାଗର ମନ୍ଥିଲେ
ଜନମିଲେ ତହୁଁ ମହା ଭାରତ ଚନ୍ଦ୍ରମା
ହୋଇପାରେ ଭବେ କିଏ ତାହାଙ୍କ ଉପମା
ସୂର୍ଯ୍ୟ ବିଷ୍ଣୁ ସମ ପୃତ ଶ୍ରୀ ମହାଭାରତ
ତା ଅଭାବେ ତବେ ଭବ ହୁଅନ୍ତାଚ୍ଛାଦିତ
ସେହି ବ୍ୟାସ ଦ୍ୱୈପୟନ ତେଣୁ ବିଷ୍ଣୁ ସମ
ସନ୍ଦେହ ଏଥିରେ ତିଳେ ମନକୁ ନଆଣ
ପୁଣ୍ଡରୀକାକ୍ଷ ଶ୍ରୀକୃଷ୍ଣ ନାରାୟଣ ବିନା
ଆଉ କେ ହୋଇପାରେ କି ଚିତ୍ତେ କରଘେନ
ଗ୍ରନ୍ଥ ଶ୍ରୀ ମହାଭାରତ ଯେ କଲେ ରଚନା
କେ ତାଙ୍କୁ ହୋଇବ ସମ ଆହେ ମହାମନ
ଜାଣନ୍ତି ସକଳ କଥା ସେହି ବ୍ରହ୍ମବାଦୀ
ସମଗ୍ର ବିଶ୍ୱେ ପୂଜିତ ଏହା ନିର୍ବିବାଦୀ
ତେଜସ୍ୱୀ ବ୍ୟାସ ଦେବଙ୍କ ଶ୍ରୀମୁଖରୁ ମୁହିଁ
ଶୁଣିଛି ଯେତେ ପୁରାଣ ଆଜି କହିବଇଁ
ଶାସ୍ତ୍ରଙ୍କେ ସାର ପୁରାଣ ଏ ବ୍ରହ୍ମ ବଚନ
ସକଳ ଲୋକଙ୍କ ମତେ ଅଟଇ ଉତ୍ତମ
ପୁରାଣରୁ ଉତପନ୍ନ ହେଲା ସବୁଜ୍ଞାନ
ତହୁଁ ଜାତ ପୁଣ୍ୟମୟ ତ୍ରିବର୍ଗ ସାଧନ
ଶତକୋଟି ଯୁଣ ତାର ଅଟଇ ବିସ୍ତାର
ତା ଲୋକ ଶେଷ କେଶବ ଅଟେ ଅଶ୍ୱବର
ସଂଗ୍ରହ କରିଣ ବେଦ ବ୍ରହ୍ମ ବଚନରେ
ସାଙ୍ଗୋପାଙ୍ଗ ରଖିଲେ ତା ଉପନିଷଦରେ
ଚାରି ବେଦର ଶରୀର ଅଟେ ଶାସ୍ତ୍ର ଯାହା
ନ୍ୟାୟ ପୁରାଣ ସହିତ ରକ୍ଷେ ନେଲେ ତାହା
ପ୍ରଭୁ ମତ୍ସ୍ୟରୂପ ଧରି କଲେ ତା ଉଦ୍ଧାର
ସଲିଳରେ ରହି ପୁଣି ଧଇଲେ ମନ୍ଦର
ଲଭିବେଦ ତାହା ବ୍ରହ୍ମମୁନିଙ୍କୁ କହିଲେ
ହୃଦରେ ସଂଶୟ ଏଥେ ନଘେନିବ ତିଳେ
ପ୍ରବୃତିଆସଇ ଯେବେ ଶାସ୍ତ୍ର ପୁରାଣରେ
ଶ୍ରବଣ ଇଚ୍ଛା ଉଦୟେ ହୁଅଇ ଚିତ୍ତରେ
ତେଣୁ ହରି ବ୍ୟାସଦେବ ରୂପେ ଅବତରି
ବେଦ ସଂଗ୍ରହରେ ରତ ହେଲେ ଆଚ୍ଛାକରି
ଶ୍ଳୋକ ତାର ଚାରିଲକ୍ଷ ଅଟଇ ଦ୍ୱାପରେ
ପ୍ରଚାରିଲେ ବ୍ୟାସ ଅଷ୍ଟ ଦଶ ବିଭାଗରେ

ଶତକୋଟି ଶ୍ଳୋକରେ ତା ସ୍ୱର୍ଗେ ପ୍ରଚାରିତ
ଏହାକୁ ଶ୍ରବଣ କରି ନହୁଅ ଚକିତ
ସଂକ୍ଷେପରେ ମାତ୍ର ଚାରିଲକ୍ଷ ଅଛି ହୋଇ
ମୁହିଁ ସେ ସବୁର ସାର ଆଜି କହିବଇଁ
ଏ ସୃଷ୍ଟିଖଣ୍ଡ ପ୍ରଥମ ପଦ୍ମ ପୁରାଣର
ଦ୍ୱିତୀୟରେ ଭୂମଣ୍ଡଳ ଖଣ୍ଡ ଚିତ୍ତେଧର
ତୃତୀୟରେ ସ୍ୱର୍ଗଖଣ୍ଡ ପାତାଳ ତାପରେ
ଉତ୍ତରଖଣ୍ଡ କଥିତ ହୁଏ ପଞ୍ଚମରେ
ସେହି ମହାପଦ୍ମ ଗନ୍ଧେ ବିଶ୍ୱ ଆମୋଦିତ
ଆଶ୍ରୟ ସମସ୍ତଙ୍କର ଏହାର ବୃତ୍ତାନ୍ତ
ତେଣୁ ଖ୍ୟାତ ହେଲା ପଦ୍ମ ପୁରାଣ ନାମରେ
ଋଷିବୃନ୍ଦ ଏହିକଥା ରଖିବ ମନରେ
ଏଥିରେ ହୋଇଛି ବିଷ୍ଣୁ ମହିମା ବର୍ଣ୍ଣିତ
ବ୍ରହ୍ମାଙ୍କର ଶିକ୍ଷା ପାଇଁ ବିଷ୍ଣୁଙ୍କେ କଥିତ
ମରୀଚୀଙ୍କୁ ବ୍ରହ୍ମା ଏଥୁ କେତେ ଥିଲେ କହି
ପଦ୍ମପୁରାଣ ନାମରେ ନାମିତ କରାଇ
ପାଞ୍ଚୋଟି ପର୍ବରେ ତାକୁ ବେଦବ୍ୟାସ ଯତି
ଆନନ୍ଦରେ କହିଛନ୍ତି ଶୁଣ ଦେଇ ମତି
ଆଦ୍ୟ ପୁଷ୍କରେ ଜନମ ପୁରୁଷ ପୁରାଣ
ତୀର୍ଥ ପର୍ବରେ ହୋଇଛି ଗ୍ରହଙ୍କ ବର୍ଣ୍ଣନ
କ୍ଷତ୍ରୀୟଙ୍କର ଦକ୍ଷିଣା ଦାନ ତୃତୀୟରେ
ବଂଶାନୁଚରିତ ଅଛି ପର୍ବ ଚତୁର୍ଥରେ
ପଞ୍ଚମରେ ମୋକ୍ଷ ତହିଁ ହୋଇଛି କଥିତ
ସମସ୍ତ ତତ୍ୱ ତହିଁରୁ ହୁଅଇ ବିଦିତ ।
ପୌଷ୍କର ପର୍ବରେ ଅଛି ସୃଷ୍ଟିର ବର୍ଣ୍ଣନା
ଚତୁର୍ମୁଖ କଲେ ଯଥା ତାହାର ସର୍ଜନା
ପୂର୍ଣ୍ଣ ଏହା ଦେବଋଷି ପିତୃ ଉତ୍କର୍ଷରେ
ସପର୍ବତ ଦ୍ୱୀପ ପାରାବାର ଦ୍ୱିତୀୟରେ
ତୃତୀୟ ସର୍ଗରେ ଦକ୍ଷ ପ୍ରଜାପତିଙ୍କର
ଶାପର ବିଷୟ ରଖିଛନ୍ତି ଋଷିବର
ଚତୁର୍ଥ ସର୍ଗରେ ରାଜାମାନଙ୍କ ଉତ୍ପତ୍ତି
ବର୍ଣ୍ଣନା କରଅଛନ୍ତି ବ୍ୟାସ ମହାଯତି
ବଂଶ ପରିଚୟ ଆଦି ରହିଛି ତହିଁରେ
ମୋକ୍ଷ ମାର୍ଗର ବର୍ଣ୍ଣନା ଅଛି ପଞ୍ଚମରେ
ସକଳ ବ୍ରାହ୍ମଣ ଶୁଣ ଏ ପଦ୍ମପୁରାଣ
ଗାତ୍ରେ ଭରିଅଛି ବହୁ ବିଷୟ ବର୍ଣ୍ଣନ
ସେ କାରଣୁ ଅଟେ ଏହି ପୁରାଣ ବିଖ୍ୟାତ
ମୋକ୍ଷ ପ୍ରଦାନ ନିମନ୍ତେ ଅତୀବ ପବିତ୍ର
ସନ୍ତୋଷ ହୁଅନ୍ତି ଏହା ଶୁଣି ଦେବକୁଳ
ମାନବଙ୍କ ହୃଦୟରୁ ନାଶ କରେ ମଳ
ହୃଦୟରେ ଧ୍ୟାୟି ପାଦ ପଦ୍ମ ହରିଙ୍କର
କବି ଗୋପିନାଥ କଲା ଏହା ଭାଷାନ୍ତର

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ସୂତ ସୌନକ ସମ୍ବାଦେ ମଙ୍ଗଳାଚରଣୋ
ନାମ–ପ୍ରଥମ ସର୍ଗଃ

□

## ଦ୍ୱିତୀୟ ଅଧ୍ୟାୟ

### (କାଳପରିମାଣ ନିର୍ଣ୍ଣୟ)

କହନ୍ତି ସୂତ ଶୁଣନ୍ତୁ ସର୍ବ ତପୋଧନ
ଯେ ବିଷୟ ମୁହିଁ ଏଥି କରିବି ବର୍ଣ୍ଣନ
ପଚାରିଲେ ପୁଲସ୍ତ୍ୟଙ୍କୁ ଭୀଷ୍ମ ପିତାମହ
ମନରେ କିଛି ଏଥିରେ ନଧର ସନ୍ଦେହ
ପୁଲସ୍ତ୍ୟେ ପୁଛିଲେ ପୂର୍ବେ ଭୀଷ୍ମ ପିତାମହ
ଗୁଣହୀନ ବ୍ରହ୍ମ ମହାମହିମ ଅବ୍ୟୟ
ବ୍ରହ୍ମାଙ୍କଠାରେ ଏ ନାମ ଯଦ୍ୟପି ଯୁକତ
ନଥାଏ ବୁଦ୍ଧି ଏକଥା ଅଟେ ଅନୁମିତ
କର୍ତ୍ତା ସେ ସବୁସିଦ୍ଧିର ହୋଇଲେ କିପରି
କହ ତାହା ମନୁ ଶଙ୍କା ଯିବ ଯେଉଁପରି
କହିଲେ ପୁଲସ୍ତ୍ୟ ସେହି ସର୍ବଶକ୍ତିମାନ
ସକଳ ଭାବରେ ମଧ୍ୟ ଅଟନ୍ତି ପ୍ରଧାନ
ଯେହେତୁ ଚିନ୍ତାର ଯୋଗ୍ୟ ନୁହନ୍ତିଟି ସେହି
ନାମ ତାଙ୍କର ଅଚିନ୍ତ୍ୟ ତେଣୁ ଅଛି ହୋଇ
ଯେହେତୁ ଜ୍ଞାନରେ ମାତ୍ର ହୁଅନ୍ତି ଗୋଚର
ତେଣୁ ସେ ଅଟନ୍ତି ସର୍ବ ଭାବର ଆକର
କହିଛନ୍ତି ବୁଧେ ନିତ୍ୟ ହୋଇଲେହେଁ ସେହି
ଉପଚାର ସକାଶରୁ ଜନ୍ମ ପ୍ରକାଶଇ
ଆୟୁଷ ଶହେ ବରଷ ତାଙ୍କର ମତରେ
ମାତ୍ର ତାଙ୍କ କେତେ ଆୟୁ କିଏ କହିପାରେ
ଅର୍ଦ୍ଧ ଆୟୁ ତାହାଙ୍କର ଅଟଇ ପରାର୍ଦ୍ଧ
ଏକ ନାମ ତାହାଙ୍କର ଅଟେ ତେଣୁ ଭାଗ
ହେ ଭୀଷ୍ମ କାଷ୍ଠାର ସଂଖ୍ୟା ଅଟେ ପଞ୍ଚଦଶ
ଅନ୍ୟ ପକ୍ଷରେ ତା ନାମ ଅଟଇ ନିମେଷ

କଳ୍ପ କାଷ୍ଠା ଓ ମୁହୂର୍ତ୍ତ ତ୍ରିଦଶ କ୍ରମରେ
ରାତିଦିନ ଚାଲୁଅଛି ଏପରି ଭାବରେ
ପନ୍ଦର ଦିନରେ ପକ୍ଷ ଦୁଇ ପକ୍ଷେ ମାସ
ଏହିପରି ଷଡ଼ମାସେ ଅୟନ ପ୍ରକାଶ
ଦକ୍ଷିଣ ଉତ୍ତର ନାମେ ଦୁଇଟି ଅୟନ
ତାକୁ ନେଇ ହୁଏ ଏକ ବର୍ଷର ଗଣନ
ଦକ୍ଷିଣାୟନରେ ରାତ୍ର ହୁଏ ଦେବଙ୍କର
ଉତ୍ତରାୟଣ ଦିବସ ବୋଲି ହୃଦେ ଧର
ଏହିପରି ସହସ୍ରେକ ଦିବ୍ୟ ବରଷରେ
ସତ୍ୟ ଆଦି ଚାରିଯୁଗ ହୁଅଇ ବିଧିରେ
ଚାରିଗୋଟି ଯୁଗ ବାର ବରଷେ ହେଉଛି
ବିଭାଗ ଏବେ ତାହାର ତୁମ୍ଭଙ୍କୁ କହୁଛି
ଚାରି ତିନି ଦୁଇ ଏକ କ୍ରମାନ୍ୱୟେ ହୁଏ
ସସ୍ର ଦିବ୍ୟ ବର୍ଷରୂପେ ଏହା ଜ୍ଞାନୀନିଏ
ପୂର୍ବ ସଂଧ୍ୟା ଆସେ ବର୍ଷ ଶତ ହେଲେଗତ
ଯୁଗାନ୍ତରେ ସନ୍ଧ୍ୟା ଆସେ ଏ ବିଜ୍ଞ ସମ୍ମତ
ଏ ବେନି ସନ୍ଧ୍ୟା ମଧ୍ୟରେ ରହେ ଯେ ସମୟ
ସନ୍ଧି ତାର ନାମ ଶାସ୍ତ୍ର କରିଛି ନିଶ୍ଚୟ
ସତ୍ୟ ତ୍ରେତୟା ଦ୍ୱାପର କଳି ନାମ ଯାର
ଯୁଗ ନାମରେ ଏସବୁ ଲଭିଛି ପ୍ରଚାର
ଚାରିକୁ ଏକରେ ଗଣି ଏପରି ହଜାରେ
ଯୁଗର ଗଣନା ହୁଏ ବ୍ରହ୍ମ ଦିବସରେ
ହୁଅଇ ବ୍ରହ୍ମ ଦିବସେ ଚୌଦମନୁ ଶେଷ
କାଳର ଏହି ଗଣନା ଶୁଣ ବୀରଈଶ
ସପ୍ତରଷି ସୁର ଇନ୍ଦ୍ର ମନୁ ତାଙ୍କ ସୁତ
ଏକାବେଳେ ଯାଇ ପୁଣି ହୁଅନ୍ତି ବ୍ୟକତ
ଚାରିଯୁଗେ ଏକଧରି ସଂଖ୍ୟା ଏକସ୍ତୋରି
ଆହେ କୁରୁ ଶ୍ରେଷ୍ଠ ମୁହଁ କହୁଛି ବିଚାରି
ମନୁ ଆଦି ସୁରଙ୍କର କାଳ ସମ୍ୱତ୍ସର
ଦିବ୍ୟବରଷ ସଂଖ୍ୟାରେ ଆଠୋଟି ହଜାର
ବାଉନ ସହସ୍ର ସଂଖ୍ୟା ତାଠାରୁ ଅଧିକ
ପୂର୍ଣ୍ଣ ତିରିଶକୋଟିରେ କର ଏ ବିବେକ
ସତଷଠି ସଂଖ୍ୟା ନେଇ ତହିଁ ଯୋଗକରି
ପଣ୍ଡିତ ମଣ୍ଡଳି ଏହା କହନ୍ତି ବିଚାରି
ବିଂଶତି ସହସ୍ରଠାରୁ ଅଧିକ ବିଚାର
ଏହି ସଂଖ୍ୟାକୁ କହନ୍ତି ନରେ ମନ୍ୱନ୍ତର

ତାର ଚତୁର୍ଦଶଗୁଣେ ବ୍ରହ୍ମାଙ୍କ ଦିବସ
ଏହି କଥା ମନେରଖ ଭୀଷ୍ମ ବୀରଈଶ
ଶୁଣ କହେ ଅଟେ ଏହା ନୈମିତ୍ତିକ ନାମ
କିଏ ଅଛି କରିବାକୁ ତାର ନିରୂପଣ
ତାହାର ଶେଷରେ ଦଗ୍‌ଧ ହୁଏ ତିନିଲୋକ
ଜାଣ ନରହେ ଅକ୍ଷତ ମଧ୍ୟ ମହଲୋକ
ବ୍ରହ୍ମଜ୍ଞାତ ବ୍ରହ୍ମ ଯେଣୁ ଅଟନ୍ତି ଉତ୍ତମ
କରାନ୍ତି ତିନି ଲୋକକୁ ସମୁଦ୍ରେ ସଙ୍ଗମ
ବାଡ଼ବା ଅନଳେ ତିନିଲୋକ ଗ୍ରାସକରି
ଶେଷ ନାଗର ଉପରେ ଶୁଅନ୍ତି ଶ୍ରୀହରି
ସଂସାରରେ ଥିବା ଯୋଗୀ ଏହା ଚିନ୍ତାକରି
ରାତ୍ର ଦିବା ଧ୍ୟାନ କରୁ ଅଛନ୍ତି ଶ୍ରୀହରି
ସେତିକି ସଂଖ୍ୟାରେ ରାତ୍ରି ଯେବେ ହୁଏ ଶେଷ
ବ୍ରହ୍ମାଙ୍କ ବ୍ୟବସ୍ଥା ପୁଣି ଲଭଇ ପ୍ରକାଶ
ବ୍ରହ୍ମାଙ୍କ ଆୟୁଷ ଯେଉଁ ଶହେଟି ବତ୍ସର
ମାତ୍ର ଗତ ହୋଇଅଛି ଏକ ବର୍ଷ ତାର
ଭୋଗ ହେଉଛି ପରାର୍ଦ୍ଧ ଏବେ ବ୍ରହ୍ମାଙ୍କର
ହୋଇଅଛି ଖ୍ୟାତ ପଦ୍ମ ନାମରେ ତାହାର
ପରାର୍ଦ୍ଧର ଦ୍ୱିତୀୟଟି ଯାଉଅଛି ବହି
ଶ୍ୱେତବାରାହ ବୋଲିଣ ଆଦ୍ୟ କଳ୍ପେ କହି
କହିଲେ ତା ଶୁଣି ତେବେ କୁରୁ ପିତାମହ
ବୁଝାଇଣ ମୋତେ ମୁନି ଏହିକଥା କହ
ଏହି ବ୍ରହ୍ମକଳ୍ପ ନାରାୟଣ ନାମ ଧରି
ସରଜନ୍ତି ସର୍ବଭୂତ ଶ୍ରୀହରି କିପରି
କହନ୍ତି ପୁଲସ୍ତ୍ୟ ଯେଉଁ କଳ୍ପ ହେଲା ଗତ
ଶୋଇବା ଠାବରୁ ପୁଣି ଉଠିଲେ ଅଚ୍ୟୁତ
ଅଦିଭଗବାନ ଯେହ୍ନୁ କରନ୍ତି ସର୍ଜନା
ଉତ୍ପତ୍ତି ଯାହାଙ୍କଠାରୁ ହୋଇଛି ରଚନା
ବ୍ରହ୍ମାଙ୍କୁ ସଦ୍ୟୁକତେ କରି ଦରଶନ
ପୁଣି ହୋଇଗଲେ ସେହି ଜଳରେ ମଗନ
ତାହାଙ୍କୁ ଚିନ୍ତି ଚିତ୍ତରେ ବ୍ରହ୍ମା ପ୍ରଜାପତି
ସଂସାର ତାରଣେ ଇଚ୍ଛା ପ୍ରକାଶ କରନ୍ତି ।
ମତ୍ସ୍ୟ କୂର୍ମ ଅବତାରେ ପୃଥିବୀ ଉଦ୍ଧରି
ଧଇଲେ ବରାହ ଆଦି ରୂପ ନରହରି
ସମସ୍ତ ଆତ୍ମାରେ ସ୍ଥିର ଜାଣି ପରମାତ୍ମା
ନିଗମ ଯଜ୍ଞର ରୂପ ଧଇଲେ ମହାତ୍ମା

ସେହିକାଳେ ଜଳ ଭେଦି ପୃଥିବୀ ଉଠିଲା
ଭକ୍ତିଭରେ ପ୍ରଭୁଙ୍କର ଦର୍ଶନ ଲଭିଲା
ଗାନକଲା ସ୍ତୁତି କର ଯୋଡ଼ି ଭକ୍ତିଭରେ
ନମିଲା ବିନମ୍ରେ ପୁଣି ତାଙ୍କ ପଦାବ୍ଜରେ
କହିଲା ସମସ୍ତ ରୂପେ ହେ ପରମେଶ୍ୱର
ତୁମ୍ଭ ପାଦରେ ପ୍ରଣାମ ମୋର ବାରମ୍ବାର
କଷ୍ଟରୁ ଉଦ୍ଧାର ମୋତେ କରିଛ ଆପଣ
ତୁମ୍ଭଦ୍ୱାରା ମୋ ଦୁର୍ଗତି ହୋଇଛି ମୋଚନ
ଆହେ ପରମାତ୍ମା ତୁମ୍ଭ ପାଦେ ନମସ୍କାର
ପୁଣ୍ୟାତ୍ମା ବିନୟ ହୋଇ ଘେନ ବାରମ୍ବାର
ବ୍ୟକ୍ତ ରୂପରେ ଆପଣ ସ୍ୱରୂପ କାଳର
ତୁମ୍ଭ ଚରଣରେ ମୋର କୋଟି ନମସ୍କାର
କର୍ତ୍ତା ଅଟନ୍ତି ଆପଣ ସକଳ ଭୂତର
ପାଳକ ଆବର ହର୍ତ୍ତା ସମସ୍ତ ବିଶ୍ୱର
ସର୍ଗ ଆଦି ପରଂ ବ୍ରହ୍ମ ତୁମେ ହରିହର
ପ୍ରଳୟକାଳେ ଭକ୍ଷକ ତୁମେ ସଭିଙ୍କର
ଜ୍ଞାନୀଙ୍କର ଚିନ୍ତ୍ୟ ତୁମେ ତୁମ୍ଭେ ଅଟ ଶେଷ
ହେ ଗୋବିନ୍ଦ ଘେନ ମୋର ପ୍ରଣାମ ଅଶେଷ
ନଜାଣଇ ପ୍ରଭୁ କେହି ସ୍ୱରୂପ ତୁମ୍ଭର
ଯେଉଁକାଳେ ଧର ତୁମେ ଅନ୍ୟ କଳେବର
ତୁମ୍ଭ ଅବତାରେ ତୁମ୍ଭ ରୂପେ ଦେବଗଣ
ପ୍ରମୋଦରେ କରୁଥାନ୍ତି ନିରତେ ଅର୍ଚ୍ଚନ
ପରମବ୍ରହ୍ମ ରୂପରେ ଆରାଧନା କରି
ମୋକ୍ଷକୁ ଲଭି ମୁମୁକ୍ଷୁ ଭବୁ ଯାନ୍ତି ତରି
ବାସୁଦେବ ସ୍ୱରୂପରେ ତୁମ୍ଭର ଭଜନ
କରିଣ ଲାଭ କରନ୍ତି ମୋକ୍ଷ ସାଧୁଜନ
ଯେବଣ ରୂପ ତୁମ୍ଭର ଗ୍ରାହ୍ୟ ମାନସରେ
ଗୃହୀତ ଯାହା ନୟନ ଆଦି ଇନ୍ଦ୍ରିୟରେ
ବୁଦ୍ଧିରେ ଅଟଇ ପରିଚ୍ଛେଦ୍ୟ ରୂପ ଯାର
ସେହି ସମସ୍ତ ସ୍ୱରୂପ ଅଟଇ ତୁମ୍ଭର
ମୋହର ରୂପରେ ତୁମେ ମୁଁ ତୁମ ଆଶ୍ରୟ
ତୁମ୍ଭେ ମୋର ସ୍ରଷ୍ଟା ମୁହିଁ ତୁମ୍ଭ ହୃଦାଶ୍ରୟ
ମାଧବୀ ନାମଟି ଏହି କାରଣରୁ ମୋର
ହୋଇଅଛି ଆହେ ପ୍ରଭୁ ଲୋକରେ ପ୍ରଚାର
ଏହିପରି ଭାବେ ଧରା-ଧାରକ ପ୍ରଭୁର
ଧରିତ୍ରୀ ଗାଇଲେ ସ୍ତୁତି ହୋଇ ହର୍ଷଭର

ତେବେ ମହାପ୍ରଭୁ ଉଚ୍ଚେ କଲେ ସ୍ୟାମଗାମ
ଗରଜିଲେ ପୁଣି ଧର୍ମ ସ୍ୱରୂପ ଧରିଣ
ଘଡ଼ଘଡ଼ି ସମ ଥିଲା ସେହି ଗରଜନ
ବିଭାତିଲେ ସଜ-ପଦ୍ମ-ବିକାଶ ଲୋଚନ
ଅତିଭୀଷଣ ବରାହରୂପକୁ ଧଇଲେ
ପୃଥିବୀକୁ ଟୋକି ଦନ୍ତ ଅଗ୍ରରେ ଥାପିଲେ
ରବି ଅସ୍ତାଚଳପରି ନୀଳକଳେବର
ସେହିକାଳେ ପ୍ରଭୁଙ୍କର ଦିଶିଲା ସୁନ୍ଦର
ନୀଳିମାରେ ତୁଚ୍ଛ ଅବା ହେବ ପଦ୍ମ ପତ୍ର
ହୋଇଥିଲା ପ୍ରଭୁଙ୍କର ମନୋହର ଗାତ୍ର
ଉଠୁଥିଲା ଯେଉଁ ଶ୍ୱାସ ବରାହ ମୁଖରୁ
ଉପରକୁ ଉଠୁଥିଲା ସଳିଳ ତହିଁରୁ
ଜନଲୋକ ବାସୀ ଯେତେ ନିଷ୍ପାପ ଶରୀର
ସନକ ଆଦି ଋଷିଏ ହେଲେ ହର୍ଷଭର
ପବିତ୍ରତାର ଆଶ୍ରୟ ହେଲା ସେହି ଜଳ
ଫୁଟାଇଲା ଋଷିଙ୍କର ମାନସ କମଳ
ପବିତ୍ର ଆହୁରି ହେଲା ଯାଥିଲା ପବିତ୍ର
ଲାଭକଲା ସେହି ଜଳ ଯେଉଁ ପ୍ରାଣୀଗାତ୍ର
ଖୁରାରୁ ଉତ୍‌ଥିତଜଳ ମହାଧ୍ୱନୀକରି
ଗଲା ବେଗେ ରସାତଳ ମାର୍ଗ ଅନୁସରି
ସ୍ତୁତ୍ୟବକ ପଂକ୍ତିରେ ବରାହ ଭଗବାନ
ଶ୍ୱାସାନିଳେ ଛାଇଦେଲେ ଆକାଶ ଅଙ୍ଗଣ
ଉଠୁଥିଲା ଯେଉଁ ଜଳ ମହୀକୁ ବିଦାରି
ତା ଉଲ୍ଲାସ ବେଦମୟ ଦେହେ ଦେଲାଭରି
ବିଶେଷେ ରୋମାଞ୍ଚ ହେଲା ବରାହର ଶର
ହୋଇଲା ସେ ମୁନିଙ୍କର ସେବାର ଆଧାର
କହିଲେ ଭୀଷ୍ମ ଆନନ୍ଦେ ଶୁଣ ମୁନିବର
ବର୍ଣ୍ଣନା କଲ ପ୍ରଥମେ ସ୍ରୋତ ମନୁଷ୍ୟର
କଲେ କେଉଁରୂପେ ବ୍ରହ୍ମା ମାନବ ସର୍ଜନା
ସେ କଥା କହିବା ହେଉ ମୋତେ ମହାମନା
ବର୍ଣ୍ଣ ସହିତରେ କହ ରଚନା ତାହାର
ତାହା ଶୁଣିବା କାମନା ରହିଛି ମୋହର
ଗୁଣର ସୃଷ୍ଟି ହୋଇଲା କହ କେଉଁପରି
ଆହେ ଋଷିବର ଭଲେ ହୃଦରେ ବିଚାରି
ବିପ୍ର ଆଦି ବର୍ଣ୍ଣଙ୍କର କହିଲ ଯେ କର୍ମ
କରୁଣା ବହି କହନ୍ତୁ ସେ ସବୁର ମର୍ମ

ଭୀଷ୍ମଙ୍କର ଜିଜ୍ଞାସନେ ପୁଲସ୍ତ୍ୟ ମହର୍ଷି
ପ୍ରଥମରେ ସତ୍ୱଗୁଣ  କହିଲେ ପ୍ରଶଂସି
ବ୍ରହ୍ମାଙ୍କର ସରଜନା ଇଚ୍ଛା ସକାଶରୁ
ଜନ୍ମହୋଇଲେ ସମସ୍ତ ପ୍ରାଣୀ ତାଙ୍କଠାରୁ
ପରଜା ସତ୍ୱଗୁଣରେ ମୁଖୁ ହେଲେ ଜାତ
ମନେରଖ ଏହିକଥା ସତ୍ୟବତୀ ସୁତ
ପରମେଷ୍ଠିଙ୍କର ବକ୍ଷ ଦେଶୁଁ ତଦପରେ
ଜନମିଲେ ପ୍ରଜା ରଜୋଗୁଣ ଆଧିକ୍ୟରେ
ରଜ ତମ ବେନିଗୁଣ ବୁଦ୍ଧି ଅନୁସରି
ଜନ୍ମିଲେ ପରଜା ବ୍ରହ୍ମ ଉରୁ ଆଶ୍ରାଧରି
ବ୍ରହ୍ମାଙ୍କର. ଚରଣରୁ ଜନ୍ମିଲେ ଶେଷରେ
କେତେକ ପରଜା ତମଗୁଣ ଆଧିକ୍ୟରେ
ହୋଇଲା ଏପରି ଚାରି ବର୍ଣ୍ଣର ସର୍ଜନା
ଏହିତଥ୍ୟ ମନେରଖ ଭୀଷ୍ମ ମହାମନା
ବ୍ରହ୍ମାଙ୍କର ମୁଖୁଜାତ ହୋଇଲେ ବ୍ରାହ୍ମଣ
ବକ୍ଷରୁ ଜାତ କ୍ଷତ୍ରୀୟ ବୋଲି ମନେଘେନ
ଉରୁ ପ୍ରଦେଶରୁ ପ୍ରଜା ବୈଶ୍ୟ ଜାତ ହେଲେ
ପାଦରୁ ଜନ୍ମିତ ପ୍ରଜା ଶୂଦ୍ର ବୋଲାଇଲେ
ଉତ୍ପତ୍ତି ହୋଇଲା ଚାରି ବର୍ଣ୍ଣର ଏପରି
ବୋଲି ହୃଦେ ଧର କୁରୁ ବଂଶର କେଶରୀ
ନିଜ ଯଜ୍ଞକୁ ଦୃଷ୍ଟିରେ ରଖି ପରମେଷ୍ଠି
ଏହି ଚାରି ବରଣର କରିଥିଲେ ସୃଷ୍ଟି
ଲୋଡ଼ା ଏହି ଚାରିବର୍ଣ୍ଣ ଯଜ୍ଞ ସିଦ୍ଧି ପାଇଁ
ଏମାନେ ନଥିଲେ ଯଜ୍ଞ ସଫଳ ନୁହଇ
ଯଜ୍ଞ ଯୋଗୁଁ ଦେବଗଣ ହୁଅନ୍ତି ତୃପତ
କରନ୍ତି ବୃଷ୍ଟି ଦାନରେ ନରେ ଆପ୍ୟାୟିତ
ଧରମ ଯଜ୍ଞ ଯୋଗରୁ ହୁଅଇ କଲ୍ୟାଣ
ଜଗତରେ ତେଣୁ ଯଜ୍ଞ ଅଟଇ ପ୍ରଧାନ
ଉତ୍ତମ କରମେ ଯେହୁ ହୋଇଥାଏ ରତ
ବିଧିହୀନ କରମରୁ ଯେ ହୁଏ ରହିତ
ଉତ୍ତମ ମାର୍ଗରେ ଯେହୁ କରଇ ଗମନ
ସତ୍‌ପାତ୍ର ଦ୍ୱାରା ଯେ କରେ ଯଜ୍ଞାଦି ସଂପନ୍ନ
ଅପବର୍ଗ ଲାଭ ନିଶ୍ଚେ ହୁଅଇ ତାହାର
ତା ମାନବ ଜନ୍ମ ଧନ୍ୟ ବୋଲି ମନେକର
ସ୍ୱରଗ ଲାଭ ତାହାର ଅବଶ୍ୟ ହୁଅଇ
ଶୁଣହେ ଭୀଷ୍ମ ସଂଶୟ ଏଥି କିଛି ନାହିଁ

ଯେଉଁଧାମ ଲାଭ ପାଇଁ ଇଚ୍ଛା ହେବତାର
ନିଶ୍ଚୟ ସେ ଧାମ ସେହି ଲଭିବ ବିଚାର
ବ୍ରହ୍ମା ଏହି ଚାରିବର୍ଣ୍ଣ ବ୍ୟବସ୍ଥା କରିଣ
ଆଦର ବିଚାରିଲେ ସେ ତାହାଙ୍କ ପାଳନ
ବ୍ରହ୍ମାଙ୍କର ବିଧାନେ ଏ ପରଜା ସକଳ
କଲେ ଯେଉଁ ଆଚରଣ ତା ଅଟେ ନିର୍ମଳ
ଯିଏ ଯେଉଁଠି ରହିବା ପାଇଁ ଇଚ୍ଛା କଲେ
ବ୍ରହ୍ମାନିର୍ଦ୍ଦେଶରେ ସେହି ସେସ୍ଥାନେ ରହିଲେ
ବିଘ୍ନ ବୋଲି ତାହାଙ୍କର କିଛି ନରହିଲା
ସହଜରେ ସବୁକାର୍ଯ୍ୟ ସମାଧାନ ହେଲା
ସର୍ବଦା ବିଶୁଦ୍ଧ ହେଲା ସରବ ହୃଦୟ
ରହିଲା ଧନରେ ମତି ଦୃଢ଼େ ଅହରହ
ରଚିତ ପରମେଷ୍ଠିରେ ଏହି ପ୍ରଜାଙ୍କର
ନୀତି ରସାଣିତ ହେଲା ବିଶୁଦ୍ଧ ଅନ୍ତର
ବିଶୁଦ୍ଧ ହୃଦୟଯେଣୁ ହେଲେ ବିଶ୍ୱବାସୀ
ବସାକଲେ ତେଣୁ ହରି ସର୍ବହୃଦେ ଆସି
କମଳପରି ହୃଦୟ ହୋଇଲେ ନିର୍ମଳ
ବାସ କରିଥାନ୍ତି ତହିଁ ସଦା ଆଦିମୂଳ
ଯେଉଁଠାରେ ହରି ସେହି ଜ୍ଞାନ ହୁଏ ଶୁଦ୍ଧ
ଏଥିରେ ସଂଦେହ କିଛି ନାହିଁ କୁରୁ ବୃଦ୍ଧ
ଶୁଦ୍ଧ ଜ୍ଞାନ ଯୋଗୁଁ ଲାଭ ହୁଏ ବ୍ରହ୍ମପଦ
ତେଣୁ ସନ୍ତୋଷ ହୁଅନ୍ତି ତାଠାରେ ବିବୁଧ
ରହଇ ସେ କିଛିକାଳ ବ୍ରହ୍ମଲୋକେ ଯାଇ
ଅଳ୍ପ ଧର୍ମ ଯୋଗୁଁ ପୁଣି ସଂସାରେ ଫେରଇ
ଅଧର୍ମ ବୀଜରୁ ଜାତ ଲୋଭରେ ଆଚ୍ଛନ୍ନ
ତମୋଗୁଣ ପ୍ରାଣୀ କ୍ରୋଧେ ହୁଏ ତମତମ
ତା ଅନୁରୂପ ସାଧନା ହୁଅଇ ତାହାର
ସନ୍ଦେହ ଏଥିରେ କିଛି ନାହିଁ କୁରୁବୀର
ଏଣୁ ସହଜ ସିଦ୍ଧ ଯା ଅସିଦ୍ଧ ହୁଅଇ
ମନେରଖିବ ସନ୍ଦେହ ଏଥି କିଛି ନାହିଁ
ଆଠୋଟି କୁଳ ସିଦ୍ଧିର ହୋଇଛି କଥିତ
ଏକାମ୍ୟ ବରଶଇ ପ୍ରାପ୍ତି ଅଣିମା ଅବଶ୍ୟ
ମହିମା ଗରିମା ସହ ଲଘିମା ଏ ଆଠ
ଏହି ଅଷ୍ଟସିଦ୍ଧି ମନେ ରଖ କୁରୁ ଶ୍ରେଷ୍ଠ
କ୍ରମେ ଏହି ସିଦ୍ଧି ମଧ୍ୟ କ୍ଷୀଣ ହୋଇଯାଏ
କଦାପି ଏ ସବୁ ଚିର ହୋଇଣ ନରହେ

ଯଦ୍ୟପି ବୁଦ୍ଧି ହୁଅଇ ତାମସୀ ଲୋକର
ହୁଏ ସୁଖ ଦୁଃଖ ଇନ୍ଦ୍ରି ଆଦିରେ ତତ୍ପର
ସେହି କାରଣରୁ ଅତି ଆର୍ତ୍ତ ହୋଇଯାଏ
ବିବେକ ବୋଲି ତାହାର କିଛି ହିଁ ନଥାଏ
ଧାନ୍ୱନର୍ବାକ୍ଷ ପାର୍ବତ ମୌଦକାଦି ପୁର
ନିଜ ନିମନ୍ତେ ଗଢ଼ନ୍ତି ସେ ଦୁର୍ଗ ପ୍ରାଚୀର
ସୁରଚିତ ହୋଇଥାଏ ଗୃହ ସେ ଦୁର୍ଗରେ
ଶୀତାତପ ବାଧା କିଛି ନଥାଏ ତହିଁରେ
ପ୍ରଜାଙ୍କ ଦ୍ୱାରା ରଚିତ ନଗର ଏପରି
ଶୀତ ଆଦି ଦୁଃଖ ତହିଁ ନହୁଅଇ ବାରି
ଆବାସ ଗଠନ ପରେ ଜୀବ ରକ୍ଷାପାଇଁ
କରମକୁ ଦୃଢ଼େ ନର ଆଶ୍ରୟ କରଇ
କରମସିଦ୍ଧି ନିମନ୍ତେ ଖୋଜଇ ଉପାୟ
ବହୁ ପରିଶ୍ରମେ ଶୁଣ ଶାନ୍ତନୁ ତନୟ
ଚଣକ ଗହମ ଯବ ପ୍ରିୟଙ୍ଗୁ ମସୁର
ରାଶି, ଛଣୀ, ମୁଗ, ବିରି, ତିଳ କୋବିଦାର
କୋଳଥ, ନିଷ୍ପାବ, କୌରଦୁଷ ଅଣୁ ମାସ
ଅଢ଼କ ସଂଖ୍ୟାରେ ଅଟନ୍ତି ଏ ସପ୍ତଦଶ
ଧାନ୍ୟାଦି ଏ ନରେ ଏହା କରନ୍ତି ଉତ୍ପନ୍ନ
ଗ୍ରାମ୍ୟମତରେ ଏପରି ଏହାଙ୍କର ନାମ
ଯାଗ୍ରାମ୍ୟ ଯଜ୍ଞିୟ ବୃକ୍ଷ ଏଥିରୁ ସେ ଭିନ୍ନ
ଗଣତିରେ ଚତୁର୍ଦ୍ଦଶ ଅଟନ୍ତି ଏମାନ
ଗୋଧୁମ ବିରି ଓ ମାସ ଯବ ଅଣୁ ତିଳ
ବେଣୁଭବ ଶ୍ରମାକ ଯେ ନୀବରବର୍ତ୍ତୁଳ
ମର୍କଟକ ପ୍ରିୟଙ୍ଗୁ ଓ ଗବେଧୁ କୋଳଥ
ଏହି ଚଉଦର ନାମ ଅଟେ ବୀରଶିଖ
କାନନରେ ଏହାଙ୍କର ଉତ୍ପତ୍ତି ହୁଅଇ
ଆବଶ୍ୟକ ଯେଣୁ ଏହା ଯାଗସିଦ୍ଧି ପାଇଁ
ଆହୁରି କାରଣ ଏକ ଅଛି ଉତ୍ପତ୍ତିର
ଔଷଧ ରୂପେ ଏ ସେବା କରନ୍ତି ଲୋକର
ପର ଅପର ବିଜ୍ଞାନୀ ପ୍ରାଜ୍ଞ ଯେଉଁମାନେ
ବିସ୍ତାର ଯଜ୍ଞ ବିଧିକୁ କରନ୍ତି ସେମାନେ
ପ୍ରତିଦିନ ଯଜ୍ଞ ଯେହୁ କରେ ଅନୁଷ୍ଠାନ
ନିଶ୍ଚୟରେ ଲୋଡ଼ା ହୁଏ ତାପାଇଁ ଏମାନ
ଯେଉଁ ଯଜ୍ଞ ସକାଶରୁ କଳା ଏ ସୃଷ୍ଟିରେ
ପାନ କରିଣ ଏହାଙ୍କୁ ଶଶି ଶୁଭ୍ରହେଲେ

ସ୍ଥାନ ଗୁଣ ଅନୁସାରେ ନିଜ ମର୍ଯ୍ୟାଦାରେ
ଅବସ୍ଥିତ ହୋଇଛନ୍ତି ଏମାନେ କ୍ରମରେ
ବର୍ଣ୍ଣ ଆଶ୍ରମ ଧରମା କରେ ଯେ ପାଳନ
ସବୁମନ୍ତେ ଲଭେ ସେହି ପ୍ରାଜାପତ୍ୟ ସ୍ଥାନ
ଯେଉଁ କ୍ଷତ୍ରିୟ ଯୁଦ୍ଧରୁ ପଳାଇ ନ ଯାଏ
ଐନ୍ଦ୍ରସ୍ଥାନ ରୂପେ ତାର ସ୍ଥାନ ଗଣାହୁଏ
ସମୁଚିତେ ବୈଶ୍ୟକଲେ ସ୍ୱଧର୍ମ ପାଳନା
ମାରୁତରେ ସ୍ଥାନ ତାର ହୋଇଥାଏ ଗଣା
ସମସ୍ତ ବର୍ଣ୍ଣର ସେବା ଧରମ ଶୂଦ୍ରର
ତାର ସ୍ଥାନକୁ ଗାନ୍ଧର୍ବ କହେ ବିଜ୍ଞାନର
ପରେ ମାନସରୁ ବ୍ରହ୍ମା ଜାତକଲେ ସୁତ
ତାହାଙ୍କ ସମାନ ରୂପ ଗୁଣେ କରିଯୁତ
ଅଙ୍ଗୀରାକ୍ରତୁ ଓ ଭୃଗୁ ମରୀଚୀ ପୁଲହ
ବଶିଷ୍ଠ ଦକ୍ଷ ଏ ସାତେ କୁରୁ ପିତାମହ
ବ୍ରହ୍ମା ନବଗୋଟି ବୋଲି କହୁଛି ପୁରାଣ
କାର୍ଯ୍ୟ ଏହାଙ୍କର ମଧ୍ୟ ଅଟଇ ସର୍ଜନ
ନିରପେକ୍ଷ ନହୋଇଲା ବ୍ୟବସ୍ଥା ତାଙ୍କର
ନହୋଇଲେ ପ୍ରଜା ବୃଦ୍ଧି କରଣେ ତତ୍ପର
ବିଶେଷରେ ଜ୍ଞାନ ଲାଭ କରିଥିଲେ ଯେଣୁ
ମାତ୍ସର୍ଯ୍ୟ କ୍ରୋଧରୁ ଦୂରେ ରହିଥିଲେ ତେଣୁ
ବିଧାତା ତେଣୁ ଏହାଙ୍କୁ ସୃଷ୍ଟି ସର୍ଜନରେ
ନିଯୁକତ କରିଥିଲେ ବିଚାରି ଚିତ୍ତରେ
ନିରପେକ୍ଷ ହେବାରୁ ସେ ସୃଷ୍ଟି ନ ଚଳିଲା
ତାହା ଦେଖି ବ୍ରହ୍ମାମାନେ କ୍ରୋଧ ଉପୁଜିଲା
ଜ୍ୱାଳା ମାଳାସେ କ୍ରୋଧରୁ ଉତ୍ପନ୍ନ ହୋଇଲେ
ତେଜରେ ତିନି ଜଗତ ଆଲୋକିତ କଲେ
ତାହାର ତେଜରେ ଦୀପ୍ତହେଲା ତିନିପୁର
ହୋଇଲା ବ୍ରହ୍ମାଙ୍କ ଭାଲେ ଭୃକୁଟୀ ପ୍ରଚର
ସେ କ୍ରୋଧରୁ ସେହିକ୍ଷଣି ରୁଦ୍ର ଜାତ ହେଲେ
ଅଧେ ନାରୀ ଅଧେ ପୁଂସ ସେହି ହୋଇଥିଲେ
ଭୟଙ୍କର ଅତି ହୋଇଥିଲା କଳେବର
ମନରେ ଭୀଷ୍ମ ଏଥିରେ ସନ୍ଦେହ ନକର
ଦୁଇଭାଗ କର ଦେହ-ବ୍ରହ୍ମା ଏହା କହି
ସେକ୍ଷଣି ଗଲେ ସେଠାରେ ଅନ୍ତର୍ଦ୍ଧ୍ୟାନ ହୋଇ
ବିଧାତାଙ୍କ ଆଦେଶରେ ସ୍ତ୍ରୀତ୍ୱ ପୁରୁଷତ୍ୱ
ବେନିଭାଗ ହୋଇଗଲା ଶାନ୍ତନୁଙ୍କ ସୁତ

ସ୍ଥିରୀତ୍ୱ ରହିଲେ ଏକ, ମାତ୍ର ସେ ଈଶାନ
ବହୁତ ରୂପେ ତାହାକୁ କଲେ ବିଭଞ୍ଜନ
ସୁନ୍ଦରରେ ସଉନ୍ଦର୍ଯ୍ୟ ଶାନ୍ତିରୂପେ ଶାନ୍ତ
ଏହିପରି ହେଲା ବହୁ ସ୍ୱରୂପ ବ୍ୟକତ
ତଦପରେ ସ୍ୱାୟମ୍ଭୁବ ମନୁରୂପ ଧରି
ପରମେଷ୍ଠି ଗଲେ ସେହି ନାରୀ ଅନୁସରି
ପାପହୀନା ସେହି ନାରୀ କରୁଥିଲା ତପ
ପ୍ରଦାନିଲେ ବ୍ରହ୍ମା ତାକୁ ଶତରୂପା ରୂପ
ସ୍ୱାୟମ୍ଭୁବ ମନୁରୂପେ ନିଯେ ସେହି ସ୍ଥିରି
ଗ୍ରହଣକଲେ ବିଧାତା ମନେ ମୋଦ ଭରି
ସେ ଦୁହିଙ୍କ ସଙ୍ଗମରେ କୁମାର ଜନ୍ମିଲେ
ଉତ୍ତାନପାଦ ଓ ପ୍ରିୟବ୍ରତ ବୋଲାଇଲେ
ଜନମିଲେ ବେନି କନ୍ୟା ଆକୂତି ପ୍ରସୂତି
ଏହା ମନେ ରଖଭଲେ ଶାନ୍ତନୁ ସଂନ୍ତତି
ପ୍ରସୂତି ଭାରିଯା ଦକ୍ଷ ପ୍ରଜାପତିଙ୍କର
ହୋଇଲେ ପତି ରୁଚିକ ଆକୂତି ନାରୀର
ପୁତ୍ରକନ୍ୟା ଜାତହେଲେ ବେନି ଦମ୍ପତିର
ଯଜ୍ଞ ଦକ୍ଷିଣା କ୍ରମରେ ନାମ ତାହାଙ୍କର
ସ୍ୱାୟମ୍ଭୁବ ମନୁଙ୍କର ରାଜତ୍ୱ କାଳରେ
ଦେବେ ପରିଚିତ ହେଲେ ଯାମାଏ ନାମରେ
ଶେଷହେଲା ଏହିଠାର କାଳ ନିରୂପଣ
କହଇ ଶ୍ରୀ ଗୋପୀନାଥ ଶ୍ରୀ ପଦ୍ମପରାଣ ।

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ଭୀଷ୍ମ ପୁଲସ୍ତ୍ୟସଂବାଦେ
କାଳ ନିରୂପଣୋ ନାମ ଦ୍ୱିତୀୟୋଧ୍ୟାୟଃ ।

❑

## ତୃତୀୟ ଅଧ୍ୟାୟ

### ସମୁଦ୍ର ମନ୍ଥନ ଓ ଇନ୍ଦ୍ରଙ୍କୁ ଦୁର୍ବାସାଙ୍କ ଶାପ

ସୌନକଙ୍କୁ ସୁତ ଯତି କହିଲେ ବୁଝାଇ
ପୁଲସ୍ତ୍ୟ ଋଷି ଭୀଷ୍ମଙ୍କୁ ଥିଲେ ଯାହା କହି
ପୁଲସ୍ତ୍ୟଋଷି ଭୀଷ୍ମନମି ଭକ୍ତିଭରେ
ପଚାରିଲେ କହ ମୋତେ ଏହି କଥା ଥରେ
ଶୁଣିଅଛି ଲକ୍ଷ୍ମୀହେଲେ ସମୁଦ୍ରରୁ ଜାତ
କିପରି କହିଲ ତୁମେ ଭୃଗୁରେ ସଂଜାତ
ଦକ୍ଷ ପ୍ରଜାପତି କନ୍ୟା ସୁଲକ୍ଷଣି ଗୌରୀ
ଯାଗ ଅନଳେ ଶରୀର ଝସିଲେ କିପରି
ପୁଣି ନଗନାରୀ ମେନା ଗର୍ଭ ଅନୁସରି
ଜନ୍ମହୋଇ ଉମାନାମ ଧଇଲେ କିପରି
ଶିବ ପୁଣି କିକାରଣୁ ତାଙ୍କୁ ବିଭାହେଲେ
ଏସବୁ ଚରିତ ମୋତେ କହ ଋଷିଭଲେ
ଶିବ ଦକ୍ଷପ୍ରଜାପତି ବିରୋଧ କାରଣ
କହିବ ଆବର ମୋତେ ଆହେ ତପୋଧନ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
କଲ ଯେଉଁ ପ୍ରଶ୍ନ ଶୁଣ ଉତ୍ତର ତାହାର
ପିତାମହ ଠାରୁ ପୂର୍ବେ ଲକ୍ଷ୍ମୀ ସମ୍ବନ୍ଧରେ
ଶୁଣିଛି ଯା କହେ ତାହା ତୁମ୍ଭର ଆଗରେ
ଦୁର୍ବାସା ମହର୍ଷି ମହୀମଣ୍ଡଳ ଭ୍ରମଣେ
ଯାଉ ଯାଉ ସେଦେଖିଲେ ବିଦ୍ୟାଧରି ଜଣେ
ହାତରେ ଥିଲା ତାହାର ମାଳା ସୁମନର
ତା ସୁବାସେ ସୁବାସିତ ହୋଇଲା ଅମ୍ବର
ଦୁର୍ବାସା ସେ ସୁମନାର ସୌନ୍ଦର୍ଯ୍ୟ ଦର୍ଶନେ
ଯାଚଞ୍ଚା କରନ୍ତେ ବିଦ୍ୟାଧରୀ ତୋଷମନେ
ଋଷିଙ୍କର କରେ ସେହି ମାଳା ନେଇ ଦେଲା
ଭକ୍ତିଭରେ ଋଷିପାଦେ ପୁଣି ପ୍ରଣମିଲା
ଦୁର୍ବାସା ମହର୍ଷି ସେହି ଫୁଲମାଳ ନେଲେ
ଆନନ୍ଦରେ ନିଜ ଜଟାଜୁଟେ ଗୁଡ଼ାଇଲେ
ଫୁଲମାଳ ଯୋଗୁଁ ଗାତ୍ର ଦିଶିଲା ସୁନ୍ଦର
ପ୍ରେତ ପରାଏ ଉନ୍ମତ୍ତ ହୋଇ ମୁନିବର
କହିଲେ ଏହାର କୁଚ ଅଟେ ଅତି ଉଚ୍ଚ
ସୌଭାଗ୍ୟ ଶୋଭା ଆଦିରେ ଦିଶଇ ସୁସଞ୍ଚ
ଦେଖିଲି ଏହାକୁ ଯେବେ କ୍ଷୋଭ ହେଲା ମନ
କନ୍ଦର୍ପ କଳାରେ ମୁହଁ ହେଲି ବିଚକ୍ଷଣ
ଏବେ ମୁଁ ସୌଭାଗ୍ୟ ମୋର ଏହାକୁ ଦେଖାଇ
ଗମିବି ଅନ୍ୟ ଦିଗକୁ ପର୍ଯ୍ୟଟନ ପାଇଁ
କହି ଏହା ଗଲେ ଋଷି ବିଶ୍ୱ ଭ୍ରମଣରେ
ଆସୁଥିଲେ ଶଚୀପତି ଦେଖିଲେ ବାଟରେ
ଐରାବତ ଗଜ ପୃଷ୍ଠେ କରି ଆରୋହଣ
ମହର୍ଷିଙ୍କୁ ଦେଖି ଇନ୍ଦ୍ର ହେଲେ ସୁପ୍ରସନ୍ନ
ଅମରନାଥଙ୍କୁ ଦେଖି ଋଷି କୁଳବର
ଉନ୍ମତ୍ତ ପରି ଜଟାରୁ ଫେଇ ଫୁଲହାର

ଧଇଲେ କରେ ଭ୍ରମରେ ତାକୁ ବେଢ଼ିଥିଲେ
ସୁଗନ୍ଧିରେ ଆମୋଦିତ ଦିଗେ ହୋଇଥିଲେ
ଫିଙ୍ଗିଦେଲେ ମୁନି ତାହା ଇନ୍ଦ୍ରଙ୍କ ଉପରେ
ଇନ୍ଦ୍ର ତାକୁ ମଣ୍ଡିଦେଲେ କରି ମସ୍ତକରେ
ଅଇରାବତ ହାତୀର ମୁଣ୍ଡେ ମଣିଥିଲା
ସେ ମାଳା ତାପରେ ପଡ଼ି ଶୋଭା ପ୍ରକାଶିଲା
କୈଳାସ ପର୍ବତ ପରେ ଜାହ୍ନବୀର ଧାର
ପରାଏ ତା କରି ମାଥେ ଦିଶିଲା ସୁନ୍ଦର
ମଦରେ ଅନ୍ଧ ସେ କରି ମାଳା ଶୁଣ୍ଢେ ଧରି
ଭୂଇଁରେ ପକାଇ ତାକୁ ପାଦେ ଦେଲା ଦଳି
ତା ଦେଖି ଦୁର୍ବାସାଋଷି ଅତିକ୍ରୋଧ ହେଲେ
ବାଡ଼ବା ଅନଳ ପରି ତେଜ ପ୍ରକାଶିଲେ
ଇନ୍ଦ୍ରଙ୍କୁ ଚାହିଁ କହିଲେ କ୍ରୋଧେ ତପୋଧନ
ଐଶ୍ୱର୍ଯ୍ୟ ମଦରେ ମତ୍ତ ତୁ ଦେବରାଜନ
ରେ ଦୁଷ୍ଟାତ୍ମା ଧନ ମଦେ ପ୍ରମତ୍ତ ହୋଇଲୁ
ମୋର ପ୍ରଦତ୍ତ ମାଳାକୁ ତୁଚ୍ଛ ମନେକଲୁ
ଏ ସୁନ୍ଦର ଫୁଲମାଳେ ନ ଦେଲୁ ଗୌରବ
ଦଳିଲୁ ପକାଇ ତଳେ ଧରି ତୁଚ୍ଛଭାବ
ତୋର ଏହି ଆଚରଣୁ ହୁଏ ମୋ ପ୍ରତୀତି
ଅନ୍ଧ କରିଅଛି ତୋତେ ତ୍ରିଲୋକ ସଂମ୍ପତ୍ତି
ଆରେ ମୂଢ଼ ଏବେ ତୁହି ଘେନ ମୋରଶାପ
ଏକ୍ଷଣି ତୋ ତ୍ରିଭୁବନ ଭୂତି ହେଉ ଲୋପ
ଯାହାର କ୍ରୋଧରେ ଜଳିଯିବ ତିନିପୁର
ମୁଁ ସେହି ଦୁର୍ବାସା ଋଷି ନଜାଣୁ ପାମର
ନିଜକୁ ବଡ଼ ବିଚାରି ଦେଲୁ ଅପମାନ
କହି ଏସନ ଦୁର୍ବାସା ହେଲେ ତମତମ
ଶଚୀଙ୍କ ରମଣ ଶୁଣି ମୁନିଙ୍କର ବାଣୀ
ଓହ୍ଲାଇ କରି ପୃଷ୍ଠରୁ ଆସିଲେ ସେକ୍ଷଣି
ନିଷ୍ପାପ ମୁନିଙ୍କୁ ଇନ୍ଦ୍ର ବହୁ ସ୍ତୁତି କଲେ
ଇନ୍ଦ୍ର ସ୍ତୁତିରେ ଦୁର୍ବାସା ପ୍ରସନ୍ନ ହୋଇଲେ
ତଥାପି କହିଲେ ଏବେ ଶତକ୍ରତୁ ଶୁଣ
ପ୍ରାର୍ଥନାରେ ଏବେ ଆଉ କି ଅଛି କାରଣ
କ୍ଷମା ଆଉ ତୁମ୍ଭଙ୍କୁ ମୁଁ ନପାରିବି କରି
ଚାଲିଗଲେ ମୁନିଶ୍ରେଷ୍ଠ କହି ଏହିପରି
ଶଚୀପତି ଋଷିଙ୍କର ପଛରେ ଧାଇଁଲେ
ତଥାପି ମୁନି ପଛକୁ ଥରେ ନ ଚାହିଁଲେ
ଗଲେ ଅମରାବତୀକୁ ଶଚୀଙ୍କ ରମଣ
ଲୋପହେଲା ତିନିପୁର ଶିରୀ ତତକ୍ଷଣ
ତଦପରେ ଶୁଣ ଭୀଷ୍ମ ଯେପରି ହୋଇଲା
ଯାଗ ଯଜ୍ଞ ଅନୁଷ୍ଠାନ କେଉଁଠି ନୋହିଲା
ତପସ୍ୟା ବିରତ ହେଲେ ତାପଶନିକର
ଦାନ ଦେବାପାଇଁ କାର ନ ଉଠିଲା କର
ନଷ୍ଟପ୍ରାୟ ହେଲା ଏହି ସଂପୂର୍ଣ୍ଣ ଜଗତ
ତ୍ରିଲୋକ ହୋଇଲେ ସତ୍ୱ ବଳରେ ରହିତ
ତିନି ଜଗତରେ ସର୍ବେ ହୋଇଲେ ଶ୍ରୀହୀନ
ଦାନବ ଦୈତ୍ୟ ସକଳେ ହେଲେ ବଳବାନ
ଦେବତାଙ୍କୁ ପୀଡ଼ାଦାନେ ହୋଇଲେ ଉଦ୍ୟତ
ଛତ୍ରଭଙ୍ଗ ଦେଲେ ସୁରେ ହୋଇ ପରାଜିତ
ଅଗ୍ନିଙ୍କୁ ଆଗରେ ରଖି ବ୍ରହ୍ମାପାଶେ ଗଲେ
ତାହାଙ୍କର ଶ୍ରୀପୟରେ ଶରଣ ପଶିଲେ
ଜଣାଇଲେ ତାଙ୍କୁ ନିଜ ଦୁଃଖ ସଂକ୍ଷେପରେ
ଶୁଣି ସବୁ ପରମେଷ୍ଠି ସୁରଙ୍କ ସଙ୍ଗରେ
କ୍ଷୀର ସିନ୍ଧୁତୀରେ ଯାଇ ହେଲେ ଉପଗତ
ଏଉତ୍ତାରୁ ଯାହା ହେଲା ଶୁଣ ଗଙ୍ଗାସୁତ
ପ୍ରାର୍ଥନା କଲେ ସେ ସ୍ଥାନେ ରହିଦେବଗଣ
ଆହେ ବିଷ୍ଣୁ ବାସୁଦେବ ତୁମ୍ଭେ ନାରାୟଣ
ଶେଷ ଶୟନରୁ ପ୍ରଭୁ ଉଠନ୍ତୁ ସତ୍ୱର
ହୃଦରେ ବିଚାରି ହିତ ଦେବଗଣଙ୍କର
ଏ ସମୟେ ତୁମେ ପ୍ରଭୁ ନୋହିଲେ ସହାୟ
ଏହି ଦେବକୁଳ ନିଶ୍ଚେ ଭଜିବ ବିଳୟ
ଦୈତ୍ୟଙ୍କ ବଳେ ସରବେ ହେଲେ ପରାଜିତ
ଅମରଗଣ ଶେଷରେ ତେଜିବେ ଜୀବିତ
ବ୍ରହ୍ମାଦି ଦେବତାଙ୍କର ଏହି ସ୍ତବ ଶୁଣି
ପରମ ପୁରୁଷ ଭଗବାନ ଚକ୍ରପାଣି
ପୁଣ୍ଡରୀକାକ୍ଷ ଶ୍ରୀ ବିଷ୍ଣୁ ପୁରୁଷଉତ୍ତମ
ଫିଟାଇଲେ ନେତ୍ର ତେଜି ଅନନ୍ତ ଶୟନ
ଏକସ୍ଥାନେ ସମବେତ ଦେବତାଙ୍କୁ ଚାହିଁ
ଅଭୂତପୂର୍ବ ସ୍ୱରୂପ କମଳାଙ୍କ ସାଇଁ
କହିଲେ ହେ ଦେବଗଣ ଶୁଣ ମୋର ବାଣୀ
ତୁମ୍ଭର ଯେ ଦୁଃଖ ତାହା ମୁହିଁ ଅଛି ଜାଣି
ମୁଁ ଯାହା କରିବି ତାହା ଯଦ୍ୟପି କରିବ

ଅଳ୍ପ କାଳରେ ତୁମ୍ଭର ଦୁଃଖ ଦୂର ହେବ
ଅସୁରଙ୍କୁ ସଙ୍ଗତରେ ଘେନି ଦେବଗଣ
ଶୀଘ୍ର ଯାଇ କର ଏହି କ୍ଷୀରାବ୍ଧି ମନ୍ଥନ
ସର୍ବ ଔଷଧିରେ ପୂର୍ଣ୍ଣ ମନ୍ଦର ପର୍ବତ
ତାହାକୁ ଆଣି କରିବ ଖୁଆ ଦଣ୍ଡବତ
ବାସୁକୀକୁ ରଜ୍ଜୁ କରି ସମୁଦ୍ର ମନ୍ଥିବ
ତାଫଳେ ଅମୃତ ତହୁଁ ଜନମ ହୋଇବ
ସାବଧାନ ହୋଇ ମୋର ପାଳିଲେ ଆଦେଶ
ସଂପୂର୍ଣ୍ଣ ସାହାଯ୍ୟ ମୋର ଲଭିବ ଅବଶ୍ୟ
ଅସୁରଙ୍କ ପାଶେ ଏବେ ତୁମେ ସବୁ ଯାଅ
ଆଶ୍ୱାସନା ଦେଇ ତାଙ୍କୁ ଏହି କଥା କହ
ସମୁଦ୍ର ମନ୍ଥନ ଫଳେ ଯା କିଛି ମିଳିବ
ସମାନ ଭାବରେ ସବୁ ଦୁଇଭାଗ ହେବ
ସୁର ଅସୁର ଉଭୟେ ସମାନ ଭାବରେ
ଭୋଗିବେ ତା ଦ୍ୱିଧା କିଛି ନଥିବ ଏଥିରେ
ସମୁଦ୍ର ମନ୍ଥନୁ ଯେଉଁ ଅମୃତ ମିଳିବ
ତାହା ଫଳେ ତୁମ୍ଭେମାନେ ବଳବାନ ହେବେ
ସୂତ୍ର ମୁହିଁ ଖଞ୍ଜି ଦେବି ସେକାଳେ ଏପରି
ଅମୃତ ପାଇବେ ନାହିଁ ଦୈତ୍ୟେ ଯେଉଁପରି
ତାହାଙ୍କର ପରିଶ୍ରମ ମାତ୍ର ସାର ହେବ
ଯେ ଫଳ ମିଳିବ ତାହା ତୁମ୍ଭର ହୋଇବ
ପ୍ରଭୁଙ୍କ ଆଜ୍ଞାରେ ତେବେ ସେଠାରୁ ଫେରିଲେ
ଦୈତ୍ୟଙ୍କ ସଙ୍ଗରେ ମିଶି ସମାଧାନ କଲେ
କଥାବାର୍ତ୍ତାରେ କହିଲେ ମିଳିବ ଅମୃତ
ସମୁଦ୍ର ମନ୍ଥନ ତେବେ ହେଲା ସମର୍ଥୀତ
ଦେବ ଦଇତ୍ୟ ଦାନବ ଏକମେଳ ହେଲେ
ସମୁଦ୍ର ମନ୍ଥନ ପାଇଁ ସବୁ ଯୋଗାଡ଼ିଲେ
ଖୋଜି ସରବ ଔଷଧି ସଂଗ୍ରହ ସେ କଲେ
ଚନ୍ଦ୍ରକାନ୍ତି ଜିଣା କ୍ଷୀର ସାଗରେ ଫିଙ୍ଗିଲେ
ଖୁଆରପେ ମନ୍ଦରକୁ କରି ବ୍ୟବହାର
ଶେଷନାଗ ବାସୁକୀକୁ ରଜ୍ଜୁକଲେ ତାର
ଲାଞ୍ଜପଟେ ଦେବେ ମୁଣ୍ଡ ପଟରେ ଅସୁର
ଧରିଟାଣି ଘୂରାଇଲେ ଶବ୍ଦହେଲା ଘୋର
ଶେଷନାଗ ଉପରକୁ ଟେକିଥିଲା ଫଣା
ପାଇଥିଲା ଆଗୁ ଯେଣୁ ବିଷ୍ଣୁଙ୍କ ମନ୍ତ୍ରଣା
ବିଷ ସହ ଅଗ୍ନି ବହୁଥିଲା ତା ନିଃଶ୍ୱାସେ
ତେଣୁ କ୍ଷୀଣ କାନ୍ତି ହେଲେ ସମସ୍ତ ରାକ୍ଷସେ
କ୍ରମେ ଦାନବ ଦଇତେ ହୋଇଲେ ନିସ୍ତେଜ
ପୁଚ୍ଛଘାତଜଳ ବୃଦ୍ଧି କଲା ସୁର ତେଜ
ଘର୍ଷଣ ଜନିତ ଶ୍ରମ ସୁରେ ନଜାଣିଲେ
ମଧ୍ୟେ ବ୍ରହ୍ମା ପଦ୍ମସମ ଗିରିଧରିଥିଲେ
ବିଷ୍ଣୁଙ୍କ ପୃଷ୍ଠରେ ସ୍ଥିତ ସେହି ଗିରିବର
ବେଢ଼ି ରହିଥିଲେ ବେନି ତଟେ ବିଷ୍ଣୁକର
ବାହୁବେଷ୍ଟନ ଉପରେ କମଳ ପରାଏ
ଶୋଭିତ ହେଲା ମନ୍ଦରାଚଳ ଅତିଶୟେ
ଦେବାସୁର ବେନି ଦଳ ମଧ୍ୟରେ ଅଚ୍ୟୁତ
କୂର୍ମ ରୂପେ କ୍ଷୀର ସିନ୍ଧୁ ମଧ୍ୟେଥିଲେ ସ୍ଥିତ
କ୍ଷୀର ସାଗର ଏପରି ହୁଅନ୍ତେ ମନ୍ଥନ
ଦେବବଳ ବୃଦ୍ଧି କରୁଥିଲେ ଭଗବାନ
ପୂର୍ବୁ ସୁରଗଣ ଦ୍ୱାରା ହୋଇ ସୁ ପୂଜିତ
ମାତା ସୁରଭୀ ସେଠାରେ ଥିଲେ ଉପସ୍ଥିତ
ହବିଦାନୀ ହୋଇଥିଲେ ସେ ଗାଭୀ ଆବର
ତାଙ୍କୁ ଚାହିଁ ତୃପ୍ତି ଲାଭ କରୁଥିଲେ ସୁର
ଆକସ୍ମିକ ଭାବେ ତେବେ ଦୈତ୍ୟ ଦଇବତ
ଚିତ୍ତ ହୋଇଲା ବିକ୍ଷିପ୍ତ ନୟନ ସ୍ତିମିତ
କାରଣ ନଜାଣି ଦେବେ ବ୍ୟଥିତ ହୋଇଲେ
ସିଦ୍ଧି ପୁରୁଷ ଯେ ଥିଲେ ଚିନ୍ତାରେ ବୁଡ଼ିଲେ
ବାହାରିଲେ ତେବେ ଦେବୀ ଘୂର୍ଣ୍ଣିତ ଲୋଚନ
ଭ୍ରମର ସେବିତ ଗାତ୍ର ସ୍ଖଳିତ ଗମନ
ମଦଭରେ ଢ଼ଳୁଥିଲା ଏପଟ ସେପଟ
ବାଳପେଣ୍ଡା ଫିଟି ଲୋଟୁଥିଲା ପିଠିପଟ
ମନ୍ଦାର ଫୁଲ ପରାଏ ବର୍ଣ୍ଣ ସେ ନେତ୍ରର
ଦେବୀ ବା ଦାନବୀ ସେହି ନୋହିଲା ଗୋଚର
ଏକ ବସ୍ତ୍ରା ସେହି କହୁଥିଲା ଉଚ୍ଚସ୍ୱରେ
ରଖି ମତେ ଦିଅ ବଳ ସୁରେ ବା ଅସୁରେ
ତ୍ୟାଗକଲେ ସୁରେ ତାକୁ ଅପବିତ୍ର ଜାଣି
ଅସୁର ସେବା ସେ ହେଲା ତାନାମ ବରୁଣୀ
ପରେ ସେ ହୋଇଲା ସୁରା ସାଧନା ବଳରେ
ହେ କୁରୁପ୍ରବର ଏହା ଘେନ ସୁଚିତ୍ତରେ
ମନ୍ଥନୁ ଜନ୍ମିଲା ଦେବ ତରୁ ପାରିଜାତ
ଅପ୍ସରାଉତ୍ପନ୍ନ ହେଲେ ସଂଖ୍ୟାକୋଟିସାତ
ନଅଣ୍ଟ ହୋଇଲେ ଦେବାସୁରେ ବାଣ୍ଟି ନେଲେ

ପୂର୍ବ ପୁଣ୍ୟଥିଲା ଯେଣୁ ଅପ୍‌ସରା ହୋଇଲେ
ସୁଧାଂଶୁ ଉତ୍ପନ୍ନ ହେଲେ ହେ ଭୀଷ୍ମତାପରେ
ସର୍ବସମର୍ଥୀତେ ଦତ୍ତ ହେଲେ ଶିବକରେ
ନେଲେ ଶିବ ନିଯେ ତାଙ୍କୁ ଅତି ଆଗ୍ରହରେ
ସ୍ଥାପନା କଲେ ନିଜର ଜଟା ମଣ୍ଡଳରେ
ଧୂର୍ଜଟି ଜଟାରେ ଶଶି ହୋଇଲା ଭୂଷଣ
ନମଣ ଏଥି ସଂଦେହ ଗଙ୍ଗାଙ୍କ ନନ୍ଦନ
ତଦପରେ ଯେବେ ମନ୍ଥା ହେଲା ପାରାବର
ଭୀମଭୟ ଜାତହେଲା ସବୁପ୍ରାଣୀଙ୍କର
ଜନ୍ମହେଲା କାଳକୂଟ ଭୀଷଣ ତାରୂପ
ଦେଖି ଥରିଲେ ଭୟରେ ସୁର କଉଣପ
ସମସ୍ତଙ୍କ ଭୟ ଜାଣି ଦେବ ଶୁଳପାଣି
ନିଯେ ତାକୁ ପାନକଲେ ବଳେ ଟାଣିଆଣି
କଣ୍ଠ ସ୍ପରଶ ମାତ୍ରକେ ବିଷ କାଳକୂଟ
ନୀଳବର୍ଣ୍ଣ ହୋଇଗଲା ଶିବଙ୍କର କଣ୍ଠ
ସେଦିନୁ ଶିବଙ୍କ ନାମ ନୀଳକଣ୍ଠ ହେଲା
ଏଥିରେ ସନ୍ଦେହ ନାହିଁ ଶାନ୍ତନୁଙ୍କ ବଳା
ହର ପାନ ପରେ ବିଷ ଶେଷେ ଯାହାଥିଲା
ଉରଗ ନାଗ ଯାଇଣ ତାକୁ ପାନ କଲା
ତଦପରେ ମନ୍ଥନରୁ ପିନ୍ଧି ଶୁଭ୍ର ବାସ
ଧନ୍ୱନ୍ତରୀ ପୁତଗାତ୍ର ଲଭିଲେ ପ୍ରକାଶ
ଶୋଭୁଥିଲା କମଣ୍ଡଳୁ ଏକ ତାଙ୍କକରେ
ପୂର୍ଣ୍ଣ ତାହା ହୋଇଥିଲା ଅମୃତ ରସରେ
ମୋଦେ ପୂର୍ଣ୍ଣ ହେଲା ତେବେ ସରବ ଅନ୍ତର
ଜଳଭେଦୀ ଯେବେ ସେହି ହୋଇଲେ ବାହାର
ବୈଦ୍ୟରାଜଙ୍କୁ ଦର୍ଶନ କଲେ ସର୍ବେ ଯାଇ
ଘର୍ଷଣଜନିତ ଶାନ୍ତି ଗଲା ଦୂର ହୋଇ
ତଦପରେ ଜନମିଲେ ଅଶ୍ୱ ସହ ଗଜ
ଉଚ୍ଚୈଃଶ୍ରବା-ଐରାବତ ତାଙ୍କନାମ ହେଜ
କାନ୍ତିରେ ଦଶ ଦିଗକୁ ଆଲୋକିତ କରି
ତଦପରେ ଜନମିଲେ ଯେବଣ କୁମାରୀ
ବିକଶିତ ପଦ୍ମଥିଲା ଆସନ ତାଙ୍କର
ପଦ୍ମଫୁଲେ ଶୋଭୁଥିଲା ତାଙ୍କ ବେନିକର
ଶ୍ରୀ ସୂକ୍ତ ମହର୍ଷିଗଣ ଦେଖି କଲେ ଗାନ
ପୁଷ୍ପାଞ୍ଜଳି ତାଙ୍କ ପାଦେ କରିଣ ପ୍ରଦାନ

ବିଶ୍ୱାବସୁ ଆଗେ ରଖି ଗନ୍ଧର୍ବ ସକଳ
ରତ ହୋଇଥିଲେ ଯଶ ଗାନରେ କେବଳ
ଘୃତାଚୀକୁ ଆଗେ ରଖି ଅପ୍‌ସରା ସକଳ
ନାଚି ଗାଉଥିଲେ କଣ୍ଠ ଯେସନେ କୋକିଳ
ଦେବୀଙ୍କ ସ୍ନାନ ନିମନ୍ତେ ଗଙ୍ଗାଦି ସରିତ
ସେହିକାଳେ ସେସ୍ଥାନରେ ହେଲେ ଉପଗତ
ସୁବର୍ଣ୍ଣକଳଶେ ତୀର୍ଥ ଜଳ ପୂର୍ଣ୍ଣକରି
ଆସିଲେ ଦିଗ୍‌ଗଜଗଣ ହୃଦେ ହର୍ଷଭରି
କ୍ଷୀର ସାଗର ଦୁଳଣୀ ଲକ୍ଷ୍ମୀଠାକୁରାଣୀ
ତାଙ୍କୁ ସ୍ନାନ କରାଇବେ ବେଳକାଳ ଜାଣି
ଅମ୍ଳାନ ପଙ୍କଜ ମାଳା ନିଯେ ଧରିକରେ
କ୍ଷୀର ସାଗର ସମର୍ପିଦେଲେ ତାଙ୍କ କରେ
ବିଶ୍ୱକର୍ମା କର ଗଢ଼ା ସମସ୍ତ ଭୂଷଣ
ଦେବୀଙ୍କୁ ଆନନ୍ଦେ କରିଥିଲେ ସମର୍ପଣ
ସ୍ନାନ ସାରି ଦିବ୍ୟବସ୍ତ୍ର ମାଳାରେ ଭୂଷିତା
ହୋଇ ସେ ହୋଇଲେ ଭୀଷ୍ମ ଅତି ସୁଶୋଭିତା
ଇନ୍ଦ୍ରାଦି ଦେବତାନାଗ ଦୈତ୍ୟ ବିଦ୍ୟାଧର
ଗୁହ୍ୟକ ଦାନବ ସହ ରାକ୍ଷସ ନିକର
ସେ କନ୍ୟାକୁ ନେବାପାଇଁ ବଳାଇଲେମନ
ତାହା ଦେଖି ବ୍ରହ୍ମା ତେବେ କହିଲେ ଏସନ
ହେ ବାସୁଦେବ ଗ୍ରହଣ କର ଏ କନ୍ୟାକୁ
ସ୍ୱକରେ ମୁଁ ସମର୍ପଣ କରୁଛି ତୁମ୍ଭଙ୍କୁ
ଏ କନ୍ୟା ନଦେବି କେବେ ଅନ୍ୟ କାତରେ
ସନ୍ତୁଷ୍ଟ ହୋଇଛି ମୁହିଁ ତୁମ୍ଭ ସ୍ୱଭାବରେ
ଏହାପାଇଁ ଯୋଗ୍ୟ ତୁମେ ଜାଣେ ମୁଁ ସର୍ବଥା
ତାପରେ ଲକ୍ଷ୍ମୀଙ୍କୁ ଚାହିଁ କହିଲେ ବିଧାତା
କେଶବଙ୍କ ପାଶେ ଯାଇ ତୁମେ ଠିଆ ହୁଅ
ପତିରୂପେ ଲଭି ତାଙ୍କୁ ସ୍ୱସୁଖ ବଢ଼ାଅ
ବ୍ରହ୍ମାଙ୍କ ମୁଖରୁ ଏହି ବଚନ ଶୁଣିଲେ
ବିଷ୍ଣୁଦ୍ରୋହୀ ଯେତେ ଥିଲେ ଉଦ୍‌ବେଗ ଲଭିଲେ
ବିପ୍ରଚିତ୍ତ ରକ୍ଷବଂଶ ହୋଇଲେ ବର୍ଜିତ
ଅନ୍ୟ ଯେତେଥିଲେ ସର୍ବେ ହୋଇଲେ ଲଜ୍ଜିତ
ଧନ୍ୱନ୍ତରୀ କରେ ଥିଲା ଭାଣ୍ଡ ଅମୃତର
ଲାଳସା ତା ପାଇଁ ବୃଦ୍ଧି ହେଲା ଦୈତ୍ୟଙ୍କର
ଜାଣି ତାହା ଚକ୍ରପାଣି ମୋହିନୀରୂପରେ
ପ୍ରଲୋଭିତ କରି ତାଙ୍କୁ ରଖିଲେ ବଶ୍ୟରେ
କହିଲେ ମଣ୍ଡଳାକାରେ ବସ ସର୍ବେଯାଇ

ଦିଅ ଭାଣ୍ଡ ଅମୃତ ମୁଁ ପରଶି ଦେବଙ୍କୁ
ଦୈତ୍ୟଗଣେ ସେ ମୋହିନୀ କହିଲେ ତାପରେ
ମନେରଖ ମୁଁ ରହିବି ଯାଇ ତୁମଘରେ
ସୁନ୍ଦରୀ ଲଲାମ ସର୍ବଶ୍ରେଷ୍ଠ ନାରୀବର
ପ୍ରଲୋଭିତ ଥିଲା ତାଙ୍କ ସମସ୍ତ ଶରୀର
ତେଣୁ ପ୍ରାର୍ଥନା ତାଙ୍କର ଦାନବେ ରଖିଲେ
ପରଶିବା ପାଇଁ ହାତେ ସୁଧାକୁମ୍ଭ ଦେଲେ
ମୋହନୀ ଅମୃତ କୁମ୍ଭ ଧରି ନିଜ କରେ
ଦେବାତାମାନଙ୍କୁ ସବୁ ବାଣ୍ଟିଦେଲେ ପରେ
ତାଫଳେ ସମସ୍ତ ସୁରେ ହୋଇଲେ ଅମର
ସର୍ବଦା ଦିଅନ୍ତି ଯଥା ତ୍ରିଦଶ ବତ୍ସର
ଯୁବକର ବଳପାଇ ଦେବତା ନିଶ୍ଚୟ
ଅସୁରଙ୍କ ସଙ୍ଗେ ଯୁଝି ଲଭିଲେ ବିଜୟ
ଦୈତ୍ୟେ ପୃଷ୍ଠଭଙ୍ଗ ଦେଲେ ପ୍ରାଣ ବିକଳରେ
ଭୀତହୋଇ ବାସକଲେ ଯାଇ ପାତାଳରେ
ଆନନ୍ଦରେ ଦେବତାଏ କଲେ ଶଙ୍ଖଧ୍ୱନୀ
ବୁଲାଇଲେ ଗଦାବର ସର୍ବେକରେ ଘେନି
ପ୍ରଣାମ କଲେ ସମସ୍ତେ ବିଷ୍ଣୁଙ୍କ ପୟରେ
ତାପରେ ଆନନ୍ଦେ ଫେରିଗଲେ ସ୍ୱର୍ଗପୁରେ
ସମାପନ୍ନ ହେଲା ଏଥି ସମୁଦ୍ର ମନ୍ଥନ
ଶ୍ରୀ ଗୋପୀନାଥଙ୍କୁ ପାଦେ ରଖ ଭଗବାନ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସମ୍ବାଦେ ସମୁଦ୍ର
ମନ୍ଥନୋ ନାମ ତୃତୀୟ ଅଧ୍ୟାୟ ।

❑

## ଚତୁର୍ଥ ଅଧ୍ୟାୟ

### ଦକ୍ଷଯଜ୍ଞ ବିଧ୍ୱଂସନ

ପଚାରିଲେ ପୁଲସ୍ତ୍ୟଙ୍କୁ ଶାନ୍ତନୁ କୁମାର
ଦକ୍ଷପ୍ରଜାପତି-ସୁତା ସର୍ବ ଗୁଣାକର
ଦାହିଲେ କିପାଇଁ ଦେହ ପିତା ଯାଗାଗ୍ନିରେ
କିବା କାରଣ ତାହାର କହ ମୋତେ ଥରେ
ପିତା ଯାଗାଗ୍ନିରେ କିପାଁ ଦେହକୁ ଦାହିଲେ
ଦୟାବହି ସେହିକଥା କହ ଋଷିଭଲେ
କିପାଁ ଦକ୍ଷ ଯଜ୍ଞ ଧ୍ୱଂସ କଲେ କହ ହର
ଶୁଣିଲେ ସନ୍ଦେହ ମୋର ଋଷିହେବଦୂର
ମୋ ହୃଦରେ ଏହି କଥା ହୁଅଇ ଧ୍ୱନିତ
ହୋଇଲେ ଶିବ କିପରି କ୍ରୋଧେ ବଶୀଭୂତ
କହିଲେ ପୁଲସ୍ତ୍ୟ ଶୁଣି ଭୀଷ୍ମଙ୍କ ବଚନ
ଗଙ୍ଗାଦ୍ୱାରେ ହେଲା ଯଥା ଯଜ୍ଞ ଆୟୋଜନ
ଦକ୍ଷପ୍ରଜାପତି ଯାଗେ ରଖି ନିଜ ମତି
ଆମନ୍ତ୍ରଣ କଲେ ସବୁ ଦେବ ଋଷିପନ୍ତି
ବୈନତେୟ ନାଗ ଯକ୍ଷ ମଘବା ପିତର
ଔଷଧି ଆସିଲେ ଯାଗେ ହୋଇ ହର୍ଷଭର
ନିର୍ମିତ ହୋଇଲା ବେଦି ଯଥା ବିଧାନରେ
ବଶିଷ୍ଠଋଷି ହୋଇଲେ ହୋତାସେ ଯାଗରେ
ଅଧ୍ୱର୍ଯ୍ୟ ରୂପେ ବସିଲେ ଋଷି ଅଙ୍ଗୀରସ
ମନେ ରଖିଥିବ ଏହା ଶାନ୍ତନୁଙ୍କ ଶିଷ୍ୟ
ଅଶ୍ୱିନୀକୁମାର ସହ ଆଦିତ୍ୟ ଦ୍ୱାଦଶ
ଅଷ୍ଟ ବସୁଙ୍କ ସହିତ ମନୁ ଚତୁର୍ଦ୍ଦଶ
ଊନପଞ୍ଚାଶ ମରୁତ ଆମନ୍ତ୍ରିତ ହୋଇ
ଯୋଗ ଦେଇଥିଲେ ଯାଗେ ଆହେ କୁରୁସାଇଁ
ଦେବର୍ଷିନାରଦ ସହ ବ୍ରହ୍ମା ବୃହସ୍ପତୀ
ଉଦ୍‌ଗାତା ରୂପେଅଗ୍ନିରେ ଢ଼ାଳିଲେ ଆହୂତି
ଭକ୍ଷ ଭୋଜ୍ୟର ବର୍ଣ୍ଣନା ସେ ମହା ଯାଗରେ
ଜଗତରେ ଅଛି କିଏ କବି କହିପାରେ
କଥାରେ ନୋହିବ କହି ଭୂତି ସେ ଯଜ୍ଞର
ଶତକ୍ରତୁ ଇନ୍ଦ୍ର ଦେଖି ନମ୍ର କଲେ ଶିର
ବେଦୀ ମାଡ଼ି ବସିଥିଲା ଭୂମି ଦଶଯୂଣ
ଉପସ୍ଥିତଥିଲେ ଇନ୍ଦ୍ର ଆଦି ଦେବଗଣ
ସତୀଦେବୀ ତେବେ କ୍ଷୋଭେ ପିତା ପାଶେଗଲେ
ନେତ୍ରୁ ବହୁଥିଲା ଅଶ୍ରୁ ଏପରି କହିଲେ
ଆସିଛନ୍ତି ଇନ୍ଦ୍ର ଚଢ଼ି ଐରାବତ ହାତୀ
ସୁନ୍ଦରୀ ଭାରିଯା ଶଚୀ ସଙ୍ଗରେ ଅଛନ୍ତି
ଧୂମ୍ରାର୍ଣ୍ଣସଙ୍ଗରେ ଆସିଛନ୍ତି ଦଣ୍ଡଧର
ଆସି ଅଛନ୍ତି ଆବର ରାଜର୍ଷି ନିକର
ଅଛନ୍ତି ରାଜା ଯେତେକ ପୃଥିବୀ ମଧ୍ୟରେ
ସସ୍ତ୍ରୀକ ଆସିଛନ୍ତି ଏ ଯାଗ ସ୍ଥଳରେ
ଏ ବ୍ରହ୍ମ ସୃଷ୍ଟିରେ ଯେତେ ଜୀବ ରହିଛନ୍ତି
ସେ ସମସ୍ତେ ଏହି ଯାଗ ସ୍ଥଳେ ପ୍ରକାଶନ୍ତି
ଭଉଣୀ ଭାଣେଜୀମାନେ ପତିଙ୍କ ସଙ୍ଗରେ
ଆମନ୍ତ୍ରଣେ ଦେଇଛନ୍ତି ଯୋଗ ଏ ଯାଗରେ

ପୁଅ ନାତି ବନ୍ଧୁ ସହ ଯେତେ ପରିବାର
ଆସିଛନ୍ତି ସର୍ବେ ଯେତେ ଅଛନ୍ତି ସୃଷ୍ଟିର
ଆପଣଙ୍କ ନିମନ୍ତ୍ରଣେ ଆଗତ ଏମାନେ
ଅନିମନ୍ତ୍ରିତ ସୃଷ୍ଟିରେ ଅଛି ମାତ୍ର ଜଣେ
ଅଟନ୍ତି ସେହି ମୋ ସ୍ୱାମୀ ଶିବ ଦେବଦେବ
କି ଅଛି ଏଥି କାରଣ ତା ମୋତେ କହିବ
ତୁମ ଇଚ୍ଛାକୃତ ଏହା ନଥିଲା ପ୍ରତୀତି
ଅଜାଣତା ବଶୁଁ ମୁହିଁ ଆସିଅଛି ଏଥି
କାର୍ଯ୍ୟ ବ୍ୟସ୍ତେ ଅବା ହୋଇଥିବ ବିସ୍ମରଣ
ଭାବୁଥିଲି-କିନ୍ତୁ ଜାଣେ ନୁହେଁ ସେ କାରଣ
କହିଲେ ପୁଲସ୍ତ୍ୟ ଶୁଣ କୁରୁ ପିତାମହ
କହୁ କହୁ ସତୀଙ୍କର ବଢ଼ିଗଲା କୋହ
ବିଦିତା ତ୍ରିଲୋକେ ସତୀ ପତିବ୍ରତା ପଣେ
ତାଙ୍କପକ୍ଷେ ବଡ଼ କେହି ନୁହେଁ ଶିବ ବିନେ
ଶୁଣି ନିଜ କନ୍ୟାଠାରୁ ଏସନ ଭାରତୀ
ଡାକି ପାରୁଶକୁ କୋଳେ ବସାଇଲେ ସତୀ
କହିଲେ କହିବି ତୋତେ ଉପଯୁକ୍ତ କଥା
ଯହିଁପାଇଁ ମାଗୋ ହୋଇଅଛି ଏ ବ୍ୟବସ୍ଥା
ଶଙ୍କର ନର କପାଳ ଧରିଥାଏ କରେ
ଘୋଡ଼ାଇଥାଏ ଶରୀର ବାଘର ଚର୍ମରେ
ବୋଲି ହୋଇଥାଏ ଦେହେ ସର୍ବଦା ପାଉଁଶ
ମୁଣ୍ଡମାଳା ଲୋଟୁଥାଏ ତାର ବକ୍ଷଦେଶ
ତ୍ରିଶୂଳ ଗୋଟାଏ ସଦା ଧରିଥାଏ କରେ
ଲଙ୍ଗଳା ହୋଇ ସେ ବୁଲେ ମଶାଣି ଭୂଇଁରେ
ହାତୀର ଚମଡ଼ା ତାର ଦୋସଡ଼ା ଅଟଇ
ଖଟ୍ୱାଙ୍ଗ ନିରତେ ତାର ହାତରେ ଶୋଭଇ
ଏସବୁ କାରଣୁ ଲୋକ ଲଜ୍ଜାକୁ ମୁଁ ଡରି
ଏ ଯାଗ ଉତ୍ସବେ ତାକୁ ଆଣିନାହିଁ ବରି
ଶୁଣ ସତୀ ଏହି ଯାଗ ଉତ୍ସବ ଶେଷରେ
ତୋହର ପତିଙ୍କୁ ଡାକି ଆଣିବି ସାଦରେ
ବସାଇ ତୋହର ପାଶେ ଦେବ ତ୍ରିଲୋଚନେ
କରିବି ସତ୍କାର ଦୁଃଖ ନଧର ତୁ ମନେ
ଉପଯୁକ୍ତ ପୂଜା କରି କରିବି ସନ୍ତୋଷ
କହିଲି କାରଣ ତେଣୁ ନହୁଅ ବିରସ
ଯେ ଯଥା କରଇ ଫଳ ତଥା ସେ ଲଭଇ
ଭାବିବା ନିମନ୍ତେ ସତୀ ଏଥି କିଛି ନାହିଁ ।

ଦକ୍ଷଙ୍କର କଥା ଶୁଣି ଆହେ ଭୀଷ୍ମ ବୀର
ସତୀଙ୍କ ହୃଦୟ ହେଲା କ୍ରୋଧରେ ଜର୍ଜର
କ୍ରୋଧବଶୁ ନୟନକୁ ରଙ୍ଗ କରି ଦେଲେ
ଦୋଷୀବୋଲି ବୁଝି ଦକ୍ଷେ ଏପରି କହିଲେ
କହିଲ ଯାହା ଜନକ ଏବେ ମୋ ଆଗରେ
ଅନୁଚିତ ବୋଲି ତାହା ଭାବେ ମୁଁ ଚିତ୍ତରେ
ପୁଣ୍ୟଭାଗୀ ହେବାପାଇଁ ଇଚ୍ଛୁଥାନ୍ତି ଜନ
ପୁଣ୍ୟରୁ ମିଳନ୍ତି ଲକ୍ଷ୍ମୀ ଏକଥା ନିଦାନ
ଜନମ ହୁଅଇ ଲାଭ ପୁଣ୍ୟ ଅନୁସାରେ
ସବୁ ଭୋଗ ପ୍ରତିଷ୍ଠିତ ଯେହେତୁ ପୁଣ୍ୟରେ
ସେହି ହୁଅଇ ହେ ତାତ ସ୍ୱାମୀ ଜଗତରେ
ଶ୍ରେଷ୍ଠରୂପେ ଗଣାହୁଏ ସମସ୍ତ ବିଶ୍ୱରେ
ଲଭଇ ଉତ୍ତମ ସ୍ଥାନ ଏପରି ଶ୍ରୀମନ୍ତ
ସେହିପରି ପୁଣ୍ୟବାନ ଅଟନ୍ତି ମୋ କାନ୍ତ
ଏ ଯାଗ କରିବେ ଧ୍ୱଂସ ଏହି କଥା ସତ
ଜାଣୁଛି ଏଥିରୁ କେବେ ହେବନାହିଁ ହିତ
ଏପରି ସେ କଲେ ମୋରତପସ୍ୟା ଦିଶିବ
ଜାଣ ତାତ ଯା କହିଲି ତାହା ଅଟେ ଧ୍ରୁବ
ତେବେ ତାତା ତୁମର ଏ ଗର୍ବ ଭାଙ୍ଗିଯିବ
ଜଗତରେ କେହି ରକ୍ଷା କରି ନ ପାରିବ
କହି ଏହା ସତୀ ନିଜ ଦେହଜ ଅଗ୍ନିରେ
ଦଗ୍ଧକଲେ ଦେହ ଭୀଷ୍ମରଖିବ ଚିତ୍ତରେ
କ୍ରୋଧରେ ଛାଡ଼ିଲେ ଦେହ ସତୀଗଙ୍ଗାତଟେ
ସୌନକତୀର୍ଥ ରାଜଇ ତା ପଶ୍ଚିମ ପଟେ
ସତୀଙ୍କ ମୃତ୍ୟୁ ସମ୍ବାଦ ଶୁଣିଲେ ଶଙ୍କର
କ୍ରୋଧ ସହିତ ତାଙ୍କର ଦୁଃଖ ହେଲା ଘୋର
ଆସି ଦେଖିଲେ ଯଜ୍ଞରେ ସର୍ବ ଦଇବତ
ଯଜ୍ଞ ଧ୍ୱଂସ ପାଇଁ ହୃଦେ କଲେ ସେ ସିଦ୍ଧାନ୍ତ
ଭୂତପ୍ରେତ ଆଦି ସବୁ ରୁଦ୍ରଗଣ କୋଟି
ଡକାଇ ଆଣିଲେ ସେହି ସମୟେ ଧୂର୍ଜଟି
ଆଜ୍ଞାଦେଲେ ତାଙ୍କୁ ଶିବ ଯଜ୍ଞ ଧ୍ୱଂସପାଇଁ
ଦେବଗଣଙ୍କୁ ସେମାନେ ମାଇଲେ ଗୋଡ଼ାଇ
ଯଜ୍ଞ ନଷ୍ଟ ହେବା ଦେଖି ଦକ୍ଷପ୍ରଜାପତି
ଉତ୍ସାହ ଉଦ୍ୟମ ହୀନ ହୋଇଲେ ଝଟତି
ତଦପରେ ଧୈର୍ଯ୍ୟ ହୀନ ହୋଇ ଭୟପାଇ
ପହଞ୍ଚିଲେ ଦେବଦେବ ସମୀପରେ ଯାଇ

ପିନାକପାଣିଙ୍କୁ ଭୟେ କଲେ ସେ ପ୍ରାର୍ଥନା
ଦେବଙ୍କ ଉପରେ ଦେବ ତୁମ୍ଭେ ମହାମନା
ଶିବ ତୁମେ ପ୍ରଭୁ ଅଟ ତିନି ଜଗତର
ସାମର୍ଥ୍ୟ ଯୋଗରୁ ତୁମ ନାମଟି ଈଶ୍ୱର
ମୁଢ଼ ମୁହଁ ପ୍ରଭୁ ମୋର ନଥିଲା ଏ ଜ୍ଞାନ
ସର୍ବବିଶ୍ୱେ ଅଗ୍ରଦେବ ତୁମେ ଭଗବାନ
ସର୍ବ ଦେବଙ୍କୁ ଜିଣିବା ଶକତି ତୁମ୍ଭର
କୃପା ମୋରେ କର ଏବେ କୃପା ପାରାବାର
ଦୟାକରି ଏବେ ଆଜ୍ଞା ଦିଅନ୍ତୁ ଈଶାନ
ଓହରି ଯାଆନ୍ତି ଧ୍ୱଂସ କର୍ମୁ ରୁଦ୍ରଗଣ
କହିଏହା ଦକ୍ଷ ଶିବ ସ୍ତବ କଲେ ଗାନ
ଏହିପରି ଅଟେ ତାହା ଶାନ୍ତନୁ ନନ୍ଦନ
ବିରୂପାକ୍ଷ ମଙ୍ଗଳାକ୍ଷ ସହସ୍ରାକ୍ଷ ତୁମେ
ମୋର ନମସ୍କାର ପ୍ରଭୁ ତୁମ୍ଭ ଶ୍ରୀ ଚରଣେ
ଚଣ୍ଡ ସ୍ୱରୂପ ଖଟ୍ୱାଙ୍ଗ ମୁଣ୍ଡେ ଶୋହେ କର
ତୁମ୍ଭର ଚରଣେ ମୋର କୋଟି ନମସ୍କାର
ହବ୍ୟ, କଳପ ସ୍ୱରପ ହେ ସର୍ବସଂହାର
ତୁମ୍ଭପାଦେ ମୋର ନମସ୍କାର ବାରମ୍ବାର
ଅନନ୍ତ ରୂପ ତୁମ୍ଭର ସୁନ୍ଦର ସ୍ୱରୂପ
ଆବର ଆପଣଙ୍କର ଅଟେ ଶତରୂପ
ମଙ୍ଗଳରେ ଯୁତ ପଞ୍ଚ ମୁଖକୁ ତୁମ୍ଭର
ଆହେ ପ୍ରଭୁ ନମସ୍କାର କରେ ବାରମ୍ବାର
ହେ ପ୍ରଭୁ ତୁମ୍ଭେ ବରଦ ବରହ-ସ୍ୱରୂପ
ହେ ମୃଗ ସ୍ୱରୂପ ପୁଣି ତୁମେ କୂର୍ମରୂପ
ତ୍ରିପୁଣ୍ଡ ଯୁକତ ତୁମ ପ୍ରଶସ୍ତ ଲଲାଟ
ତୁମ୍ଭପାଦେ କୋଟି ନମସ୍କାର ବିଶ୍ୱରାଟ
କରେ ଶୋହେ କମଣ୍ଡଳୁ ଆହେ ବିଶ୍ୱନାଥ
ତୁମ୍ଭର ଚରଣେ ମୁହଁ ନତ କରେ ମାଥ
ଆହେ ତ୍ରିନେତ୍ର, ତ୍ରିପୁର ଅସୁର ଅନ୍ତକ
ତୁମ୍ଭର ଚରଣେ ନତ କରେ ମୁଁ ମସ୍ତକ
କାୟ ମନ ବଚନରେ ମୁଁ ତୁମ କିଙ୍କର
ନମେ ତୁମ୍ଭର ପୟରେ ଆହେ ମହେଶ୍ୱର
ରକ୍ଷାକର ମୋତେ ପ୍ରଭୁ କରୁଣା ବାରିଧି
ତୁମ୍ଭପାଦେ ଚିତ୍ତ ମୋର ରହୁ ନିରବଧି
ଆତୁରେ ଏ ସ୍ତୋତ୍ର ପଢ଼ି ଦକ୍ଷ ପ୍ରଜାପତି
କଲେ ରୁଦ୍ରଙ୍କ ଚରଣେ ଅଶେଷ ମିନତି

ସ୍ତୁତିରେ ପ୍ରସନ୍ନ ହୋଇ ପ୍ରଜାପତିଙ୍କର
ତୁଷ୍ଟହୋଇ ତଦପରେ କହିଲେ ଶଙ୍କର
ଦେଖୁଛ ଯଜ୍ଞ ତୁମ୍ଭର ହୋଇଅଛି ଧ୍ୱଂସ
ମାତ୍ର ଯାହା ପୂର୍ଣ୍ଣଫଳ ଦେବି ମୁଁ ଅବଶ୍ୟ
ସମସ୍ତ କାମନା ତୁମ୍ଭ ହେଇବ ପୂରଣ
ଲଭି ଯଜ୍ଞଫଳ ଏଥି ସଂଦେହ ନ ଘେନ
ଶିବଙ୍କ ବଚନ ଶୁଣି ଦକ୍ଷ ପ୍ରଜାପତି
ପ୍ରଣାମ କଲେ ତାହାଙ୍କୁ ଆନନ୍ଦରେ ଅତି
ତଦପରେ ଶିବ ଚଳିଗଲେ ନିଜ ଘରେ
ସତୀଙ୍କ ବିରହ ଦୁଃଖ ଧରି ହୃଦୟରେ
ସେ ନିଜ ଆବାସରେ ରହି ନ ପାରିଲେ
ସେହି ଦିନୁ ଆସି ଗଙ୍ଗା ଦ୍ୱାରେ ବାସ କଲେ
ସୀତଙ୍କ ଚିନ୍ତାରେ କ୍ରୀୟ ରୀତି ହେଲା ଭିନ୍ନ
ତେବେ ନାରଦ ଦେବର୍ଷି କଲେ ଆଗମନ
କହିଲେ ନାରଦ ଋଷି ଶିବେ ବୋଧଦେଇ
ଜାଣେ ସତୀସମ ସ୍ତିରୀ ନମିଳିବେ କାହିଁ
ମୃତ୍ୟୁ ତାହାଙ୍କର ତୁମ୍ଭ ଶୋକର କାରଣ
ମାତ୍ର ମୁଁ ଭାବଇ ତାହା ଅଟେ ଅକାରଣ
ଜନ୍ମ ହୋଇଲେଣି ସତୀ ହିମବନ୍ତ ଘରେ
ମନେରଖ ତାଙ୍କ ପତ୍ନୀ ମେନକା ଜଠରେ
ବେଦ ବେଦାନ୍ତ ବିଜ୍ଞାନୀ ଶିବ ସତ୍ୟାଶ୍ରୟ
ଧ୍ୟାନରେ ଜାଣିଲେ ତାହା ଅଟଇ ନିଶ୍ଚୟ
ଜାଣିତାହା ନିଯେ ଶିବ କୃତ କୃତ୍ୟ ହେଲେ
ଗଙ୍ଗାଦ୍ୱାର ତେଜି ମାତ୍ର ଘରକୁ ନ ଗଲେ
ଶୁଣ ଭୀଷ୍ମ ସେହି ସତୀ ପାର୍ବତୀ ରୂପରେ
ପଦାର୍ପଣ ଯେବେ କଲେ ପୂର୍ଣ୍ଣ ଯୌବନରେ
ଶିବଙ୍କ ସଙ୍ଗରେ ପୁଣି ହୋଇଲେ ବିବାହ
ଏଥିରେ ଗାଙ୍ଗେୟ କିଛି ନମଣ ସଂଶୟ
ରଖ ଶ୍ରୀ ଚନ୍ଦ୍ରଶେଖର ଗୋପୀନାଥ
ସଂସ୍କୃତ ଗ୍ରନ୍ଥର ଏହା ଅଟେ ରୂପାନ୍ତର
ମଙ୍ଗଳ ମୟ ସେ ଶିବ ମୋହର ଶରଣ
ତାଙ୍କ ନାମ ଚିନ୍ତି ଶେଷେ ଯାଉ ମୋ ଜୀବନ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସମ୍ବାଦେ ଦକ୍ଷ ଯଜ୍ଞ
ବିଧ୍ୱଂସନୋ ନାମ ଚତୁର୍ଥ ଅଧ୍ୟାୟ ।

❑

# ପଞ୍ଚମ ଅଧ୍ୟାୟ

## ପୃଥୁ ଜନ୍ମ ଚରିତ ବର୍ଣ୍ଣନ

କହନ୍ତି ବ୍ୟାସଙ୍କ ଶିଷ୍ୟ ସୁତ ମହାଋଷି
ପଚାରନ୍ତେ ଭୀଷ୍ମ ପୁଲସ୍ତ୍ୟଙ୍କ ପାଶେବସି
ଉତ୍ତରେ କହିଲେ ଯାହା ଋଷି ମୋଦଧରି
କହିବି ତାହା ଶୁଣହେ ସର୍ବ ତବ ଋପୀ
ପଚାରିଲେ ଗଙ୍ଗାସୁତ ଶୁଣ ତପୋଧନ
ଧରା ଭୋଗ କରୁଥିଲେ ବହୁତ ରାଜନ
ପାର୍ଥିବ-ନୃପତି ଭୋଗ୍ୟ ଯେଣୁ ନାମତାର
ଶୁଣିଛି ପୃଥିବୀ ରୂପେ ହୋଇଛି ପ୍ରଚାର
ଅଟଇ କି ସତ୍ୟ ଏହା ଅବା ଆଉ କିଛି
କାରଣ ଏଥିରେ ଯେବେ ଅନ୍ୟକିଛି ଅଛି
ଗୋ ନାମରେ କିପାଁ ଧରା ବନ୍ଦିତା ହୋଇଛି
ଆବର କହ ତହିଁର କାରଣ ଯା ଅଛି
ମୋ ସଂଶୟ କୃପ ବହି କରନ୍ତୁ ଭଞ୍ଜନ
କହିଲେ ଭୀଷ୍ମଙ୍କର ଏ ପ୍ରଶ୍ନେ ତପୋଧନ
ସତ୍ୟଯୁଗେ ଅଙ୍ଗ ନାମେ ଥିଲେ ପ୍ରଜାପତି
ଦକ୍ଷସୁତା-ସୁନ୍ୟଥାର ଅଟନ୍ତି ସେ ପତି
ଦୁଷ୍ଟ ପଣରେ ସୁନୀଥା ଶ୍ରେଷ୍ଠା ଗଙ୍ଗାସୁତ
ତା ଜ୍ୟେଷ୍ଠ ତନୟ ବେଣ ଦୁଷ୍ଟପଣେ ଖ୍ୟାତ
ସବୁବେଳେ କରେ ବେଣ ଅଧର୍ମାଚରଣ
ପରସ୍ତିରୀରେ ଆସକ୍ତ ସର୍ବଦା ତା ମନ
ଅତି ବଳଶାଳୀ ଅଟେ କାମୁକ ଆବର
ଭାବୁଥାଏ ଜଗତରେ ମୁଁ ଏକା ଈଶ୍ୱର
ତାର ସହଚର ଦୁଷ୍ଟ ରାଜ୍ୟରେ ଯେତେକ
ନିତି ନାରୀ ହରଣରେ ଥାଏ ଅବିବେକ
ଦେଖି ତାହା ଋଷିଗଣ ତା ପାଶକୁ ଗଲେ
ଜଗତ ମଙ୍ଗଳ ପାଇଁ ଉପଦେଶ ଦେଲେ
ଅଶୁଦ୍ଧାତ୍ମା ଶୁଣି ଋଷିଙ୍କର ସେ ବଚନ
ଶତ୍ରୁଭାବେ ତାଙ୍କ ପ୍ରତି କଲା ଆଚରଣ
ପ୍ରଜା ଅରାଜକତାର ହୋଇବେ ଶୀକାର
ଏ ବିଘ୍ନରେ ଋଷିଗଣ ହୋଇଲେ କାତର
ଶାପ ଦେଇଣ ତାହାକୁ ମୃତ୍ୟୁହାତେ ଦେଲେ
ନିଷ୍ପାପ ଋଷି ବ୍ରାହ୍ମଣେ ତା ଅଙ୍ଗ ମନ୍ଥିଲେ
ସେ ମନ୍ଥନୁ ମ୍ଳେଚ୍ଛମାନେ ହୋଇଲେ ଜନମ
ବହୁ ଜାତିରେ ସେମାନେ ହେ ଗଙ୍ଗାନନ୍ଦନ
ସେ ମ୍ଳେଚ୍ଛଙ୍କ ମଧ୍ୟେ ଦେହକାନ୍ତି ଯାରକଳା
ତା ମାତୃ ଦୋଷରୁ ଶୁଣ ଶାନ୍ତନୁଙ୍କ ବଳା
ପିତାଗୁଣେ ଯେତେ ତହୁଁ ହୋଇଲେ ଜନମ
ଧରମରେ ତାଙ୍କ ବୁଦ୍ଧି ଅଟଇ ଉତ୍ତମ
ତା ଦକ୍ଷିଣ କରୁ ସୁତ ମନ୍ଥନୁ ଜନ୍ମିଲା
ଜନମରୁ ଗଦା ଧନୁ ଶର କରେ ଥିଲା ।
ସୁନାର କବଚ ଏକ ଅଙ୍ଗେ ଥିଲା ତାର
ସ୍ୱର୍ଣ୍ଣ କଙ୍କଣେ ଶୋଭିତ ଥିଲା ବେନିକର
ମନେରଖ କୁରୁବୀର ପୃଥୁ ତାର ନାମ
ବିଷ୍ଣୁଙ୍କ ଅଂଶରୁ ଜାତ ସେ ଅତି ଉତ୍ତମ
ବିପ୍ରଗଣ ତାଙ୍କୁ ରାଜ୍ୟେ ଅଭିଷିକ୍ତ କଲେ
ଦୁସ୍ତର ତପସ୍ୟା ପାଇଁ ବନେ ନୃପଗଲେ
ସନ୍ତୋଷ ହୋଇଣ ବିଷ୍ଣୁ ତାଙ୍କ ତପସ୍ୟାରେ
ବରଦେବାପାଇଁ ଉଭା ହେଲେ ସମ୍ମୁଖରେ
ସର୍ବ ବିଶ୍ୱେ ରାଜ ଅଧିକାର ଦେଲେ ବର
ସେ ହେଲା ଧାର୍ମିକପଣେ ଶ୍ରେଷ୍ଠ ନରବର
ଅଧର୍ମ ତାଙ୍କ ରାଜ୍ୟରେ କିଛି ନ ରହିଲା
ପ୍ରଜାଙ୍କର ଚିତ୍ତ ମଧ୍ୟ ଧର୍ମମାର୍ଗେ ଗଲା
ପୃଥିବୀର ଯେତେଥିଲେ ବିକ୍ରମୀ ରାଜନ
କ୍ରୋଧେ ଆସି ପୃଥୁ ନୃପେ କଲେ ଆକ୍ରମଣ
ଦେଖି ତାହା ଗାଭୀ ରୂପ ଧରି ବସୁନ୍ଧରା
ହୋଇଗଲା ପଳାୟନ ନିମନ୍ତେ ତତ୍ପର
ନରପତି ପୃଥୁ ଯେବେ ସେ କଥା ଜାଣିଲେ
ଧନୁଶର ହାତେ ଗାଭୀ ପଛରେ ଧାଇଁଲେ
ପରିଚୟ ପାଇ ଧରା ଗତି ମନ୍ଦକରି
କହିଲା ପୃଥୁଙ୍କୁ ସ୍ନେହେ ସମ୍ବୋଧନ କରି
ହେ ପୃଥୁ କହନ୍ତୁ ଏବେ କି କରିବି ମୁହିଁ
କହିଲେ ପୃଥୁ ମୋ ଇଚ୍ଛା ପୂର୍ଣ୍ଣକର ତୁହି
ଗୋ ସୁବ୍ରତେ ମୋ ଅଭିଷ୍ଟ ଯାହା ତାହାଦିଅ
ସ୍ଥାବର ଜଙ୍ଗର ହେଉ ତାର ପରିଚୟ
ବସୁନ୍ଧରା ପୃଥୁଙ୍କର ସେହି ବାଣୀ ଶୁଣି
ପୂର୍ଣ୍ଣହେଉ ତୁମଇଚ୍ଛା, କହିଲା ସେକ୍ଷଣି
ପୁଣିକହେ ଏବେ ମତେ କର ତୁ ଦୋହନ
ତା ଶ୍ରବଣେ ନରପତି ହୋଇ ସୁପ୍ରସନ୍ନ
ସେ ଗାଭୀକୁ ଦୁହିଁ ନୃପ ପୂର୍ଣ୍ଣକାମ ହେଲେ
ଗାଙ୍ଗେୟ ସଂଶୟ ଏଥି ନ ମଣିବ ତିଳେ

ସ୍ୱାୟମ୍ଭୁବ ମନୁ ହେଲେ ପ୍ରଥମରେ ଜାତ
ଅନ୍ନ ରୂପେ ରଖିଲେ ସେ ପ୍ରଜାଙ୍କ ଜୀବିତ ।
ପରେ ଦୋହନରୁ ସପ୍ତଋଷି ଜନ୍ମ ହେଲେ
ତେବେ ଶଶି ବାଛୁରୀର ରୂପ ଧରିଥିଲେ
ବାଚସ୍ପତୀ ଥିଲେ ତେବେ ଗଉଡ଼ ରୂପରେ
ତପ ଥିଲା ରସ ରୂପେ ସେ ବେଦପାତ୍ରରେ ।
ସୁରଗଣ ବସୁଧାକୁ ଯେକାଳେ ଦୁହିଁଲେ
ମରୁତ ଦୋଗ୍ଧା ରୂପରେ କାର୍ଯ୍ୟ କରୁଥିଲେ
ପ୍ରଜାଏ ହୋଇଲେ ସୁସ୍ଥ ତାହାଙ୍କ ଶାସନେ
ହୋଇଲେ ସମସ୍ତେ ସୁଖୀ ଆୟୁ ପ୍ରଜାଧନେ
ଦରିଦ୍ରତା ବୋଲି ତେବେ କିଛି ନ ରହିଲା
କ୍ଷୁଧାର୍ତ୍ତ ରୋଗୀ ସେ ରାଜ୍ୟେ କିଏ ସେ ନଥିଲା
ସମସ୍ତଙ୍କ ମୁଖେ ହର୍ଷ କରିଥିଲା ଘର
ଦୁଃଖ ଶୋକ ପାପ ସବୁ ହୋଇଗଲା ଦୂର ।
ବଳଶାଳୀ ନୃପ ଭାବି ଲୋକଙ୍କ ମଙ୍ଗଳ
ଧନୁରେ ପର୍ବତ ଟାଳି କଲେ ସମତୁଲ ।
ଗ୍ରାମ ଦୁର୍ଗପୁର ତେବେ କିଛି ହିଁ ନଥିଲା
ସମସ୍ତଙ୍କ କରେ ମାତ୍ର ଅସ୍ତ୍ର ଶୋଭୁଥିଲା
ଦୁଃଖରେ ମନୁଷ୍ୟ ଯାଉଥିଲେ ହେଲେ ମରି
ଅର୍ଥ ଶାସ୍ତ୍ରରେ ଆଦର ନଥିଲା କାହାରି ।
କହିଲେ ଭୀଷ୍ମ ତା ଶୁଣି ଆହେ ତପିଈଶ
କଥାର ତତ୍ୱ ଆପଣ ଜାଣନ୍ତି ଅବଶ୍ୟ ।
ଚରିତ୍ର ସୂର୍ଯ୍ୟବଂଶର କ୍ରମ ଅନୁସାରେ
କହି କହ ସୋମବଂଶ କଥା ସୁଚିତ୍ତରେ ।
ଏହା କହିବାକୁ ଭବେ ଯୋଗ୍ୟ କିଏ ନାହିଁ
ତୁମ୍ଭ ବିନା ଆହେ ଋଷି ଜାଣିଅଛି ମୁହିଁ ।
କହିଲେ ପୁଲସ୍ତ୍ୟ, ଦୁଃଖ ନିଜ ରୂପ ଧରି
ଘୋଟି ରହିଥିଲା ଏହି ବସୁଧା ଆଦରି
ତେବେ ଜାତହେଲେ ଦଶ ସୁତ ମନୁଙ୍କର
ଅତି ବଳଶାଳୀ ଥିଲା ତାଙ୍କ କଳେବର ।
ସୁତଙ୍କରେ ଜ୍ୟେଷ୍ଠ ଯେହୁ ଈଳା ତାର ନାମ
ପୁତ୍ରେଷ୍ଟି ଯଜ୍ଞ ସଦୃଶ ସେହି ମନେ ଘେନ
ଇକ୍ଷ୍ୱାକୁ ଦ୍ୱିତୀୟ କୁଶନାଭ ତଦପରେ
ଅରିଷ୍ଟ ଚତୁର୍ଥ ଧୃଷ୍ଟ ଜନମ ତାପରେ ।
ତରିଷ୍ୟନ୍ତ, କକ୍ଷ ମହାବଳୀ ଯେ ଶର୍ଯ୍ୟାତି
ପୃଷଧ ସହିତ ଏହି ସୁତ ଦଶଗୋଟି ।

ଏମାନେ ଦିବ୍ୟ ମନୁଷ୍ୟ ରୂପରେ ବିଖ୍ୟାତ
ଏଥିରେ ସନ୍ଦେହ ନାହିଁ ଶାନ୍ତନୁଙ୍କ ସୁତ ।
ଦେଖି ଜ୍ୟେଷ୍ଠସୁତ ଈଳା ଧର୍ମ ଧୁରନ୍ଧର
ରାଜ୍ୟେ ତାଙ୍କୁ ରାଜାକଲେ ମନୁ ନରବର ।
ତପସ୍ୟା ସେ କଲେ ଯାଇ ସିଦ୍ଧି ଲାଭପାଇଁ
ଜାଣି ତା ଆସିଲେ ପାଶେ ସାବିତ୍ରୀଙ୍କ ସାଇଁ
କହିଲେ କୁମାର ହେଉ କଲ୍ୟାଣ ତୁମ୍ଭର
ମୋହଠାରୁ ମାଗି ନିଅ ଯଥା ଇଚ୍ଛା ବର ।
ପଙ୍କଜନେତ୍ର ପଦ୍ମଜ ବହ୍ମା ବାଣୀ ଶୁଣି
କହିଲେ ବ୍ରହ୍ମଙ୍କୁ ଈଳ ଗୁଣଗଣ ଖଣି ।
ଧର୍ମ ଯୁକ୍ତ ହେଉ ଧରା-ସର୍ବ ନରପତି
ରହନ୍ତୁ ମୋହର ବଶେ ଆହେ ବେଦପତି ।
ଚକ୍ରବର୍ତ୍ତୀ କର ମୋରେ ପଙ୍କଜ ନୟନ
ତଥାସ୍ତୁ କହିଣ ଗଲେ କମଳ ଆସନ ।
ଫେରିଲେ ଈଳା ତପସ୍ୟା ପରେ ଅଯୋଧ୍ୟାରେ
ପାଳନା କଲେ ପ୍ରଜାଙ୍କୁ ପୂର୍ବ ପରକାରେ
ଦିନେ ବସି ସ୍ୟନ୍ଦନରେ ମନୁଙ୍କ କୁମର
ଅର୍ଥ ସିଦ୍ଧି ପାଇଁ ଗଲେ ଚଢ଼ି ରଘୁବର ।
ଭ୍ରମଣ କଲେ ରାଜନ ସପ୍ତଦ୍ୱୀପ ମହୀ
ହେଲେ ସବୁ ପୃଥିବୀର ଏକ କରଗ୍ରାହୀ ।
ଦୈବାୟତ୍ତେ ନରବର ହୋଇ ଆକର୍ଷିତ
ଶିବ କ୍ରୀଡ଼ା କାନନରେ ହେଲେ ଉପଗତ
ବୃକ୍ଷ ଲତାଦିରେ ରମ୍ୟ ଅଟେ ସେ କାନନ
ଶୁଣ ଭୀଷ୍ମ ନାମ ତାର ଅଟେ ଶରବଣ ।
କ୍ରୀଡ଼ା କରନ୍ତି ସେ ବନେ ଶ୍ରୀ ଚନ୍ଦ୍ରଶେଖର
ଉମାଙ୍କ ସଙ୍ଗରେ ଶୁଣ ଭୀଷ୍ମ ଧନୁର୍ଦ୍ଧର ।
ସେ ବନରେ ପଡ଼େ ଯଦି ପୁରୁଷ ଚରଣ
ସେକ୍ଷଣି ସେ ସ୍ତିରୀ ରୂପ କରଇ ଧାରଣ ।
ଅଜାଣତେ ଈଳା ପ୍ରବେଶିଲେ ସେ କାନନେ
ଭୂଷିତ ହୋଇଲେ ସେହିକ୍ଷଣି ସ୍ତିରୀଗୁଣେ ।
ଘୋଡ଼ା ହୋଇଗଲା ଘୋଡ଼ି ତାହାଙ୍କ ସଙ୍ଗରେ
ନ ଘେନ ସନ୍ଦେହ କିଛି ଭୀଷ୍ମ ଏ କଥାରେ
ପୂର୍ବେ ଥରେ ଉମା ସହ କ୍ରୀଡ଼ା ସମୟରେ
କହିଥିଲେ ନଗଯେମା ଏହା ହର୍ଷଭରେ ।
ପୁଂସତ୍ୱ ଧରି ଏ ବନେ ଯେ କେହି ଆସିବ
ମୋର ଆଦେଶରେ ସ୍ତିରୀ ନିଶ୍ଚୟ ସେ ହେବ

ତେଣୁ ରାଜ ଅଶ୍ୱ ମଧ ସ୍ତ୍ରୀତ୍ୱ ଲାଭକଲା
ନମଣ ଏଥି ସଂଶୟ ଶାନ୍ତନୁଙ୍କ ବଳା ।
ପୂର୍ବେ ଥରେ ଏହି ଦଶା ଲଭି ଧନପତି
ପାଇଥିଲେ ଶିବଙ୍କର କୃପାରୁ ମୁକତି ।
ସେହିକଥା ସ୍ମରି ଇଳା ପୁରୁଷତ୍ୱ ପାଇଁ
ଦେବ ନର ନାଗ ସେବା କଲେ ଉମାସାଇଁ
ଈଶ୍ୱରଙ୍କ ପାଶେ ସର୍ବେ ଏକସଙ୍ଗେ ଗଲେ
ଇଳାଙ୍କ ପୁଂସତ୍ୱ ପାଇଁ ବହୁ ସ୍ତବ କଲେ ।
ସ୍ତୁତିରେ ଶିବ ପାର୍ବତୀ ହୋଇଣ ସନ୍ତୋଷ
କହିଲେ ଅମୃତ ସମ ମଧୁର ସେ ଭାଷ ।
ନିଶ୍ଚିତ ଅଛି ପୂର୍ବରୁ ଏ ବନେ ଆସିଲେ
ପୁରୁଷ ହୋଇବ ସ୍ତିରୀ ସର୍ବେ ଶୁଣ ଭଲେ ।
ଏବେ କି ହୋଇବ କରି ମୁହିଁ ସେ ବିଚାର
କହିବି ଯାହା ସମସ୍ତେ ସେହି କଥାକର ।
ଇକ୍ଷ୍ୱାକୁ କରନ୍ତୁ ଅଶ୍ୱମେଧ ନାମେ ଯାଗ
ଆମ୍ଭେଦୁହେଁ ସେ ଯାଗାରୁ ପାଇବୁ ଯେ ଭାଗ
ତାହାବଳେ ଇଳା ନୃପ ହେବେ କିଂ ପୁରୁଷ
ଅନ୍ୟଥା ନୋହିବ କେବେ ଏ ମୋହର ଭାଷ
ସ୍ୱୀକୃତ ହୋଇ ସରବେ ସେହିଠାରୁ ଗଲେ
ଇକ୍ଷ୍ୱକୁଙ୍କ ସମ୍ମୁଖରେ ପ୍ରକାଶ ତା କଲେ ।
ଅଶ୍ୱମେଧ ଯାଗ କଲେ ଇକ୍ଷ୍ୱାକୁ ତାପରେ
କିଂପୁରୁଷ ହେଲେ ଇଳା ସେ ଯାଗ ଫଳରେ
ପୁଂସ ସେ ହୁଅନ୍ତି ମାସେ ଅନ୍ୟମାସେ ସ୍ତିରୀ
ଇଚ୍ଛା ଅନୁରୂପେ ପୁଂସ ନିଅନ୍ତି ଆଦରି ।
ସ୍ତିରୀରୂପେ ବୁଧ ଘରେ ଯେଉଁ ମାସେଥିଲେ
ଶୁଣ ଭୀଷ୍ମ ବୁଧ ବୀର୍ଯ୍ୟେ ଗର୍ଭବାସ ହେଲେ
ସୁତ ସେ ଗର୍ଭୁ ଜନ୍ମିଲା ସର୍ବ ଗୁଣାକର
ପୁତ୍ର ଜନ୍ମ ପରେ ବୁଧ ଗଲେ ସ୍ୱର୍ଗପୁର ।
ସେହିଦିନୁ ମହୀ ନାମ ଇଳାଖଣ୍ଡ ହେଲା
ନମଣ ଏଥି ସଂଶୟ ଶାନ୍ତନୁଙ୍କ ବଳା ।
ଇଳାଙ୍କ ଶାସନ ଯହୁଁ ଉତ୍ତମ ହୋଇଲା
ସୋମ ସୂର୍ଯ୍ୟବଂଶ ଖ୍ୟାତି ବିସ୍ତାରିତ ହେଲା
ସେହିପରି ପୁରୁରବା ପୁରୁ ବଂଶ ଜାତ
ଯା ଯଶ ଗୁଣ ଜଗତେ ହୋଇଅଛି ଖ୍ୟାତ
ତଥା ଇକ୍ଷ୍ୱାକୁଙ୍କ ଘେନି ତପନ ବଂଶର
ଖ୍ୟାତି ବଢ଼ିଥିଲା ଜାଣ ଶାନ୍ତନୁ କୁମର ।

କିଂପୁରୁଷ ରୂପେ ଇଳା ଯେତେକାଳ ଥିଲେ
ସୁଦ୍ୟୁମ୍ନ ନାମେ ତାହାଙ୍କୁ ସର୍ବେ ଚିହ୍ନିଥିଲେ
ହୋଇଲା ସୁଦ୍ୟୁମ୍ନଙ୍କର ତିନୋଟି ତନୟ
ବଳ ପରାକ୍ରମେ ଯୁତ ହୋଇ ଅତିଶୟ ।
ପ୍ରଥମ ତନୟ ନାମ ଅଟଇ ଉତ୍କଳ
ଗୟ ଦ୍ୱିତୀୟ ତନୟ ଶୁଣ ଭୀଷ୍ମବୀର ।
ତୃତୀୟ କୁମର ନାମ ଅଟେ ହରିତାଶ୍ୱ
ବଳକର ପଣେ ତାଙ୍କୁ ମାନନ୍ତି ତ୍ରିଦଶ ।
ଉତ୍କଳଙ୍କ ସୁତ ନାମ ହୋଇଲା ଉତ୍କଳୀ
ଗୟାର କୁମର ନାମ ହେଲା ଗୟାପୁରୀ ।
ଦିଗ୍‌ଯାମା ନାମରେ ହରିତାଶ୍ୱଙ୍କ ଦୁହିତା
ସେ ହୋଇଲା ଭୀଷ୍ମ କୁରୁ ନୃପତିଙ୍କ କାନ୍ତା ।
ତାଙ୍କଠାରୁ ଯେଉଁ ସୁତ ପରେ ଜନମିଲା
ପୁରୁରବା ନାମ ତାର ବିଖ୍ୟାତ ହୋଇଲା ।
ପୁରୁରବାଙ୍କୁ ରାଜ୍ୟରେ ଅଭିଷିକ୍ତ କରି
ଇକ୍ଷ୍ୱାକୁ ଚଳିଲେ ଇଳାଖଣ୍ଡ ସୁଖସାରି ।
ମଧ୍ୟପ୍ରଦେଶ ପଡ଼ିଲା ବିଭାଗେ ତାଙ୍କର
ତେଣୁ ଭୀଷ୍ମ ସେ ହୋଇଥିଲେ ତା ନୃପବର
ଶୁକ ନାମଧାରୀ ନରିଷ୍ୟନ୍ତଙ୍କ ତନୁଜ
ନ ହୋଇବ କହି କେତେ ତାଙ୍କ ବଳବୀର୍ଯ୍ୟ
ତାପରେ କହୁଛି ଶୁଣ ଭୀଷ୍ମ ବୀରଈଶ
ନାଭାଗଙ୍କ ସୁତ ନାମ ଅଟେ ଅମ୍ବରୀଶ ।
ତିନୋଟି ସୁତ ଜନମ ହେଲେ ଧୃଷ୍ଟଙ୍କର
ସମସ୍ତେ ଅଟନ୍ତି ସବୁ ସୁଗୁଣ ଆକର ।
କ୍ରମଶରେ ଧୃଷ୍ଟକେତୁ ସୁଧନ୍ୱା ତାପରେ
ରଣଧୃଷ୍ଟ ତାଙ୍କ ନାମ ଘେନ ସୁଚିତ୍ତରେ ।
କେ କାହାକୁ ଊଣା ନୁହେ ସର୍ବେ ବଳବାନ
ଶର୍ଯ୍ୟାତିଙ୍କର ହୋଇଲା ଗୋଟିଏ ନନ୍ଦନ ।
ଶୁଣ ଭୀଷ୍ମ ନାମ ତାର ଅଟଇ ଆବର୍ତ୍ତ
ସୁନ୍ଦର ଆବର ସବୁ ଗୁଣରେ ଗରିଷ୍ଠ
କନ୍ୟା ଗୋଟିଏ ତାଙ୍କର ହୋଇଲା ଆବର
ସୁଲକ୍ଷଣୀ ସେ ସୁକନ୍ୟା ନାମ ଅଟେ ତାର
ଆବର୍ତ୍ତକ ସୁତ ନାମ ଅଟେ ରୋଚମାନ
ଶୂର ବୀରପଣେ ତାଙ୍କୁ କେ ନୁହେ ସମାନ
ଏଣୁ ତାଙ୍କ ରାଜ୍ୟ ନାମ ଅଟଇ ଆବର୍ତ୍ତ
ଏହି କଥା ଭଲେ ବୁଝ ସତ୍ୟବତୀ ସୁତ ।

ଆବର୍ତ୍ତଙ୍କ ପତ୍ନୀ ନାମ ଅଟେ କୁଶସ୍ଥଳୀ
ମନେ ରଖିଥିବ ଆହେ ଭୀଷ୍ମ ବଳଶାଳୀ ।
ରେବ ନାମେ ସୁତ ହେଲା ରୋଚମାନଙ୍କର
ରେବଙ୍କର ସୁତ ରୈବତକ ନାମ ତାର ।
ରୈବତକ ଠାରୁ ହେଲେ ଶତପୁତ୍ର ଜାତ
କକୁଦ୍ମ ନାମ ତାହାଙ୍କ ମଧ୍ୟରେ ଯେ ଜ୍ୟେଷ୍ଠ
ପୁତ୍ରପରେ କନ୍ୟା ହେଲା ତା ନାମ ରେବତୀ
ବଳରାମଙ୍କର ସେହି ଅଟେ ପ୍ରିୟବତୀ ।
କୁରଷା କାଶ୍ୟା ତାଙ୍କର ଏ ଦୁହିତା ଦୁଇ
ରୂପେ ଗୁଣେ ତାଙ୍କ ସମ ହୋଇଥିଲେ ସେହି
ଗୋବର୍ଦ୍ଧଙ୍କ ସୁତ ନାମ ପୃଷଧ୍ର ହୋଇଲା
ଗୁରୁ ଶାପ ସକାଶୁ ସେ ପରେ ଶୂଦ୍ରହେଲା
ବିକ୍ଷୁର୍ଣ୍ଣ, ଦଣ୍ଡକ ନିମିଏ ତିନିକୁମର
ଇକ୍ଷ୍ୱାକୁଙ୍କ ପୁତ୍ର ଏଥି ସନ୍ଦେହ ନକର ।
ଶହେ ସୁତଙ୍କରେ ଶ୍ରେଷ୍ଠ ଅଟନ୍ତି ପଞ୍ଚାଶ
ମେରୁ ଉତ୍ତର ଦିଗରେ ପ୍ରକାଶିଲେ ଯଶ ।
ଚତୁଚତ୍ୱାରିଂଶ ଅନ୍ୟ ପଞ୍ଚାଶ ମଧ୍ୟରେ
ନୃପତି ହୋଇଲେ ଯାଇ ମେରୁ ଦକ୍ଷିଣରେ
ତା ମଧ୍ୟେ ବଡ଼ର ନାମ ଅଟଇ କକୁସ୍ଥ
ସୁଯୋଧନ ନାମଧାରୀ ହେଲା ତାଙ୍କ ସୁତ ।
ସୁଯୋଧନଙ୍କ ତନୟ ପୃଥୁ ନାମ ତାର
ପୃଥୁଙ୍କ ତନୟ ବିଶ୍ୱ ଶୁଣ ଭୀଷ୍ମବୀର ।
ଆଦ୍ର ନାମରେ ହୋଇଲା ବିଶ୍ୱଙ୍କ ତନୟ
ଯୁବନାଶ୍ୱ ନାମଧାରୀ ତାହାଙ୍କର ପୁଅ ।
ଯବନାଶ୍ୱ ସୁତ ନାମ ଅଟଇ ଶ୍ରାବସ୍ତ
ନଥିଲା ଆଉ କେ ତାଙ୍କ ସମ ବୀର୍ଯ୍ୟବନ୍ତ ।
ଅଙ୍ଗଦେଶ ଶ୍ରାବସ୍ତଙ୍କ ଅଟଇ ରଚନା
ମନେରଖ ଏହି କଥା ଭୀଷ୍ମ ମହାମନା ।
ଶ୍ରାବସ୍ତଙ୍କ ସୁତ ନାମ ଅଟେ ବୃହଦଶ୍ୱ
କୁଳବାଶ୍ୱ ନାମେ ହେଲା ତାହାଙ୍କରସୁତ ।
ପରେ ଯେଣୁ ନାଶ କଲେ ସେ ଧୁନ୍ଧୁ ଅସୁର
ତେଣୁ ତାଙ୍କ ନାମ ଭୀଷ୍ମ ହେଲା ଧୁନ୍ଧୁମାର
ଧୁନ୍ଧୁମାରଙ୍କର ହେଲେ ତିନୋଟି କୁମର
ହର୍ଯ୍ୟଶ୍ୱ, ଘୃଣି କପିଳଅଶ୍ୱ ନାମଧର ।
କପିଳାଶ୍ୱ ବଳଶାଳୀ ତାହାଙ୍କ ମଧ୍ୟରେ
ଧୁନ୍ଧୁମାର ନାମେଖ୍ୟାତ ପୁଣି ସେଲୋକରେ
ହର୍ଯ୍ୟଶ୍ୱ ପ୍ରମୋଦ ନାମେ ଦୁଇଟି ତନୟ
ହୋଇଲେ ଦୃଢ଼ାଶ୍ୱଙ୍କର ଶାନ୍ତନୁ ତନୟ ।
ନିକୁମ୍ଭ ନାମରେ ସୁତ ହେଲା ହର୍ଯ୍ୟଶ୍ୱର
ସହତାଶ୍ୱ ପୁତ୍ର ନାମ ଅଟେ ନିକୁମ୍ଭର ।
ହେଲେ ସଂହତାଶ୍ୱଙ୍କର ଦୁଇଟି ନନ୍ଦନ
ଅକୃତାଶ୍ୱ ଉରଣାଶ୍ୱ ଅଟେ ତାଙ୍କ ନାମ
ଯୁବନାଶ୍ୱ ସୁତ ହେଲେ ଅରୁଣାଶ୍ୱଙ୍କର
ତାହାଙ୍କ ପୁତ୍ର ମନ୍ଧତା ଶୁଣ କୁରୁବୀର ।
ପୁରୁକୁତ୍ସ ନାମେ ହେଲା ମାନ୍ଧାତାଙ୍କ ସୁତ
ତାଙ୍କ ସୁତ ଧର୍ମସେତୁ ଏହା ହୁଅ ଜ୍ଞାତ ।
ଧର୍ମସେତୁଙ୍କ କୁମର ନାମ ମୁଚୁକୁନ୍ଦ
ଯାହାର ନାମ ଶୁଣିଲେ ଭୟ କରେ ଇନ୍ଦ୍ର
ମୁଚୁକୁନ୍ଦ ସୁତ ନାମ ନର୍ମଦା ଅଟଇ
ଦୁଃସହ ଶାସନ ତାର କୁରୁକୁଳସାଇଁ ।
ନର୍ମଦାର ସୁତ ନାମ ଅଟଇ ସମ୍ଭୂତି
ତ୍ରିଧନ୍ୱା ନାମରେ ହେଲା ତାହାଙ୍କ ସନ୍ତତି
ତ୍ରିଧନ୍ୱା ସୁତର ନାମ ଅଟେ ତ୍ରୟ୍ୟାରୁଣ
ତାଙ୍କର ତନୟ ନାମ ସତ୍ୟବ୍ରତ ଜାଣ ।
ସତ୍ୟବ୍ରତ ସୁତ ନାମ ଅଟେ ସତ୍ୟରଥ
ହରିଶ୍ଚନ୍ଦ୍ର ତାଙ୍କ ସୁତ ଶୁଣ ଗଙ୍ଗାସୁତ ।
ସୁତ ହରିଶ୍ଚନ୍ଦ୍ରଙ୍କର ତାନାମ ରୋହିତ
ରୋହିତାଙ୍କ ସୁତ ବୃକ-ବାହୁ ତାଙ୍କ ସୁତ
ତାହାଙ୍କ ତନୟ ନାମ ଅଟଇ ସାଗର
ଯା ଲାଗି ହେ ଭୀଷ୍ମ ସୃଷ୍ଟି ହୋଇଛି ସାଗର
ତାଙ୍କ ଦୁଇ ପତ୍ନୀ ନାମ ପ୍ରଭା ଭାନୁମତି
ନିରତେ ଧର୍ମରେ ରତ ଥିଲେ ସେ ନୃପତି
ଔର୍ବାଗ୍ନିଙ୍କୁ ସେବା କଲେ ସେହି ଦୁଇ ନାରୀ
ସୁପୁତ୍ର ଜାତ କାମନା ହୃଦୟରେ ଭରି ।
ସେବାରେ ସନ୍ତୁଷ୍ଟ ହୋଇ ଔର୍ବ ଦେଲେବର
ମାତା ହେଲା ପ୍ରଭା ଷଷ୍ଠି ସହସ୍ର ପୁତ୍ରର ।
ଗୋଟିଏ ସୁତ ଜନନୀ ହେଲା ଭାନୁମତୀ
ଆହେ ଭୀଷ୍ମ ସେ ହୋଇଲା ସେରାଜ୍ୟର ପତି
ଅସମଞ୍ଜସ ଅଟଇ ନାମ ସେ ସୁତର
ପ୍ରଭାର ତନୟ ଯେଉଁ ଷାଠିଏ ହଜାର ।
ବିଷ୍ଣୁଙ୍କ ଦ୍ୱାରା ସମସ୍ତେ ପ୍ରଭାବିତ ହୋଇ
ଯାଗାଶ୍ୱ ସନ୍ଧାନେ ଭୂଇଁ ଖୋଳି ଗଲେ ମହୀ

କପିଳଙ୍କ କ୍ରୋଧାଗ୍ନିରେ ସର୍ବେ ପୋଡ଼ିଗଲେ
ଅସମଞ୍ଜସଙ୍କ ସୁତ ଅଂଶୁମାନ ହେଲେ ।
ଦିଲୀପ ହୋଇଲେ ସୁତ ଅଂଶୁମାନଙ୍କର
ଯଶସ୍ୱୀରେ ତାଙ୍କ ନାମେ ଆଗ ପଡ଼େ ଗାର
ନିଜେ ଗଙ୍ଗାଦେବୀ ଯାର ତପ ପ୍ରଭାବରେ
ପ୍ରକାଶିତ ହୋଇଛନ୍ତି ଏହି ସଂସାରରେ ।
ନାଭାଗ ସୁତ ଯଶସ୍ୱୀ ଭଗୀରଥଙ୍କର
ତାଙ୍କ ସୁତ ଅମ୍ବରୀଶ, ଶାନ୍ତନୁକୁମର ।
ସିନ୍ଧୁଦ୍ୱୀପ ଯାଏ ରାଜା ଅମ୍ବରୀଶ ଯଶ
ତାଙ୍କ ସୁତ ଅୟୁତାୟୁ ଶୁଣ ବୀରଈଶ ।
ଅୟୁତାୟୁଙ୍କ ନନ୍ଦନ ଅଟେ ଋତୁପୂର୍ଣ୍ଣ
କଲ୍ମାଷପାଦ ଅଟଇ ତାଙ୍କ ସୁତ ନାମ ।
ସର୍ବକର୍ମା ନାମେ ସୁତ କଲ୍ମାଷପାଦର
ଅନମିତ୍ର ରଘୁତ୍ତମ ନାମ ତାହାଙ୍କର ।
ନିର୍ମୂଳ କରି ସକଳ ଶତ୍ରୁଙ୍କୁ ବଳରେ
ଅନମିତ୍ର ନୃପ ଚଳିଗଲେ ବନଘେରେ ।
ଦିଲୀପ ନାମରେ ସୁତ ସେହି ରଘୁଙ୍କର
ଦିଲୀପ କୁମାର ଅଜ ଅତି ଯଶସ୍କର ।
ପ୍ରାଂଶବାହୁ ପ୍ରଜାପାଳନରେ ଧୂରନ୍ଧର
ଦଶରଥ ନୃପ ହେଲେ ତାହାଙ୍କ କୁମର ।
ଦଶରଥଙ୍କର ହେଲେ ଚାରିଗୋଟି ସୁତ
ଭଲେଏହା ମନେ ରଖ ଗଙ୍ଗାଦେବୀ ସୁତ ।
ବିଷ୍ଣୁଙ୍କ ସମ ଅଟନ୍ତି ଚାରି ସହୋଦର
ଜ୍ୟେଷ୍ଠ ରାମ ସବୁଠାରୁ ଅତି ମନୋହର ।
ଏହି ରାମ ଲଙ୍କପତି ରାବଣେ ବଧିଲେ
ରଘୁଙ୍କର ଯଶ ବହୁ ଗୁଣେ ବୃଦ୍ଧିକଲେ ।
ମହର୍ଷି ବାଲ୍ମୀକ ସବିସ୍ତାରେ ତାଙ୍କ କଥା
ଗା...ଗଣେ ଗାଇଛନ୍ତି ଭୀଷ୍ମ ମହାରଥା ।
ଶ୍ରୀରାମଙ୍କ ସୁତ କୁଶ ଅତି ଯଶସ୍କର
ଇକ୍ଷ୍ୱାକୁକୁଳର କୀର୍ତ୍ତି ସ୍ତମ୍ଭ ସେ ନୃବର ।
କୁଶଙ୍କ ତନୟ ନାମ ଅଟଇ ଅତିଥି
ତାହାଙ୍କ ସୁତ ନିଷଧ ଶୁଣ ଭୀଷ୍ମରଥୀ ।
ନିଷଧଙ୍କ ସୁତ ନଳ ନାମ ତାହାଙ୍କର
ନଭ ନଳଙ୍କର ସୁତ ଶୁଣ ଭୀଷ୍ମବୀର ।
ନଭଙ୍କ ତନୟ ନାମ ଅଟେ ପୁଣ୍ଡରୀକ
ଏଥିରେ ସନ୍ଦେହ ନାହିଁ ହେ ବୀରନାୟକ ।
କ୍ଷେମଧନ୍ୱା ଅଟେ ପୁଣ୍ଡରୀକ ସୁତ ନାମ
ସଂସାରେ ବୀର ନଥିଲେ କେହି ତାଙ୍କ ସମ
କ୍ଷେମଧନ୍ୱାଙ୍କର ସୁତ ନାମ ଦେବାନୀକ
ପ୍ରତାପୀ ପଣେ ତାହାଙ୍କୁ ଜାଣନ୍ତି ତ୍ରିଲୋକ
ଅହିନଗୁ ନାମେ ସୁତ ଅଟଇ ତାଙ୍କର
ସହସ୍ରାଶ୍ୱ ତାହାଙ୍କର ଅଟନ୍ତି କୁମର ।
ଏ ଅଧ୍ୟାୟ ଏହିଠାରେ ହୋଇଲା ସଂପୂର୍ଣ୍ଣ
ଗୋପୀନାଥ ଭଣେ ଏହି ଶ୍ରୀ ପଦ୍ମପୁରାଣ ।

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସମ୍ବାଦେ ପୃଥୁ ଯାଗ ବର୍ଣ୍ଣନେ
ନାମ ପଞ୍ଚମ ଅଧ୍ୟାୟ



## ଷଷ୍ଠ ଅଧ୍ୟାୟ

### ସୋମବଂଶ ପରିଚୟ

ପଚାରିଲେ ଗଙ୍ଗାସୁତ କୁରୁକୁଳ ବୃଦ୍ଧ
ଜାଣେ ମୁଁ ତପସ୍ୱୀ ତୁମେ ଅଟ ବିଶାରଦ ।
ସୋମବଂଶର ଉତ୍ପତ୍ତି ହେଲା କେଉଁପରି
ସେ ବଂଶର କୀର୍ତ୍ତି ଯାହା କହନ୍ତୁ ବିସ୍ତାରି ।
କେଉଁ ରାଜା ବଢ଼ାଇଲେ ବଂଶର ସମ୍ମାନ
ବୁଝାଇଣ ତାହା ମୋତେ କହ ତପୋଧନ ।
କହିଲେ ଋଷି ସଂସାରେ ସ୍ୱର୍ଗର ରଚନା
ଯେବେ ହେଲା ଏ ସେ କାଳ କଥା ମହାମନା
ଅତ୍ରିମୁନିଙ୍କ ସର୍ଜନା ମାନସରେ ଧ୍ୟାୟି
ବିଧାତାଙ୍କୁ ଆଜ୍ଞାଦେଲେ କମଳାଙ୍କ ସାଇଁ
ତାପରେ ବିଚାରି ପ୍ରଭୁ ସୃଷ୍ଟିର ରଚନା
ଆଚରିଲେ ଅତି ଘୋର ତପସ୍ୟା ସାଧନା ।
ଆନନ୍ଦର ମୂଳ ସେହି କ୍ଳେଶ ନାଶକର
ରୁଦ୍ର ସୂର୍ଯ୍ୟାଦିମାନଙ୍କ ସେହି ଅଗୋଚର ।
ତଥାପି ସର୍ବ ଅନ୍ତରେ ରହିଥାନ୍ତି ସେହି
ତପସ୍ୟା ଯୋଗରେ ଥିଲେ ଆନନ୍ଦିତ ହୋଇ
ବ୍ରହ୍ମରୁ ସମ୍ଭୂତ ଅତ୍ରୀ ବ୍ରହ୍ମ ଆଦେଶରେ
ତପକଲେ ମନଦେଇ ସୃଷ୍ଟି ସର୍ଜନାରେ ।
ଦେଖି ତାହା ପ୍ରଭୁ ଶାନ୍ତି କରିଣ ଧାରଣ
ଅତ୍ରିମୁନିଙ୍କ ସଂଯମେ ହୋଇଲେ ସଂସ୍ଥାନ ।

ଆଚରିଲେ ତପ ଅତ୍ରୀ ବ୍ରହ୍ମ ଆଦେଶରେ
ବଂଶରପତି ସୋମଙ୍କୁ ରଖି ମାନସରେ ।
ସେହିକାଳେ ଅତ୍ରିଙ୍କର ନୟନରୁ ଜଳ
ଜାତହେଲା ଶୁଣ ଆହେ ଶାନ୍ତନୁଦୁଲାଳ ।
ଅଶ୍ରୁତେଜ ଚରାଚରେ କରି ଆଲୋକିତ
ଉତ୍ପନ୍ନ ହୋଇଲା ତହୁଁ ଏକଇ ଯୋଷିତ ।
ଅତ୍ରିମୁନିଙ୍କ ବୀର୍ଯ୍ୟରେ ଗର୍ଭାଧାନ ହେଲା
ମନେରଖ ଏହି କଥା ଶାନ୍ତନୁଙ୍କ ବଳା ।
ଅସମର୍ଥାହୋଇ ବାମା ଗର୍ଭଧାରଣରେ
ତେଜିଲା ସେ ଗର୍ଭ ବାଳା ଅତି ଆତୁରରେ
ଚତୁର୍ମୁଖ ବ୍ରହ୍ମା ତେବେ ସେ କଥା ଜାଣିଲେ
ଗର୍ଭକୁ ସାଉଁଟି ନେଇ ଏକତ୍ରିତ କଲେ ।
ବେଦମୟ ରଥେ ବସି ପ୍ରଭୁ ପଦ୍ମଯୋନୀ
ଏକତ୍ରୀତ ସେ ବାଳକେ ନିଜ କରେ ଘେନି
ବ୍ରହ୍ମ ଆୟୁଷ ସହିତ ଦେଲେ ଯୁବାବସ୍ଥା
ନକର ସନ୍ଦେହ ଏଥି ଭୀଷ୍ମ ମହାରଥା ।
ଅଧିଷ୍ଠିତ କରି ତାକୁ ବ୍ରହ୍ମା ଏ ଲୋକରେ
ଧରିନେଲେ ସେ ପୁତ୍ରକୁ ଆତ୍ମଜ ରୂପରେ ।
ଥିଲେ ଯେତେ ବ୍ରହ୍ମଋଷି ତେବେ ଜଗତର
ସ୍ୱାମୀ ରୂପରେ ତାହାଙ୍କୁ କଲେ ସୀଉକାର ।
ସମସ୍ତ ଋଷି ଦେବତା ଗନ୍ଧର୍ବ ଅପ୍‌ସରା
ସ୍ତୁତି କଲେ ତା ତେଜରେ ହୋଇ ଆତ୍ମହରା
ତେଣୁ ସେ ଯୁବକ ତେଜ ବୃଦ୍ଧି ଲାଭକଲା
ତା ତେଜରୁ ଅଉଷଧି ଜନମ ହୋଇଲା ।
ରାତ୍ରିରେ ତେଜ ତାହାର ହେଲା ବହୁଗୁଣ
ରାତ୍ରି ବୋଲି ଆଉ କିଛି ନ ରହିଲା ଜାଣ ।
ଗଣନା ହୋଇଲା ମଧ ସେ ଦ୍ୱିଜ ରୂପରେ
ସୁଶୁଭ୍ର ମଣ୍ଡଳ ରଚି ସେ ବେଦ ଧାମରେ ।
କୃଷ୍ଣ ଶୁକ୍ଳ ଭେଦେ କ୍ଷୟ ବୃଦ୍ଧି ସୋମଙ୍କର
ହେବାରୁ ବିଶ୍ୱେ ଅନ୍ଧାର ହୋଇଲା ଗୋଚର
ପ୍ରାଚେତସ ଦକ୍ଷ ଜାଣି ତାଙ୍କ ରୂପ ଗୁଣ
ସପ୍ତବିଂଶ କନ୍ୟା ତାଙ୍କୁ କଲେ ସମର୍ପଣ ।
ଅତି ସୁନ୍ଦରୀ ସମସ୍ତେ ବୀଣାଜିଣା ବାଣୀ
କାମ ଶରାସନ ସମ ଭ୍ରୁଲତାର ଠାଣି ।
ସେ କନ୍ୟାମାନେ ଚନ୍ଦ୍ରଙ୍କ ସବୁଦିଗେ ରହି
ଶତସହସ୍ର ଗୁଣରେ ତାଙ୍କୁ ଦେଲେ ମୋହି

ବିଷ୍ଣୁଧାୟୀ ଶିତକର ତପକଲେ ପରେ
ଅତି ପ୍ରୀତ ହେଲେ ହରି ତାଙ୍କ ତପସ୍ୟାରେ
ପ୍ରକଟ ହୋଇ ଆଗରେ କହିଲେ ବଚନ
ହେ ସୋମ ଯା ଇଚ୍ଛା ବରମୋହଠାରୁ ଘେନ
ଇନ୍ଦ୍ର ଲୋକକରେ ସମ୍ମାନ ବଢ଼ିବ ମୋହର
ଯେପରି ହେ ପ୍ରଭୁ ମୋତେ ଦିଅ ଏହି ବର ।
ତାପରେ କହିଲେ ହରି ଶୁଣ ଓଷଧୀଶ
ବ୍ରହ୍ମାଦି ଚାରି ପ୍ରକାରେ ଯେତେକ ତ୍ରିଦଶ ।
ରାଜସୂୟ ଯାଗେ ସର୍ବେ ଯାଇ ମୋର ଘରେ
ହୋଇବେ ରୁଣ୍ଡ ଦେଖିବ ତୁମ୍ଭେ ପ୍ରତ୍ୟକ୍ଷରେ
ନିଜେ ରାକ୍ଷସ ପାଳକ ଦେବ ଶୂଳଧର
ରକ୍ଷକ ରୂପେ କରିବେ ରକ୍ଷା ସେ ଯାଗର ।
କହି ଏହା ରାଜସୂୟ ଯଜ୍ଞ କଲେ ହରି
ସେ ଯାଗରେ ହୋତା ହେଲେ ଅତି ତପଚାରୀ
ଅଧ୍ୱଜ ହୋଇଲେ ଗୁରୁ ବିଧାତା ଉଦ୍‌ଗାତା
ବ୍ରହ୍ମା ଉପଦେଷ୍ଟା ଥିଲେ ସ୍ୱୟଂ ବିଶ୍ୱପିତା ।
ସମସ୍ତ ଦେବତା ଥିଲେ ସଦସ୍ୟ ଯାଗର
ଏ ବିଧିରେ ହେଲା ଯାଗ ଭୀଷ୍ମ ମନେକର ।
ବସୁଗଣ ସହ ବିଶ୍ୱଦେବ ଥିଲେ ଯେତେ
ଏ ଯାଗରେ ହୋଇଥିଲେ ଅଧ୍ୱଜ ସମସ୍ତେ ।
ଋତ୍ୱିଜମାନଙ୍କୁ ଯାହା ମିଳିଲା ଦକ୍ଷିଣା
ତାହା ଅଟେ ତ୍ରିଲୋକ ଭୀଷ୍ମ ମହାମନା ।
ଏ ଯାଗ ସମ୍ମାନ ଲାଭ ହେଲା ସୋମଙ୍କର
ଦୁଷ୍ପ୍ରାପ୍ୟ ଐଶ୍ୱର୍ଯ୍ୟ ମଧ ହୋଇଲା ତାଙ୍କର ।
ତାଫଳେ ହୋଇଲେ ଶଶି ସପ୍ତଲୋକସାଇଁ
ଏହି କଥାରେ ସଂଶୟ ଭୀଷ୍ମ କିଛିନାହିଁ ।
ଦିନେ ସୋମ ଗଲେ ଉଦ୍ୟାନକୁ ଭ୍ରମଣରେ
ପୁଷ୍ପ ବିଭୂଷିତା ଯୋଷା ଦେଖିଲେ ସେଠାରେ
ପୃଥଳ ନିତମ୍ବ ତାର ଉରଜ ସୁନ୍ଦର
ହେମାଙ୍ଗୀ ଅଙ୍ଗରେ ଥିଲା କୁସୁମ ସଂଭାର ।
ଭ୍ରୁଲତା ତାହାର କିବା କାମ ଶରାସନ
ମୃଗାଙ୍ଗନା ସମାତାର ଚଞ୍ଚଳ ନୟନ ।
ସେ ବାଳା ଅଟଇ ବୃହସ୍ପତିଙ୍କ ରମଣୀ
ତ୍ରିପୁର ସୁନ୍ଦରୀଙ୍କର ସେହି ଶିରେମଣି ।
ଶୁଣ ଭୀଷ୍ମ ତାରାନାମ ଅଟେ ସେ ବାମାର
ଉଦ୍ୟାନରେ ହେଲା ସୋମ ନୟନ ଗୋଚର

ଦେଖି ତାକୁ କାମେ ସୋମ ହୋଇଣ ବିବଶ
ଏକାନ୍ତ ସ୍ଥାନକୁ ନେଲେ ଧରି ତାର କେଶ
ତାରା ମଧ୍ୟ ଚନ୍ଦ୍ରଙ୍କର ସୌନ୍ଦର୍ଯ୍ୟ ଦର୍ଶନେ
କାମାତୁରା ହୋଇ ରହିଥିଲା ମନେମନେ ।
ତେଣୁ ସୋମଙ୍କ କାର୍ଯ୍ୟକୁ ନ କରି ବାରଣ
ମନ ଆନନ୍ଦରେ ଯାଚିଦେଲା ସେ ରମଣ ।
ତା ରତିରସରେ ମୁଗ୍ଧ ହୋଇ ନିଶିକର
ନଛାଡ଼ି ତାରାକୁ ଘେନି ଗଲେ ସଙ୍ଗତର ।
ସ୍ୱପୁରେ ତାରା ସଙ୍ଗରେ ଆନନ୍ଦରେ ଗଲେ
ଚିରକାଳ ତାକୁ ପତ୍ନୀ ରୂପେ ଭୋଗକଲେ ।
ସବୁବେଳେ ଘରେ ରଖି ତାରା ସଙ୍ଗେ ମାତି
ତଥାପି ଆସିଲା ନାହିଁ ଚନ୍ଦ୍ରଙ୍କ ତୃପତି ।
ରହିଲେ ଚନ୍ଦ୍ର ତାରାରେ ହୋଇ ଅନୁରକ୍ତ
ତାରାର ବିରହେ ଗୁରୁ ଏଣେ ହେଲେ ବ୍ୟସ୍ତ
ନିରବଧି ଧାୟି ମନେ ରୂପ ତାରାଙ୍କର
ଦେବଗୁରୁ ଅତିଶୟ ହୋଇଲେ କାତର ।
ବିରହ ଅଗ୍ନିରେ ନିତି ହୋଇ ସନ୍ତାପିତ
ତଥାପି ନକଲେ କିଛି ଚନ୍ଦ୍ରଙ୍କ ଅନିଷ୍ଟ ।
ମନ୍ତ୍ର ଯନ୍ତ୍ର ମାରଣାଦି କର୍ମ ଅଭିଚାର
ଚନ୍ଦ୍ରପତି ଦେବଗୁରୁ ନକରି ପ୍ରଚାର ।
ତାର ପ୍ରତି କ୍ରୋଧ ହୋଇ ଦେଲେ ନାହିଁ ଶାପ
ବିରହରେ ଦୁଃଖ କିନ୍ତୁ ହୋଇଲା ଅମାପ ।
ଶେଷରେ କାମବାଣରେ ହୋଇଣ ଆହତ
ନିଜେ ଯାଇ ଚନ୍ଦ୍ର ପାଶେ ହେଲେ ଉପଗତ
କହିଲେ ଫେରାଇ ଦିଅ କାମିନୀକୁ ମୋର
ଗୁରୁ ବାକ୍ୟ ନ ପଶିଲା କାନରେ ତାଙ୍କର ।
ତାରାଠାରୁ ଶ୍ରେଷ୍ଠ ରତିରସ ଥିଲେ ପାଇ
ତେଣୁ ତାହାଙ୍କୁ ସେ ଆଉ ଫେରାଇଲେ ନାହିଁ
ଜାଣି ତାହା ଚନ୍ଦ୍ର ପାଶେ ଆସିଲେ ଶଙ୍କର
କହିଲେ ଫେରାଇ ଦିଅ ଭାର୍ଯ୍ୟା ଗୁରୁଙ୍କର ।
ଚତୁର୍ମୁଖ ବ୍ରହ୍ମା ଆସି ବହୁତ କହିଲେ
ସାଧ୍ୟ ଋଷିଙ୍କର ମଧ୍ୟ କଥା ନ ରଖିଲେ
ଫେରାଇବାକୁ କହିଲେ ସବୁ ନରପାଳ
ଔଷଧୀଶ ନ ରଖିଲେ ବଚନ କାହାର ।
ଦେଖି ତାହା ଅତି କ୍ରୋଧ ହେଲେ ମହେଶ୍ୱର
ବାମଦେବ ନାମ ଯାର ସୃଷ୍ଟିରେ ପ୍ରଚାର ।
ରୁଦ୍ରଗଣଙ୍କେ ଯାହାଙ୍କ ପାଦ ସୁସେବିତ
ପୁରନ୍ଦରେ ଯେହୁ ସଦା ହୁଅନ୍ତି ଅର୍ଚିତ ।
ସ୍ନେହ ବୃହସ୍ପତୀଙ୍କର ଧରି ହୃଦୟରେ
ପିନାକପାଣି ସ୍ୱଗଣ ଧରି ସଙ୍ଗତରେ ।
ଉଠିଲେ କ୍ରୋଧରେ କରେ ଧରି ଧନୁଃଶର
ଶିଷ୍ୟଗଣ ଥିଲେ ମଧ୍ୟ ତାହାଙ୍କ ସଙ୍ଗର ।
ସିଦ୍ଧଙ୍କେ ସେବିତ ହୋଇ ଗମିଲେ ମୁରାରି
ଚନ୍ଦ୍ରଙ୍କ ସଙ୍ଗରେ ଘୋର ଯୁଦ୍ଧ ଇଚ୍ଛାକରି ।
ସେକାଳେ ଶିବଙ୍କ ମୁଖୁ ତେଜ ହେଲା ଜାତ
ତୃତୀୟ ନେତ୍ରରୁ ଅଗ୍ନି ହୋଇଲା ସଂଜାତ ।
ତେବେ ରୁଦ୍ରଙ୍କର ରୂପ ଦିଶିଲା ଭୀଷଣ
ତଟସ୍ଥ ହୋଇଲେ ତାହା ଦେଖି ଦେବଗଣ
କାର୍ତ୍ତିକ ଗଣେଶ ମଧ୍ୟ ଥିଲେ ସଙ୍ଗତରେ
ପ୍ରଶଂସିତ ବଳ ଯାର ଅଟେ ତ୍ରିଲୋକରେ ।
ଏ ଯୁଦ୍ଧରେ କ୍ଷୟହେବ ଜାଣି ତିନିପୁର
ପିତାମହ ହୋଇଗଲେ ଅତ୍ୟନ୍ତ କାତର ।
ଭୟଙ୍କର ଯୁଦ୍ଧ ଭୀଷ୍ମ ହେଉଥିଲା ଯହିଁ
ଦେବ ସହ ବ୍ରହ୍ମା ପହଞ୍ଚିଲେ ଯାଇ ତହିଁ ।
ବହୁତ ଭାବରେ ବ୍ରହ୍ମା ସମସ୍ତଙ୍କୁ କହି
କଉଶଳେ ସେ ଯୁଦ୍ଧରୁ ଦେଲେ ନିବର୍ତ୍ତାଇ ।
ଚନ୍ଦ୍ରଙ୍କୁ ତାପରେ ବ୍ରହ୍ମା ଡାକି ନିଜ ପାଶେ
କହିଲେ ବତାଇ ଏହା ସୁକୋମଳ ଭାଷେ ।
ଅତି ନିନ୍ଦ୍ୟ ଅଟେ ତାହା କଲ ଯେଉଁ କର୍ମ
ଅତି କୁତ୍ସିତ ଆଚର ଅଟେ ଅଧରମ ।
ପରସ୍ତ୍ରୀ ହରଣ ପାପ ଅଟେ ଅତି ଘୋର
ଏ ମୋର ବଚନ ସୋମ ହୃଦୟରେ ଧର
ତୁମ୍ଭ କର୍ମରୁ ଏ ଘୋର ଭୟ ଉପୁଜିଲା
ଯାହା ଘେନି ଏ ଯୁଦ୍ଧର ସଙ୍ଘଟନ ହେଲା ।
ଏ ଦୋଷରୁ ତୁମେ ପାପ ଗ୍ରହେ ଗଣା ହେବ
ଅଳଙ୍କାର ପରି ପାପ ହୃଦରେ ବହିବ ।
ହେ ଶଶାଙ୍କ ତୁମେ ରକ୍ଷା କରି ମୋରବାଣୀ
ଫେରାଇ ଦିଅ ଏକ୍ଷଣି ଗୁରୁଙ୍କ ରମଣୀ ।
ହିମ ଅଂଶୁମାଳୀ ଶୁଣି ବାଣୀ ବ୍ରହ୍ମାଙ୍କର
ମନେ ମନେ ଗୁଣି ତାହା କରି ଅଙ୍ଗୀକାର ।
ଯୁଦ୍ଧରୁ ଓହରି ନିଜ ମନ୍ଦିରକୁ ଗଲେ
ତାରା ରମଣୀକୁ ଗୁରୁ କରେ ସମର୍ପିଲେ ।

ତାରାଙ୍କୁ ଲଭିଣ ଗୁରୁ ହୋଇଲେ ପ୍ରସନ୍ନ
ସ୍ୱଗୃହେ ଗଲେ ସ୍ୱବାସେ ଗଲେ ରୁଦ୍ରଗଣ ।
ରୁଦ୍ରଙ୍କର ରୁଦ୍ରରୂପ ପ୍ରଶାନ୍ତି ଲଭିଲା
ଚତୁର୍ମୁଖଙ୍କ ପ୍ରଶଂସା ଏଥି ପ୍ରକାଶିଲା ।
ତାପରେ ଅତୀତ ହେଲା ଗୋଟିଏ ବର୍ଷର
ସୁନ୍ଦରୀ ତାରାଙ୍କ ବୃଦ୍ଧି ହେଲା ଗର୍ଭଭାର ।
ସୁତ ଏକ ସେ ଗର୍ଭରୁ ହୋଇଲା ଜନମ
ତା ତେଜ ଥିଲା ଦ୍ୱାଦଶ ଆଦିତ୍ୟର ସମ
ପିନ୍ଧିଥିଲା ସେ ବାଳକ ଦିବ୍ୟ ପୀତାମ୍ବର
ତ୍ରିପୁରେ ନଥିଲେ କେହି ତା ସମ ସୁନ୍ଦର
ସ୍ୱର୍ଗୀୟ ଭୂଷଣେ ଦେହ ଥିଲା ବିଭୂଷିତ
ଅଙ୍ଗକାନ୍ତି ଥିଲା ଶତ ଶଶାଙ୍କ ସମିତ ।
ବାଳକର ଥିଲା ସବୁ ଅର୍ଥ ଶାସ୍ତ୍ରଜ୍ଞାନ
ତିନିପୁରେ ନଥିଲେ କେ ତା ସମ ବିଦ୍ୱାନ
ରତିଶାସ୍ତ୍ର ପ୍ରବର୍ତ୍ତକ ଅଟେ ସେ କୁମର
ରାଜବୈଦ୍ୟ-ରାଜପୁତ୍ର ନାମ ତାହାଙ୍କର
ପୁଣି ନାମ ବୁଧ ଯେଣୁ ସୁତ ସୋମଙ୍କର
ଏ ଗୁଣରୁ ହେଲେ ସର୍ବ ଆନନ୍ଦର ଘର ।
ତାଙ୍କ ଜନ୍ମ ପରେ ବ୍ରହ୍ମା ଋଷିଙ୍କ ସଙ୍ଗରେ
ଉପସ୍ଥିତ ହେଲେ ତେବେ ଆସି ଗୁରୁଘରେ
ତାପରେ ବୁଧଙ୍କ ଶିରେ ଅଭିଷେକ କଲେ
ଗ୍ରହଙ୍କ ମଧ୍ୟଭାଗରେ ସ୍ଥାନ ତାଙ୍କୁ ଦେଲେ
ସେ ସ୍ଥାନେ ଘଟିଲା ଯେଉଁ ଆଶ୍ଚର୍ଯ୍ୟ ଘଟଣା
ବିଚାରିଲେ ତାହା ଭାଷ୍ମ ବୁଦ୍ଧି ହୁଏ ବଣା ।
ସେ ସ୍ଥାନରୁ ତେବେ ବୁଧ ସର୍ବ ଅଜ୍ଞାତରେ
ଗଲେ କାହିଁ ତାହା ନ ଆସିଲା କା ଗୋଚରେ
ଅନ୍ତର୍ଦ୍ଧାନ ହୋଇ ବୁଧ ସେଠାବରୁ ଗଲେ
ଇଳାଙ୍କ ଗର୍ଭରୁ ଏକ ପୁତ୍ର ଜାତକଲେ ।
ମହାତେଜସ୍କର ପୁଣି ଅତୀବ ସୁନ୍ଦର
ପରେ ଶତ ଅଶ୍ୱମେଧ କଲା ସେ କୁମର ।
ପୁରରବା ନାମ ତାର ସର୍ବେ ସୁପୂଜିତ
ସଂଶୟ ନମଣ ଏଥି ଶାନ୍ତନୁଙ୍କ ସୁତ ।
ପରେ ପୁରୁରବା ହିମବନ୍ତ ଶୃଙ୍ଗେ ଯାଇ
ଆଚରିଲେ ତପ ବ୍ରହ୍ମା ପଦକଞ୍ଜ ଧ୍ୟାୟୀ ।
ସନ୍ତୋଷ ହୋଇ ସାବିତ୍ରୀ ପତି ତପସ୍ୟାରେ
ଐଶ୍ୱର୍ଯ୍ୟ ସହିତ ରାଜା କଲେ ପୃଥିବୀରେ ।
ସପ୍ତଦ୍ୱୀପ ସ୍ୱାମୀ ପୁରୁରବା ନରବର
ଦେଖିଲେ ଦିନେ ସସୈନ୍ୟେ କେଶିନି ଅସୁର
ସୁନ୍ଦରୀ ରମଣୀ ଏକ ରଥେ ବନ୍ଦୀକରି
ଯାଉଥିଲା, କାନ୍ଦେ ନାରୀ ଯେସନେ କୁରରୀ
ଅସୁର ମୋହିତ ହୋଇ ଉର୍ବଶୀ ରୂପରେ
ଭାରିଯା କରିବା ପାଇଁ ନେଉଥିଲା ଘରେ ।
ପୁରୁରବା ଦେଖି ତାହା ତାଙ୍କୁ ଉଦ୍ଧରିଲେ
ତ ସୌନ୍ଦର୍ଯ୍ୟ ଦେଖିନିଜେ ମୋହିତ ହୋଇଲେ
ବିଧିରେ ନୃପତା ପାଣି କରିଣ ଗ୍ରହଣ
ତାହାଠାରୁ କଲେ ଆଠ ସୁତ ଉତପନ୍ନ ।
କହିବି ତାହାଙ୍କ ନାମ ଶାନ୍ତନୁ କୁମର
ପ୍ରଥମ ଆୟୁ, ଦୃତାୟୁ ଦ୍ୱିତୀୟ କୁମର ।
ତୃତୀୟ ନାମ ବୈଶ୍ୟ ୟୁ ବଳାୟୂ ଚତୁର୍ଥ
ପଞ୍ଚମରେ ଧୃତିମାନ ବସୁ ଷଷ୍ଠସୁତ ।
ଦିବ୍ୟଜଆୟୁ ସପ୍ତମ ଶତାୟୁ ଅଷ୍ଟମ
ତେଜ ଓଜ ବଳବୀର୍ଯ୍ୟେ ସମସ୍ତେ ଉତ୍ତମ ।
ଜନମ ହୋଇଲେ ପାଞ୍ଚସୁତ ଆୟୁଙ୍କର
ନହୁଷ ପ୍ରଥମ ବୃଦ୍ଧଧର୍ମ ତଦପର ।
ରଜି, ଦଣ୍ଡ ଓ ବିଶାଖ ହୋଇଲେ କ୍ରମରେ
ଗଣାଯାନ୍ତି ସର୍ବେ ମହାରଥୀଙ୍କ ମଧ୍ୟରେ ।
ଜନମ ହୋଇଲେ ଶହେ ସୁତ ରାଜିଙ୍କର
ରାଜେୟ ନାମରେ ଖ୍ୟାତି ଜଗତେ ତାଙ୍କର
ନିଷ୍ପାପ ରାଜେୟ ହରି ଆରାଧନା କଲେ
ତପସ୍ୟାରେ ଲକ୍ଷ୍ମୀପତି ସନ୍ତୁଷ୍ଟ ହୋଇଲେ
ସମ୍ମୁଖକୁ ଆସି ନୃପତିଙ୍କୁ ଦେଲେ ବର
ହାରିଗଲେ ରଣେ ତାଙ୍କୁ ଦୈତ୍ୟସୁରନର
ଦେବାସୁର ମଧ୍ୟେ ପରେ ହୋଇଥିଲା ରଣ
ତିନିଶ ବର୍ଷର ବ୍ୟାପୀ ବୋଲି ମନେ ଘେନ
ଏକପକ୍ଷେ ପ୍ରହଲାଦ ଅସୁର ଈଶ୍ୱର
ଅନ୍ୟପକ୍ଷେ ରହିଥିଲେ ଶଚୀଦେବୀ ବର ।
ସମରେ କିଏ କାହାକୁ ନୁହନ୍ତି ନିଉନ
ତେଣୁ ଜୟଲକ୍ଷ୍ମୀ କାର ନୋହିଲେ ଅଧୀନ
ତେବେ ଦେବତା ଅସୁର ସ୍ୱ ସୁବିଧା ବଶେ
ପରବେଶ ହେଲେ ଯାଇ ପିତାମହ ପାଶେ ।
ପଚାରିଲେ ଦୟାବହି କହ ପିତାମହ
ଏହି ଆହବେ ହୋଇବ କାହାର ବିଜୟ ।

ବିଚାରି କହିଲେ ବ୍ରହ୍ମା ଏ ମହାସମରେ
ରାଜି ହୋଇବେ ବିଜୟୀ ଜାଣ ସୁରାସୁରେ ।
ବ୍ରହ୍ମାଙ୍କ ବଚନ ଶୁଣି ଦୈତ୍ୟଗଣ ଗଲେ
ରାଜିଙ୍କର ସମ୍ମୁଖରେ ପରବେଶ ହେଲେ ।
କହିଲେ ଆପଣ ଆମ୍ଭ ପକ୍ଷ ସମର୍ଥନ
କଲେ ଜାଣିବୁ ଆମ୍ଭର ହୋଇବ କଲ୍ୟାଣ ।
କହିଲେ ରାଜି ଶୁଣିଣ ଦୈତ୍ୟଙ୍କର ବାଣୀ
ସହାୟ ହେବି ମୁଁ ଯେବେ ହେବି ତୁମ ସ୍ୱାମୀ
ଅସୁରଗଣ ତାପରେ କିଛି ନ କହିଲେ
ସୁରେ ତାହାଙ୍କ କଥାରେ ସମ୍ମତ ହୋଇଲେ
ବନ୍ଧ୍ୟା ହୋଇଥିଲା ବଜ୍ର ଯାଙ୍କ ବିନାଶରେ
ସେ ସର୍ବେ ହୋଇଲେ ନାଶ ରାଜିଙ୍କର ଶରେ
ପୁତ୍ରତ୍ୱକୁ ବରିନେଲେ ଇନ୍ଦ୍ର ତାହାଙ୍କର
ରାଜିଙ୍କ କର୍ମରେ ହୋଇ ଅତି ହର୍ଷଭର ।
ରାଜିମଧ ପିତାପଣେ ଇନ୍ଦ୍ରଙ୍କୁ ତାପରେ
ସର୍ବସ୍ୱ ଦେଇ ଗମିଲେ ତପେ ବନଘୋର
ରାଜିଙ୍କର ପୁତ୍ର ପରେ ପାଇ ସେ ଖବର
ବଳରେ ଛଡ଼ାଇ ନେଲା ଭୂତି ଇନ୍ଦ୍ରଙ୍କର ।
ଥିଲା ବେଶୀ ଯେଣୁ ତାହାଙ୍କର ତପବଳ
ଇନ୍ଦ୍ରଙ୍କର ଯାଗ ଭାଗ ହୋଇଲା ତାଙ୍କର ।
ରାଜି ସୁତ ଉତ୍ପୀଡ଼ନେ ଶଚୀଙ୍କ ରମଣ
ରାଜ୍ୟଭ୍ରଷ୍ଟ ହୋଇ ଭୀଷ୍ମ ହୋଇଲେ ଶ୍ରୀହୀନ
ତେଣୁ ଇନ୍ଦ୍ର ଅତି ଦୁଃଖେ ଗୁରୁପାଶେ ଯାଇ
କହିଲେ ରାଜିସୁତଙ୍କ କଥା ଦୀନ ହୋଇ ।
ମୋହର ମିନତି ଶୁଣ ଆହେ ସୁରଗୁରୁ
ରାଜ୍ୟ ଶିରୀ ଯଜ୍ଞଭାଗ ଗଲା ମୋହଠାରୁ ।
ପୀଡ଼ିତ ମୁଁ ଆହେ ଗୁରୁ ହୋଇଅଛି ଅତି
ଭାଳେ ଆପଣଙ୍କ ଦ୍ୱାରା ହେବ ରାଜ୍ୟପ୍ରାପ୍ତି ।
ସେଥିପାଇଁ ଯାହା ରତ୍ନ କରିବେ ଆପଣ
ଆପଣଙ୍କ ଚରଣେ ମୋ ଏହି ନିବେଦନ,
ଇନ୍ଦ୍ରଙ୍କର ପ୍ରାର୍ଥନାରେ ଗୁରୁ ହୋଇ ପ୍ରୀତ
କଲେ ତାଙ୍କୁ ମନ୍ତ୍ରବଳେ ବଳରେ ଦୀପିତ ।
ବୃହସ୍ପତୀ ମଧ ଇନ୍ଦ୍ର ଶୁଭ ମନେ ଚିନ୍ତି
କଲେ ତାହାଙ୍କ ନିମନ୍ତେ ହୋମେ ଗ୍ରହ ଶାନ୍ତି
ସେ ଯାଗର ନାମ ଗୋଟି ଅଟଇ ପୌଷ୍ଟିକ
ମୋର କହିବାରୁ ଘେନ ବୀରଙ୍କ ନାୟକ ।

ଧର୍ମଜ୍ଞାତା ବୃହସ୍ପତି ତଦପରେ ଗଲେ
ମୋହନ ମନ୍ତ୍ରରେ ରାଜିସୁତଙ୍କୁ ମୋହିଲେ ।
ଦେବଗୁରୁ ଅଟନ୍ତି ତ ବୁଦ୍ଧିର ଆକର
ତିନିବେଦରୁ ତାହାଙ୍କୁ ସେ କଲେ ଅନ୍ତର
ସବୁ ଧର୍ମ ଭ୍ରଷ୍ଟ ତାଙ୍କୁ ଜାଣି ଶଚୀପତି
ବଜ୍ରେ ଭୋଗ କରାଇଲେ ମରଣ ସମ୍ପତ୍ତି ।
ନହୁଷ ନୃପତିଙ୍କର ଯେଉଁ ସାତପୁଅ
ତାଙ୍କ କଥା ଶୁଣି ଏବେ ଶାନ୍ତନୁତନୟ ।
ପରମ ଧାର୍ମିକ ସର୍ବେ ଅଟନ୍ତି ଉତ୍ତମ
ତାଙ୍କ ନାମଚୟ ଏବେ କରିବି କୀର୍ତ୍ତନ ।
ଯତି, ଯଯାତି, ଉତ୍ତର ଆବର ଶର୍ଯ୍ୟାତି
ପର, ଅଯାତି, ନିୟତି ସର୍ବେ ବୀର ଅତି ।
ଏ ସାତେ ଅଟନ୍ତି ବଂଶବର୍ଦ୍ଧନ କାରଣ
ଖ୍ୟାତି ହେଲେବିସେ ନର ଯୋଗୀରେ ଗଣନ
ପିଲାବେଳୁ ସେ କୁମର ଯୋଗୀ ହୋଇଗଲା
ଶାସନଭାର ଯଯାତି ଶିରେ ଲଦାହେଲା ।
ଧାର୍ମିକପଣେ ଯଯାତି ଥିଲେ ତାଙ୍କପରି
ପୃଥିବୀ ହୋଇଛି ଧନ୍ୟ ଯାର କୀର୍ତ୍ତି ଧରି ।
ଧର୍ମର ରକ୍ଷକ ଥିଲେ ସେହି ନରବର
ନିଃସଂଶୟ ଅଟେ ଏହା ଶାନ୍ତନୁକୁମର ।
ବୃଷପର୍ବା ନାମେ ଥିଲେ ଅସୁର ଈଶ୍ୱର
ଶର୍ମିଷ୍ଠା ତାହାଙ୍କ କନ୍ୟା ପତ୍ନୀ ଯଯାତିର ।
ଶୁକ୍ରଙ୍କ ଦୁହିତା ନାମ ଅଟେ ଦେବଯାନୀ
ସେଥିଲେ ଯଯାତିଙ୍କର ପ୍ରଥମ ରମଣୀ ।
ପରମା ସୁବ୍ରତା ସେହି ଶୁକ୍ରଙ୍କ କୁମାରୀ
ତୁର୍ବସୁ ଯଦୁଙ୍କର ସେ ଥିଲେ ଗର୍ଭଧାରୀ ।
ଦ୍ରୁହମନ୍ୟ ପୁରୁ ପୁଣି ଭରତ ନାମରେ
ତିନୋଟି ପୁତ୍ର ଜନ୍ମିଲେ ଶର୍ମିଷ୍ଠା ଉଦରେ
ଏ ମଧ୍ୟରେ ଯଦୁ, ପୁରୁ, ଭରତ ନୃପତି
ବଂଶବୃଦ୍ଧିକର ନାମେ ଗଣନା ହୁଅନ୍ତି ।
ଏବେ ପୁରୁବଂଶ କଥା କହିବି ବିସ୍ତାରି
ଯେଉଁମାନେ ସେ ବଂଶରେ ଥିଲେ ଅବତରି
ଯଦୁବୀର୍ଯ୍ୟ ଜାତ ସର୍ବେ ହୋଇଲେ ଯାଦବ
ସେ ବଂଶେ ହୋଇଲେ ଜନ୍ମ ରାମ ବାସୁଦେବ
ପୃଥ୍ୱୀଭାରା ନିବାରଣେ ପାଣ୍ଡବ ରକ୍ଷଣେ
ତାହାଙ୍କର ଜନ୍ମ ହୋଇଥିଲା ଏ ଭୂବନେ ।

ଯଦୁଙ୍କର ଜାତହେଲେ ଯେଉଁ ପାଞ୍ଚସୁତ
ତାହାଙ୍କ ନାମ ଏପରି ହୋଇଛି କିର୍ତ୍ତୀତ
ସହସ୍ରାଜିତ ଯଦୁଙ୍କ ପ୍ରଥମ ତନୟ
କାଷ୍ଟା, ନୀଳ, ଜିତ, ରଘୁ କ୍ରମେ ଧରିନିଅ
ସସ୍ରାଜିତ ସୁତନାମ ଅଟେ ଶତାଜିତ
ପିତୃକ୍ରମେ ରାଜ୍ୟହେଲା ତାହାଙ୍କ ଶାସିତ
ହେଲେ ଶତାଜିତଙ୍କର ତିନୋଟି କୁମର
ହୈହୟ, ହୟ ଯେ ତାଳହୟଟି ଆବର
ହୈହୟଙ୍କ ସବୁ ସୁତ ମାନଙ୍କ ମଧରେ
ଧର୍ମନେତ୍ର ଖ୍ୟାତ ଥିଲେ ଧାର୍ମିକ ପଣରେ
ଧର୍ମନେତ୍ରଙ୍କର ସୁତ କୁନ୍ତ ନାମ ତାର
ସଂହିତ କୁନ୍ତଙ୍କ ସୁତ ଶୁଣ କୁରୁବୀର
ସଂହିତଙ୍କର ତନୟ ନାମ ମହିଷ୍ମାନ
ନୃପତିମାନଙ୍କେ ସେହି ଅଟନ୍ତି ଉତ୍ତମ
ମହିଷ୍ମାନଙ୍କ ତନୟ ନାମ ଭଦ୍ରସେନ
ପ୍ରତାପରେ ଭବେ ତାଙ୍କୁ କେ ନୁହେ ସମାନ
ବାରାଣସୀ ରାଜ୍ୟର ସେ ଥିଲେ ନରପତି
ଯା କଥା କହିଛି ଥରେ ଶାନ୍ତନୁ ସନ୍ତତି
ଭଦ୍ରସେନଙ୍କ ଆତ୍ମଜ ଦୁର୍ମଦ ତା ନାମ
ପ୍ରସଂଶ୍ୟ ତାହାଙ୍କ ଧର୍ମବଳ ପରାକ୍ରମ
ଭୀମଧନ ନାମେ ହେଲେ ତାହାଙ୍କକୁମର
ବଳରେ କେ ସମକକ୍ଷ ନୁହଇ ତାଙ୍କର
ଭୀମଧନଙ୍କର ହେଲେ ଚାରିଗୋଟି ସୁତ
ତାହାଙ୍କର ବୀରପଣ ଲୋକେ ଅବିଶ୍ରୁତ
କୃତଅଗ୍ନି କୃତବୀର୍ଯ୍ୟ ଏ ଦୁଇ କୁମର
କୃତଧର୍ମା କୃତୀଜ ଏ ଚାରି ସହୋଦର
ଅର୍ଜ୍ଜୁନ ନାମରେ ଥିଲେ କୃତବୀର୍ଯ୍ୟସୁତ
ସସ୍ରାର୍ଜ୍ଜୁନ ନାମେ ବିଶ୍ୱେ ହୋଇଲେ ବିଖ୍ୟାତ
ଭୋଗକଲେ ସେହି ନୃପ ସପ୍ତଦ୍ୱୀପ ମହୀ
ହଜାରେ ବର୍ଷ ତପସ୍ୟା କଲେ ବନେ ରହି
କୀର୍ତ୍ତିବୀର୍ଯ୍ୟ ନାମା ସେହି ସହସ୍ର ଅର୍ଜ୍ଜୁନ
ଅତ୍ରୀପୁତ୍ରଦତ୍ତେ ତପେ ବସି କଲେ ଧ୍ୟାନ
ଦତ୍ତ ଅଟନ୍ତି ପୁରୁଷ ମାନଙ୍କରେ ଶ୍ରେଷ୍ଠ
ଚାରିବର ଦେଲେ ତପେ ହୋଇ ଅତି ତୁଷ୍ଟ
ସସ୍ରବାହୁ ରାଜାଶ୍ରେଷ୍ଠ ଏ ପ୍ରଥମ ବର
ଦ୍ୱିତୀୟ ବର ଅଧର୍ମୀ ଭୟ ହେବ ଦୂର
ଯୁଦ୍ଧେ ଜିଣି ଧର୍ମେ ଧରା କରିବେ ପାଳନ
ନପାଇବେ ଶତ୍ରୁଠାରୁ ଯୁଦ୍ଧେ ଅପମାନ
ବଳକର ଶତ୍ରୁ ଯେତେ ହୋଇବେ ନିଧନ
ଏହି ଚାରିବର ପାଇଥିଲେ ସସ୍ରାର୍ଜ୍ଜୁନ
ଧନୁଧରି କାର୍ତ୍ତବୀର୍ଯ୍ୟ ପାଞ୍ଚଗୋଟି ଶରେ
ରାବଣକୁ ଜୟକଲେ ସୈନ୍ୟ ସହିତରେ
ସାମାନ୍ୟ ଯୁଦ୍ଧରେ ରାବଣକୁ ଜୟକରି
ଆଣିଥିଲେ କାର୍ତ୍ତୀବୀର୍ଯ୍ୟ ମାହେଶ୍ୱତୀପୁରୀ
କହନ୍ତି ପୁଲସ୍ତ୍ୟ ଶୁଣ ଆହେ କୁରୁବୀର
ସେହିକଥା ପରେ ମୋରେ ହେଇଲା ଗୋଚର
ସହସ୍ରାର୍ଜ୍ଜୁନ ସମ୍ମୁଖେ ତେବେ ମୁହିଁ ଗଲି
ବହୁପ୍ରକାରେ ଅର୍ଜ୍ଜୁନେ ପ୍ରବୋଧନା କଲି
କହିଲି ମୋହର ନାତି ଅଟେ ଏ ରାବଣ
ଛାଡ଼ିଦିଅ ତାକୁ ବାବୁ କଥା ମୋର ମାନ
ମୋ କଥାରେ ସୁପ୍ରସନ୍ନ ହୋଇ ନରପତି
ସେହିକ୍ଷଣି ଦଶାନନେ ବିହିଲା ମୁକତି
ହଜାରେ ବାହୁରେ ତାର ଥିଲେ ଶରାସନ
ଝଙ୍କାର ଶବ୍‌ଦରେ କମ୍ପିଯାଏ ତ୍ରିଭୂବନ
ଯୁଗାନ୍ତରେ ସିନ୍ଧୁସ୍ଥିତ କାଳାନଳ ସମ
ତାହାରଧ୍ୱନୀ ଅଟଇ ଶାନ୍ତନୁ ନନ୍ଦନ
ପର୍ଶୁରାମ କାଳେ ତାର ଭାଙ୍ଗିଲେ ସେ ବଳ
ଯୁଦ୍ଧ ଅଙ୍ଗଣେ ଝପଟି ଧଇଲେ ତା ବାଳ
ସହସ୍ର ବାହୁକୁ ତାର ଛିନ୍ନଭିନ୍ନ କରି
ପରଶୁଘାତରେ ତାର ପ୍ରାଣ ନେଲେହରି
ଏଫଳ ଅଟଇ ଋଷି ବଶିଷ୍ଠ ଶାପର
ଏଫଳ ଫଳିଲା ଯାହା ସ୍ୱକୃତ ପାପର
ଅକାରଣେ ମହର୍ଷିଙ୍କ ଆଶ୍ରମ ପୋଡ଼ିଲା
ସେ ଦୋଷରୁ ବିପ୍ର କରେ ନିଧନ ଲଭିଲା
କହିଥିଲେ ଋଷି ତେବେ ଭାର୍ଗବ ତନୟ
ପର୍ଶୁରାମକରେ ହେବ ତୋହର ବିଳୟ
ବଶିଷ୍ଠଙ୍କ ଶାପକେବେ ହୁଏକି ଅନ୍ୟଥା
ତେଣୁ ତାଙ୍କ ପର୍ଶୁଘାତେ କଟାହେଲା ମଥା
ସହସ୍ରାର୍ଜ୍ଜୁନର ଥିଲେ ଶତେକ କୁମର
ସେମଧରେ ପାଞ୍ଚ ମହାରଥ ମନେକର
ସର୍ବେ ଶସ୍ତ୍ରଧାରୀ ଶୂର ଅତି ବଳବାନ
ଧର୍ମାତ୍ମାପଣେ ନଥିଲେ କେହି ତାଙ୍କସମ

ଶୂରସେନ, ଶୂର, ଧୃଷ୍ଟ କୃଷ୍ଣ ଜୟଧ୍ୱଜ
ତାଳଧ୍ୱଜ ନାମେ ଜୟଧ୍ୱଜର ଆତ୍ମଜ
ସମବଳ ହୋଇ କେହି ନଥିଲେ ତାହାର
ହେଲେ ତାହାଙ୍କର ଭୀଷ୍ମ ଶହେଟି କୁମର
ତାଳଧ୍ୱଜ ନାମେ ମଧ୍ୟ ପ୍ରସିଦ୍ଧ ସେମାନେ
ଏହିକଥା କୁରୁବୀର ରଖିଥିବ ମନେ
ହୈହୟ ନାମରେ ଏହି ପଞ୍ଚକୁଳ ଖ୍ୟାତ
ବାତିହୋତ୍ର, ଭୋଜ, ତୁମ୍ଭ, ଅବନ୍ତୀ, ବିଶ୍ରାନ୍ତ
କୀର୍ତ୍ତିତ ଏମାନେ ତାଳଧ୍ୱଜଙ୍କ ନାମରେ
କୌଣସି ସନ୍ଦେହ ଭୀଷ୍ମ ନମଣ ଏଥିରେ
କୀର୍ତ୍ତିହୋତ୍ର ସୁତ ନାମ ଅଟଇ ଅନନ୍ତ
ସେକାଳରେ ଥିଲା ବିଶ୍ୱେ ସେହି ବଳବନ୍ତ
ଗୋଟିଏ ପୁତ୍ର ତାହାର ତା ନାମ ଦୁର୍ଜୟ
ନଥିଲା କେ ନୃପଯାକୁ ନକରିଛି ଜୟ
ଯେ ବଂଶରେ ଜନ୍ମିଥିଲା ସହସ୍ର ଅର୍ଜ୍ଜୁନ
କରିଥିଲା ପୁତ୍ରସମ ପ୍ରଜାଙ୍କୁ ପାଳନ
ଆସମୁଦ୍ର ପୃଥ୍ୱୀଯେ କରୁଥିଲା ଭୋଗ
ସେ ବଂଶର କୀର୍ତ୍ତୀ ରହିଥିବ ଯୁଗଯୁଗ
ସକାଳୁଉଠି ଯେ ଏହା କରିବ ଗାୟନ
ଦିନୁଦିନ ବୃଦ୍ଧିହୁଏ ତାର ଧନ ଜନ
ନଷ୍ଟହୋଇଥିଲେ ଧନ ପୁଣି ହୁଏ ଲାଭ
ଏ ବଂଶକୀର୍ତ୍ତୀ ଅଟଇ ତ୍ରିଲୋକେଦୁର୍ଲଭ
କରଇଯେହୁ ପ୍ରଥମେ ଏହି ଗୁଣ ଗାନ
ଜଗତରେ କୀର୍ତ୍ତୀତାର ହୁଏ ବହୁଗୁଣ
ବର୍ଣ୍ଣନା ସୋମବଂଶର ଏଥିହେଲା ଶେଷ
ଗୋପୀନାଥ କହେ ଏଥି ଅଛି ବହୁ ଦୋଷ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସମ୍ବାଦେ ସୋମବଂଶ
ପରିଚୟେ ଷଷ୍ଠ ଅଧ୍ୟାୟ ସମାପ୍ତ

❑

## ସପ୍ତମ ଅଧ୍ୟାୟ

### ତ୍ରେଷ୍ଟୁବଂଶ ବିସ୍ତାର ବର୍ଣ୍ଣନା

ପଚାରିଲେ ଭୀଷ୍ମ କହ ହେ ଋଷିପ୍ରବର
ହୋଇଥିଲା କେମ୍ନେ ତ୍ରେଷ୍ଟୁ ବଂଶର ବିସ୍ତାର
କହିଲେ ପୁଲସ୍ତ୍ୟ ଶୁଣ ଭୀଷ୍ମ ବୀର ନାହା
ସ୍ୱତନୁଜା ଜୟନ୍ତୀକୁ ପୂର୍ବେ ଶଚୀନାହା
କହିଥିଲେ ଯାହା ତାହା କରିବି ବର୍ଣ୍ଣନ
ମୋଠାରୁ ସେ କଥା ଏବେ ଧ୍ୟାନ ଦେଇ ଶୁଣ
ଅମରାବତୀରେ ଦିନେ ଦେବପୁରନ୍ଦର
କନ୍ୟାକୁ ପାଶେ ବସାଇ ହୋଇ ଉଜାଗର
କହିଲେ ଶୁଣ ଜୟନ୍ତୀ ମୋହର ବଚନ
ପିତାଆଜ୍ଞା କନ୍ୟା କେବେ ନକରେ ଲଙ୍ଘନ
ଯା କହିବି ତା କରିବୁ ମୋର ହିତପାଇଁ
ଶୁଣି ଜୟନ୍ତୀ କହିଲା ଶିରେ ପାଦଦେଇ
ପିତାଙ୍କ ବାକ୍ୟ ପାଳିବା କର୍ତ୍ତବ୍ୟ କନ୍ୟାର
ଯା କହିବ ଅବଶ୍ୟ ତା କରବି ପିଅର
ଶୁଣି ଇନ୍ଦ୍ର ତାକୁ ନେଇ କାନନକୁ ଗଲେ
ତପ କରୁଥିଲା ବିପ୍ର ତାଙ୍କୁ ଦେଖାଇଲେ
କହିଲେ ଦେଖ ଜୟନ୍ତୀ ଏହି ବିପ୍ରବର
ଅନିଦ୍ରାହୋଇ କରନ୍ତି ତପ ଅତି ଘୋର
ଏହାଙ୍କର ନାମ କାବ୍ୟ ଅତି ବୁଦ୍ଧିବାନ
ରକ୍ଷଗୁରୁ ଯୋଗୁଁ ଦେବଙ୍କର ଭୟ ସ୍ଥାନ
ଅନିନ୍ଦିତ ରୂପସୀ ତୁ ଏତିକି କରିବୁ
ସବୁବେଳେ ଏହି ଦ୍ୱିଜ ପାଖେ ପାଖେ ଥିବୁ
ଯଥାଯୋଗ୍ୟ ଉପଚାରେ ଆରାଧନା କରି
ସାବଧାନେ ଏହାଙ୍କର ଚିତ୍ତ ନେବୁ ହରି
ତୋହର ସେବାରେ ଦ୍ୱିଜ ଯେବେ ହେବେ ତୋଷ
ଦୁହିଁଙ୍କ କାମନା ପୂର୍ଣ୍ଣ ହୋଇବ ଅବଶ୍ୟ
ମୋର ହିତପାଇଁ ଯାଇ ତୁ କର ଯତନ
ଆଜୁଁ ମୁଁ ଏହାଙ୍କୁ ତୋତେ କଲି ସମର୍ପଣ
ଜୟନ୍ତୀ ପିତାଙ୍କର ସେ ବଚନ ଶୁଣିଲା
ଦ୍ୱିଜଙ୍କ ସେବାରେ ମନପ୍ରାଣ ଢ଼ାଳିଦେଲା
ଦେଖିଲା ଜୟନ୍ତୀ ଦ୍ୱିଜ ତପସ୍ୟାନିରତ
ତଳେ ଖୋଳା ହୋଇଥିଲା ବଡ଼ ଏକ ଗାତ
ଗଛରେ ଛନ୍ଦିଣ ପାଦ ସେହି ବିପ୍ରବର
ସେ ଧୂମ୍ରପାନରେ ତପ କରୁଥିଲେ ଘୋର
ସେ ଅଗ୍ନି କୁଣ୍ଡକୁ ଯକ୍ଷ ଜଣେ ଜଗି ଥାଏ
ଶେଷହେଲେ ପୁଣି କାଠ ସେଥିରେ ପକାଏ
ଜୟନ୍ତୀ ତପସ୍ୟା ଦେଖି ଆଶ୍ଚର୍ଯ୍ୟ ହୋଇଲା
ହୃଦେ ଧୈର୍ଯ୍ୟଧରି ତପସ୍ୱୀଙ୍କ ସେବା କଲା
ସେ ସେବାରେ ଥିଲା ପିତୃ ଉଦ୍ଦେଶ୍ୟ ସାଧନ
ପୁଣି ଦୁର୍ବଳ ତପସ୍ୱୀ ଦ୍ୱୀଜଙ୍କ ସେବନ

ହୃଦରେ ରଖି ଜୟନ୍ତୀ ପିତାଙ୍କ ଆଦେଶ
ଯେ ସେବା କଲା ତାଦେଖି ଡ଼ରିଲେ ତ୍ରିଦଶ
ଶୁଣାଇ ପିକଭାଷିଣୀ ମଧୁର ବଚନ
ବେଳଜାଣି ନିତି ଗାଏ ଦ୍ୱିଜଙ୍କ ସ୍ତବନ
ଚର୍ମମାତ୍ରସାର ତାଙ୍କ ଅଙ୍ଗକୁ ସଧୀରେ
ସୁଅବସର ଦେଖିଲେ ଚଳେ ଧୀରେ ଧୀରେ
ତପସ୍ୟାର ଅନୁକୂଳ ଜାଣି ସେବା ତାର
ତପକଲେ ଦ୍ୱିଜ ଗଲା ହଜାରେ ବସର
ଶୁକ୍ରଙ୍କ ତପସ୍ୟା ଦେବ ହୋଇଲା ସଂପୂର୍ଣ୍ଣ
ଯେଉଁଦିନ ଦେଖାଦେଲେ ଶିବ ଭଗବାନ
ସନ୍ତୁଷ୍ଟ ହୋଇଣ ତପେ ପାର୍ବତୀଙ୍କ ସାଇଁ
କହିଲେ ହେ ଶୁକ୍ର ବର ମାଗ ଯାହା ଚହିଁ
କଠୋର ଯେଉଁ ତପସ୍ୟା ଆଚରିଲ ତୁମ୍ଭେ
ତିନିପୁରେ କାହାଠାରେ ଦେଖିନାହୁଁ ଆମ୍ଭେ
ଦରଶାଇଅଛ ଯେଉଁ ଶରୀର କଷଣ
ତ୍ରିପୁରେ କେଅଛି ଏହା କରିବ ବରଣ
ତପବୁଦ୍ଧି ଧୃତି ବଳ ତେଜ ସୁରଙ୍କର
କହେ ତା ଉପରେ ହେଉ ତୁମ୍ଭ ଅଧୀକାର
ବ୍ରାହ୍ମଣଙ୍କେ ଶ୍ରେଷ୍ଠ ତୁମେ ଭୃଗୁଙ୍କ ନନ୍ଦନ
ମୋ ଭିତରେ ତାହା ଅଛି ତୁମ୍ଭେ ଯା ନଜାଣ
ସେସବୁ ତୁମକୁଦେଇ କରେ ଏ ବିଚର
ଉପଯୁକ୍ତ ନୁହେ ତାହା ତୁମ ତପସ୍ୟାର
ଏତେ କଥାରୁ ଏକ୍ଷଣି ଆଉ କି ମିଳିବ
ବିଧର ଯୋଗ୍ୟ କଦାପି ତୁମେ ନ ହୋଇବ
ଭାର୍ଗବଙ୍କୁ ଏହି ବର ଦେଇଣ ଶଙ୍କର
ପ୍ରଜା ଉତ୍ପାଦକହୁଅ କହିଲେ ଆବର
ଅବନ୍ଧ୍ୟ ହେଉସେ ତୁମେ ସ୍ୱାମୀ ହେବଯାର
ହରଷରେ ପୁଣି ଯାଚି ଦେଲେ ଏହିବର
ପ୍ରସନ୍ନ ହୋଇଲେ ଶୁକ୍ର ଧାତାଙ୍କବଚନେ
ଅଯାଚିତେ ଲଭିଲେ ଯା ପାଞ୍ଚୁଥିଲେ ମନେ
ନୀଳ ଲୋହିତ ଈଶ୍ୱର ଦେବ ଦେବଙ୍କର
ବାଣିଶୁଣି ଭୃଗୁସୁତ ହୋଇ ହର୍ଷଭର
ଯୋଡ଼କରେ ଶ୍ରୀପୟରେ ହୋଇଲେ ପ୍ରଣତ
ତେବେ ଅନ୍ତର୍ଦ୍ଧ୍ୟାନ ହେଲେ ପ୍ରମଥଙ୍କନାଥ
ଜୟନ୍ତୀକୁ ଚହିଁ ଭୃଗୁସୁତ ତଦପରେ
କହିଲେ କୋମଳବାଣୀ ଅତି ହରଷରେ

ନାହିଁଜାଣି ସୁଲକ୍ଷଣି କିଏ ତୁମ ପିତା
ମୋ ଦୁଃଖରେ କିମ୍ପା ତୁହି ହେଉଚୁ ଦୁଃଖିତା
କଠୋର ଏମୋ ତପସ୍ୟା ତହିଁ ଯୋଡ଼ି ହୋଇ
କାହିଁକି କଷ୍ଟ ସହିଲୁ ଆରେ ଚନ୍ଦ୍ରମୁହିଁ
କେଉଁ ପ୍ରୟୋଜନ ପାଇଁ ସେବାକଲୁ ମୋର
ସତକରି କହ ଥରେ ମୋରେ ଯୋଷାବର
ଏଡ଼େ ଭକ୍ତି ଏତେଶ୍ରଦ୍ଧା ମୋଠାରେ କାହିଁକି
ପଚାରୁଛି ଏତେଥର କହିବୁ ନାହିଁକି ?
ସୁମଧ୍ୟମା ତୁହି ବର ବର୍ଣ୍ଣନି ତୋପରି
କେ ନଥିବେ ତିନିପୁରେ ରେ ନବକିଶୋରୀ
ଜାଣେ ତୋ ସ୍ନେହରେ ମୁହିଁ ହୋଇଛି ମୋହିତ
କହିବି କିପରି କେତେ ହୋଇଅଛି ପ୍ରୀତ
କହ ବରାରୋହା ତୋର କିବା ଅଭିପ୍ରାୟ
ଯା ମାଗିବୁ ଜାଣ ତାହା ନୋହିବ ଅଦେୟ
ମୋଦ୍ୱାରା କି କାର୍ଯ୍ୟ ତୋର ହୋଇବ ସାଧିତ
କହ ଯେତେ କଷ୍ଟହେଉ କିରବି ନିୟତ
ଚହୁଁଥିବୁ ଏହିକ୍ଷଣି କରିବି ତା ପୂର୍ଣ୍ଣ
ସନ୍ଦେହ ନକର ଏଥିରେ ନାରୀରତନ
ଶୁକ୍ରଙ୍କ ବଚନ ଶୁଣି ଜୟନ୍ତୀ ତରୁଣୀ
ପିତାଙ୍କର ନିର୍ଦ୍ଦେଶକୁ ମନେ ମନେ ଗୁଣି
କହିଲା ହେ ପୂଜ୍ୟ ମୋର କାର୍ଯ୍ୟ ତପୋବନେ
ପ୍ରତ୍ୟକ୍ଷକରି ଅଛନ୍ତି ଆପଣା ନୟନେ
ତପୋବନ ବାସିନୀ ମୁଁ କର୍ତ୍ତବ୍ୟ ଏ ମୋର
ଆପଣଙ୍କୁ ଅବା କେଉଁ କଥା ଅଗୋଚର
ତେଣୁ ଜଣା ଆପଣଙ୍କୁ ମୋର ଅଭିଳାଷ
ପ୍ରକାଶକର ତା ଲଭି ଅତି ଅଳ୍ପ କ୍ଳେଶ
ଭାର୍ଗବ ଶୁଣି ସେ ନବ ଯୁବତୀର ବାଣୀ
ଧ୍ୟାନେ ବସିଣ ଅନ୍ତର ଜାଣିଲେ ସେକ୍ଷଣି
କହିଲେ ପରେ ଭାର୍ଗବ ଆରେ ସୁ-ମଧ୍ୟମା
ତୋ ଅଭିଳାଷ ସମସ୍ତ ହୋଇଛି ମୋ ଜଣା
କହୁଛି ଶୁଣ ଭାମିନୀ ବଚନ ମୋହର
ରହ ମୋ ପାଶରେ ନୋହି ଅନ୍ୟର ଗୋଚର
ମୋସଙ୍ଗେ ରହିବୁବନେ କେହି ନ ଦେଖିବ
ତୋ ସଂଯୋଗେ ଶହେ ବର୍ଷ ଏଠି କଟିଯିବ
ନୀଳଇନ୍ଦୀବର ଶ୍ୟାମ ବର୍ଣ୍ଣ ଗାତ୍ର ତୋର
ନିରବଧି ହରୁଥିବ କାମ ବାଧା ମୋର

ବରାରୋହ ଦେବୀ ତୁହି ତ୍ରିପୁର ସୁନ୍ଦରୀ
ପୁଂ କୋକିଳ ସ୍ୱର ନୁହେ ତୋ ବଚନପରି
ମୃଗବଧୂ  ସମ ତୋର ଆୟତ ନୟନ
ଯାସଙ୍ଗେ ତୁଲ ହୋଇବ କାମ ଶରାସନ
ଚାହିଁଦେଇଥିଲେ ଥରେ ଆରେ ଚନ୍ଦ୍ରମୁହିଁ
ଦେଇଥାନ୍ତି ବର କଷ୍ଟ ସହିଲୁ କିପାଇଁ
ମତ୍ତଗଜଗାମିନୀରେ ଏହି ଇଚ୍ଛା ତୋର
କରିବି ପୂରଣ ଚାଲ ଯିବୁ ମୋର ଘର
କହି ଏତେ କର ତାର ଧରି ଭୃଗୁସୁତ
ଆନନ୍ଦରେ ନିଜ ପୁରେ ହୋଇଲେ ଆଗତ
ତଦପରେ ଦୈତ୍ୟଗୁରୁ ଜୟନ୍ତୀ ସଙ୍ଗରେ
ରମିଲେ ଶହେବସର ଆପଣା ମନ୍ଦିରେ
ବାସବ ଦୁହିତା ଭୃଗୁସୁତ ପ୍ରଭାବରେ
ସବୁପ୍ରାଣୀ ଅଗୋଚରେ ରହିଥାନ୍ତି ଘରେ
ତପସ୍ୟା ସଫଳପରେ ଗୁରୁଦେବଙ୍କର
ଆଗମନ ଜାଣି ସବୁ ଦିତିଙ୍କ କୁମର
ଗୁରୁ ଦରଶନ ଆଶା ରଖି ହୃଦୟରେ
ପ୍ରବେଶ ହୋଇଲେ ଯାଇ ଶୁକ୍ର ଆଶ୍ରମରେ
ଆଶ୍ରମେଗଲେ ତଥାପି ଶୁକ୍ରେ ନ ଦେଖିଲେ
ମାୟାବୃତେ ଜୟନ୍ତୀର କୋଳେଯେଣୁଁଥିଲେ
ଆଶ୍ରମେ ନପାଇ ଚିହ୍ନ ବର୍ଣ୍ଣ ଗୁରୁଙ୍କର
ଫେରିନାହାନ୍ତି ବନରୁ କଲେ ଏ ବିଚାର
ଭାବିଏହା ଦୈତ୍ୟଗଣ ନିରାଶ ହୋଇଲେ
ଯେଉଁବାଟେ ଆସିଥିଲେ ସେବାଟେ ଫେରିଲେ
ତଦପରେ ବୃହସ୍ପତି ପାଶେ ଯାଇ ସୁରେ
ନମିପାଦେ ଏହିକଥା କହିଲେ ପାଦରେ
ଅସୁର ନଗରେ ପ୍ରଭୁ ଯାଇଣ ଆପଣ
ମୋହିତ କରନ୍ତୁ ଶୀଘ୍ର ସନୃପସଇନ
ଆପଣଙ୍କ ବଶ୍ୟ ଯଥା ସମସ୍ତେ ହୋଇବେ
କଳେ ବଳେ କଉଶଳେ ତାହା ଆଚରିବେ
ଦେବତାମାନଙ୍କଠାରୁ ଶୁଣି ଏହି ବାଣୀ
ବିଚାରିକ୍ଷଣେ କହିଲେ ଶୁଣ ସୁର ଶ୍ରେଣୀ
ଯା କହିଲତୁମେ ତାହା ନିଶ୍ଚୟ କରିବି
ଚହସର୍ବେ ନିଯେ ଏବେ ଦୈତ୍ୟପୁରେ ଯିବି
ତଦପରେ ଦୈତ୍ୟପୁରେ ସୁରଗୁରୁ ଗଲେ
ଦୈତ୍ୟପତି ପ୍ରହ୍ଲାଦଙ୍କ ମନରେ ମୋହିଲେ
ଯେଣୁ ସେହି ଧରିଥିଲେ ରୂପ ଶୁକ୍ରଙ୍କର
ତେଣୁ ଜାଣ ହେଲେନାହିଁ ଦୈତ୍ୟଙ୍କ ଗୋଚର
ପୁରୋହିତ କର୍ମ କଲେ ରହି ଦୈତ୍ୟପୁରେ
ଦୈତ୍ୟପତି ପ୍ରୀତି ଲଭି ବିଶେଷ ଭାବେରେ
ଶତବର୍ଷରୁ ଅଧିକ ଗଲା ଏହିପରି
ତା ମଧ୍ୟରେ ଦୈତ୍ୟଗୁରୁ ଆସିଥିଲେ ଫେରି
ତେବେ ଅସୁରଙ୍କ ଏକ ମେଳନ ହୋଇଲା
ସେଠାକୁ ଦୈତ୍ୟ ଗୁରୁଙ୍କୁ ନିମନ୍ତ୍ରଣ ହେଲା
ଶୁକ୍ର ବସିଥିଲେ ପୁଣି ଶୁକ୍ର ପ୍ରବେଶିଲେ
ବେନି ଗୁରୁ ଏକାପରି ଦଇତେ ଦେଖିଲେ
ଆଶ୍ଚର୍ଯ୍ୟ ହୋଇଲେ ତେବେ ଦୈତ୍ୟକୁଳ ସାଇଁ
ଏକାପରି ଦୁଇ ଏହା ସମ୍ଭବ ନୁହଇ
ଅଟନ୍ତି ଭାର୍ଗବ ସୁତ ଶୁକ୍ର ଆମ ଗୁରୁ
ଅନ୍ୟ ଶୁକ୍ର ଜଣେ ଆସିଛନ୍ତି କେଉଁଠାରୁ
ଏଥିପାଇଁ ସେ ସଭାରେ କୌତୁକ ବଢ଼ିଲା
କ୍ରମେ ବିଦ୍ରୋହ ଘଟିବା ଉପକ୍ରମ ହେଲା
ଦ୍ୱାରେ ଯେହୁଥିଲା ତାକୁ ହୋଇଲା ଡ଼ାକରା
ତଥ୍ୟ ଜାଣିବାକୁ ହେଲା ପଚରା ଉଚରା
ସଭାଘରେ ବସିଥିଲେ ଯେ ଆସି ଆଗରୁ
ବହୁଦିନୁ ଅଛନ୍ତି ସେ ଶୁକ୍ର ଆମ ଗୁରୁ
କିଏ ସେ ହୋଇବେ ସେହିପରେ ଯେ ଆସିଲା
ଏବିଷୟନେଇ ବହୁ ଚରଚା ସରିଲା
ତେବେ ଧ୍ୟାନବଳେସବୁ ଜାଣି ଭୃଗୁସୁତ
କହିଲେ ବୃହସ୍ପତୀଙ୍କୁ କ୍ରୋଧେ ହୋଇଯୁତ
ଆହେ ଦେବଗୁରୁ କହ ତାହାର କାରଣ
କାହିଁପାଇଁ ହେଲା ଏଥି ତୁମ ଆଗମନ
ମୋ ଶିଷ୍ୟେ କରିଛ ମୋହ ମୋର ରୂପଧରି
ଉଚିତକି କହ ଏହା ଅଟଇ ତୁମ୍ଭରି
ମୁଢ଼ ଏହି ଦୈତ୍ୟେ ତୁମ ମାୟା ନଜାଣିଲେ
ତେଣୁ ସେମାନେ ତୁମକୁ ଚିହ୍ନି ନ ପାରିଲେ
ଅନ୍ୟର ଶିଷ୍ୟଙ୍କୁ ପୀଡ଼ା ଦେବା ଏହିପରି
ଉଚିତହେଲା କି ନିଯେ କହ ତା ବିଚାରି
ଦେବଲୋକେ ଏବେ ତୁମେବେଗେ ଫେରିଯାଅ
ନିଜଧର୍ମ କର୍ମ ଯାହା ସେଠାରେ ଦେଖାଅ
କଚ 'ନାମେ ପ୍ରିୟ ଶିଷ୍ୟ ଯେ ଥିଲା ମୋହର
ପ୍ରାଣଗଲା ଦୈତ୍ୟରାଜ ହାତରେ ତାହାର

ପୁତ୍ରସମ ପ୍ରାଣପ୍ରିୟ ବିଦ୍ୟାର୍ଥୀ ଅଟଇ
ତାର ବଧ ମୋର ପ୍ରାଣ ନିରତେ ଦହଇ
ଆହେ ସୁରଗୁରୁ ଯୋଗ୍ୟ ଏ ନୁହେ ତୁମର
ମୋ ବିରୁଦ୍ଧେ ରହି ଦୈତ୍ୟେ ମୋହକରିବାର
ଶୁକ୍ରବାକ୍ୟ ଶୁକ୍ରରୂପୀ ସୁରଗୁରୁ ଶୁଣି
ସ୍ମିତହାସ୍ୟ କରି ତାଙ୍କୁ କହିଲେ ସେକ୍ଷଣି
ଜଗତରେ ପରଧନ ଯେ କରେ ହରଣ
ଚୋର ରୂପେ ଜଗତରେ ସେ ହୁଏ ଗଣନ
ସେହିପରି ରୂପ ଦେହ ଚୋରୀ କରିବାର
ଦେଖାଯାଇଅଛି ଏହି ବିଶ୍ୱେ ବହୁବାର
ବୃତ୍ର ଅସୁରକୁ ମଘବାନ ବଧକଲା
ବ୍ରହ୍ମହତ୍ୟା ଦୋଷ ପାଇଁ ସେ ଗୋପ୍ୟ ହୋଇଲା
ଲୋକଙ୍କ ସହିତ ଶାସ୍ତ୍ର ନିନ୍ଦାକଲା ତାର
ସେଥିପାଇଁ ସର୍ବେ ତାକୁ କଲେ ତିରସ୍କାର
ଦେବଙ୍କ ଆଚାର୍ଯ୍ୟ ତୁମେ ଗୁରୁ ବୃହସ୍ପତୀ
ଭଲରୂପେ ଜାଣିଅଛି ମୁହିଁ ତୁମ୍ଭ ମତି
ଆସିଛ ଏଠାକୁ ତୁମେ ଧରି ରୂପ ମୋର
ଜାଣିଲେଣି ଦୈତ୍ୟେ ତୁମ ଏ କୂଟ ବେଭାର
ଅଧିକ କହିଲେ ଏଥି ପ୍ରାଭବ ପାଇବ
ନମଣ ସଂଶୟ ମୋର କଥା ଅଟେ ଧ୍ରୁବ
ଜାଣେ ମୁହିଁ ଏ ମନ୍ତ୍ରଣା ଅଟେ ବିଷ୍ଣୁଙ୍କର
ପଠାଇଲେ ମୋହିବାକୁ ଅସୁରଈଶ୍ୱର
ଆବଦ୍ଧ କରି ଅସୁରେ ଲୁହା ଶିକୁଳୀରେ
ସମୁଦ୍ରକୁ ଫିଙ୍ଗିଦେବ ଭାବିଛ ଚିତ୍ତରେ
ଶୁକ୍ରାଚାର୍ଯ୍ୟ ଶୁଣି ତାହା କ୍ରୋଧ ହୋଇ ଅତି
କହିଲେ ମୁଁ ଶୁକ୍ରାଚାର୍ଯ୍ୟ ଶୁଣ ଦୈତ୍ୟପତି
ବୃହସ୍ପତି ଏ ଅଟନ୍ତି ଦେବ ପୁରୋହିତ
ଏହା କଥା ଶୁଣି ତୁମେ ନୁହ ବିଚଳିତ
ମୋହପ୍ରାପ୍ତ ଦେଖି ସର୍ବେ ହେଉଛି ମୋଭୟ
ନିକଟେ ଦାନବକୁଳ ହୋଇଯିବ କ୍ଷୟ
ଆରମ୍ଭ ମାତ୍ରକ ଏହା ଅଟଇ ତାହାର
ଏଥିରେ ସନ୍ଦେହ କିଛି ନାହିଁ ଦୈତ୍ୟେଶ୍ୱର
ଏ ଦୁରାତ୍ମା ହେତୁ ମୁହିଁ ହୋଇଛି ବଞ୍ଚିତ
ନମଣ ଏଥି ସଂଦେହ ଆହେ ଦୈତ୍ୟନାଥ
ଅନ୍ୟକୁ ବରଣ କଲ ପୁରୋହିତ ପଣେ
ନଜାଣି ହେ ଦୈତ୍ୟପତି ଅତି ମୂଢ଼ପଣେ

ଅଙ୍ଗିରା ଋଷିଙ୍କ ସୁତ ଏହି ଆଙ୍ଗୀରସ
ଏହାଙ୍କ ଶିଷ୍ୟ ଅଟନ୍ତି ସମସ୍ତ ତ୍ରିଦଶ
ମୋ ରୂପରେ କପଟରେ ତୁମକୁ ଠକିଲା
ପ୍ରତ୍ୟେକଲ ତାକୁ ତୁମ କପାଳ ଫାଟିଲା
ତିଳେହେଁ ସଂଶୟ ନାହିଁ ମୋର ଏ କଥାରେ
ବହୁ ଦୁଃଖ ଲେଖାଅଛି ଦୈତ୍ୟଙ୍କ ଭାଗ୍ୟରେ
ଜାଣୁଛି ଏ ପ୍ରତାରଣା ତୁମକୁ କରିବ
ଅନ୍ୟପକ୍ଷେ ଦେବତାଙ୍କ ହିତ ଆଚରିବ
ଏହା ଭାବି ଆଦରିଛି ଏପରି କୌଶଳ
ଭଲେ ଭାବି ନ ପାରିଲ ତୁମେ ଦୈତ୍ୟକୁଳ
ତଡ଼ିଦିଅ ତାକୁ ବେଗେ ଶୁଣି ମୋ ବଚନ
ନୋହିଲେ ଲଭିବ ଦୁଃଖ ଅସୁରରାଜନ
ଏ ଏଥି ରହିଲେ ହେବ ଶତ୍ରୁର ବିଜୟ
ଏ କାରଣୁ ହୋଇଯିବ ଦୈତ୍ୟକୁଳ କ୍ଷୟ
ଅନୁଶିଷ୍ୟ ଭୟୁ ଏଥୁ ଥରେ ଯାଇଥିଲି
ଜଳମଧ୍ୟେ ନିଜ ଅଙ୍ଗ ଗୋପନ ମୁଁ କଲି
ପିଇଦେଲେ ଶିବ ମୋତେ ଜଳ ସହିତରେ
ଶହେ ବର୍ଷ ବିତିଗଲା ତାହାଙ୍କ ଉଦରେ
ଲିଙ୍ଗଦେଇ ଶିବଙ୍କର ମୁଁ ହେଲି ବାହାର
ସେଥିପାଇଁ ଶୁଦ୍ଧ ହେଲା ମୋର କଳେବର
ସନ୍ତୁଷ୍ଟ ହୋଇ ତାପରେ ପାର୍ବତୀଙ୍କ କାନ୍ତ
ବର ଦେବାପାଇଁ ଆଗେ ହେଲେ ଉପସ୍ଥିତ
ପିନାକ ପାଣିଙ୍କୁ ତେବେ ଦେଖି ସମ୍ମୁଖରେ
ଇଚ୍ଛାବର ଲାଭକଲି ବିଶେଷ ଭାବରେ
କହିଲି ହେ ପ୍ରଭୁ ମୋତେ ଦିଅ ଏହିବର
ଯାହା ଅର୍ଥ ବିଚାରିବି ପ୍ରାପ୍ତ ହେବ ମୋର
ସ୍ଥିର ମନୋରଥ ଯାହା ହୃଦକୁ ଆସିବ
କହୁଛି ହେ ପ୍ରଭୁ ସବୁ ସମ୍ପୂର୍ଣ୍ଣ ହୋଇବ
ପ୍ରକାଶ କରୁଛି ମୋର ଏ ଇଚ୍ଛା ଶଙ୍କର
ତଥାସ୍ତୁ କହି ସେ ହେଲେ ପାଶରୁ ଅନ୍ତର
ଯିବାବେଳେ କହିଗଲେ ମୋତେ ଉମା ସାଇଁ
ବେଗେ ଯାଇ ଭେଟହୁଅ ଦୈତ୍ୟକୁଳସାଇଁ
ଏହି ଅବସରେ ଏହି ବୃହସ୍ପତି ଆସି
ତୁମ ଘରେ ପୁରୋହିତ ପଣେ ଅଛି ପଶି
ମୋ ରୂପେ ଏ ହୋଇଛି ଆଚାର୍ଯ୍ୟ ତୁମର
ଏକଥା ବିଚାର କର ଥରେ ଦୈତ୍ୟେଶ୍ୱର

ସତ୍ୟ ଏହା ଯା କହିଲି ମୁହିଁ ଦୈତ୍ୟସାଇଁ
ମୋର କଥା ତାକୁ ତୁମେ କହିଦିଅ ଯାଇ
ଶୁଣି ତାହା ଶୁକ୍ରରୂପୀ ଅଙ୍ଗୀରାଙ୍କ ସୁତ
ଦୈତ୍ୟପତି ପ୍ରହ୍ଲାଦଙ୍କୁ କହିଲେ ଏମନ୍ତ
ଏ କିଏ ଏହାକୁ କେବେ ମୁହିଁ ଜାଣିନାହିଁ
ଦେବ, ଦାନବ ଅଥବା ନର ଥିବ ହୋଇ
ଦେଖ ଏ ମୋପରି ରୂପ କରିଛି ଧାରଣ
ଏଥିରୁ ବୁଝିବ ତୁମେ ତାର ଆଚରଣ
ଶୁକ୍ରରୂପଧାରୀ ଦେବଗୁରୁ ବାଣୀ ଶୁଣି
ଠିଆହୋଇ ଦୈତ୍ୟେକଲେ ଜୟ ଜୟ ଧ୍ୱନୀ
ତାଳିମାରିଣ ତାହାଙ୍କୁ କରି ସମର୍ଥନ
କହିଲେ ଯାହା କହିଲ ସତ୍ୟ ଏ ବଚନ
ପୂର୍ବରୁ ତୁମେ ଆମର ଅଛ ପୁରୋହିତ
ଛଦ୍ମବେଶୀ ଏହି ଦୁଷ୍ଟ ଏହା ଆମ୍ଭମତ
ଛଦ୍ମବେଶ ଧରି ଏହି କୌଣସି ଦେବତା
ଆସିଅଛି ଶୁଝାଇବ ପୂର୍ବରୁ ଶତ୍ରୁତା
ଆସିଛି ସିନା ଆମ୍ଭଙ୍କୁ ଆଉ କି କରିବ
ଯେଉଁବାଟେ ଆସିଅଛ ସେହିବାଟେ ଯିବ
ଶୁଣି ତାହା ଶୁକ୍ରାଚାର୍ଯ୍ୟ ଅତି କ୍ରୋଧ ହେଲେ
ସଭାଗତ ହୋଇଥିବା ଦୈତ୍ୟେ ଶାପଦେଲେ
କହିଲେ ଛାଡ଼ିଲ ମତେ ତୁମେ ଯେଉଁପରି
ମୁଁ ମଧ୍ୟ ତୁମକୁ ଛାଡ଼ି ଯାଉଛି ସେପରି
ଏହି ତ୍ୟାଗ ଆଜିନୁହେଁ ଚିର କାଳ ଥିବ
ତୁମ ଦୁଃଖ ମୋ ହୃଦୟ ସର୍ବଦା ଇଚ୍ଛିବ
ତୁମ ଦୁଃଖ ତୁମନାଶ କେ କରିବ ଦୂର
ଦୂରେ ରହି ଦେଖିବି ସେ କେଡ଼େ ପାରିବାର
ଜାଣୁଅଛି ବହୁ ପୀଡ଼ା ଅସୁରେ ପାଇବ
ବିପତ୍ତିରେ ଗ୍ରସ୍ତ ହୋଇ ସର୍ବଦା ରହିବ
ଦୁଃଖିତ ହୋଇବ ତେବେ ସାରିବ କରମ
ନିଶ୍ଚୟ ହୋଇବ ଭବେ ସତ୍ୟ ଯେବେ ଧର୍ମ
ସ୍ୱଇଚ୍ଛାରେ ଏହା କହି ଭୃଗୁଋଷି ସୁତ
ସଭା ଛାଡ଼ିଗଲେ ଭୀଷ୍ମ ନିଜ ଇଚ୍ଛାମତ
ରାଜ୍ୟରେ ନରହି ଗଲେ ସ୍ମରି ତପୋବନ
ଭଲେ ମନେରଖ ଏହା ଶାନ୍ତନୁ ନନ୍ଦନ
ଯାନ୍ତେ ଶୁକ୍ର ତପୋବନେ ଅଙ୍ଗୀରାଙ୍କ ସୁତ
ଅସୁର ରାଜ୍ୟରେ ସ୍ଥାୟୀଭାବେ ହେଲେସ୍ଥିତ
ପାଳିଲେ ଦାନବ ଗଣେ ବହୁକାଳ ଧରି
ସମ୍ମାନ ଦେଲେ ଅସୁରେ ଅତି ଭକ୍ତି କରି
ହେ ଭୀଷ୍ମ ଏପରି ବହୁକାଳ ହେଲା ଗତ
ଏକତ୍ରିତ ହେଲେ ଦିନେ ସମସ୍ତ ଦଇତ
ଗୁରୁଙ୍କୁ ଡକାଇ ପରେ ପାଶେ ବସାଇଲେ
ହୃଦେ ଭକ୍ତିଭାବ ଧରି ତାଙ୍କୁ ପଚାରିଲେ
ଆହେ ଗୁରୁ ସାରହୀନ ଅଟେ ଏ ସଂସାର
ତଥାପି ଏଠାରେ ଜନ୍ମ ହୋଇଛି ଆମ୍ଭର
ନଜାଣୁ କୌଣସି କଥା ସମସ୍ତେ ଅଜ୍ଞାନ
କୃପାକରି ଦିଅ କିଛି ସାଂସାରିକ ଜ୍ଞାନ
ଶିଷ୍ୟ ଆମେ ଆଉ କିବା କହିବୁ ଅଧିକ
ଦିଅ ଜ୍ଞାନ ଅଟେ ଯାହାମୋକ୍ଷ ପ୍ରଦାୟକ
ଯଦି ପ୍ରଭୁ ଆପଣଙ୍କ କରୁଣା ହୋଇବ
ଜନ୍ମମରଣ ବନ୍ଧନ ଛିନ୍ନ ହୋଇଯିବ
ସୁଚିରେ ଏ ଭବଭୟ ହୋଇଯିବ ଦୂର
କହୁଛୁ ତୁମ ଚରଣେ କରି ନମସ୍କାର
ଶୁକରୂପୀ ବୃହସ୍ପତୀ ଶୁଣି ତାଙ୍କ ବାଣୀ
ପ୍ରଥମେ ମୁଁ ଏହାଚିନ୍ତା ହୃଦେଥିଲି ଆଣି
କହିବି ତୁମକୁ ଏହା ଥିଲା ମୋ ବିଚାର
ଏବେ ତା ତୁମେ ପୁଛିଲ ଅଟେ ଚମତ୍କାର
ସର୍ବେ ସାବଧାନେ ହୁଅ ପବିତ୍ର ହୃଦୟ
କ୍ଷଣେପରେ ମୋକ୍ଷ ମାର୍ଗ କହିବି ନିଶ୍ଚୟ
ମୋକ୍ଷ ହେବ ଦୈତ୍ୟେ ଯେଉଁମାର୍ଗ ଆଶ୍ରା କରି
ସେହିକଥା ଭଲେ ମୁହିଁ କହିବି ବିଚାରି
ଋକ ଯଜୁ ସାମ ନାମେ ଯେଉଁ ବେଦତ୍ରୟ
ବୈଦିକ ଶ୍ରୁତିରୂପେ ଯା ଲଭିଛି ଉଦୟ
ପ୍ରାଣୀଙ୍କ ଦୁଃଖ ପ୍ରଦାତା ସେହି ମନେକର
ପେଷିଛନ୍ତି ସଂସାରକୁ ତାକୁ ବୈଶ୍ୱାନର
ଯଜ୍ଞବୋଲି ଯାହା ତୁମ୍ଭେ କାନରେ ଶୁଣୁଛ
ସ୍ୱାର୍ଥାନ୍ଧଙ୍କ ସୃଷ୍ଟି ତାହା ସବୁଅଟେ ତୁଚ୍ଛ
ଶ୍ରାଦ୍ଧ ନାମରେ ସଂସାର ହେଉଅଛି ଯାହା
ଧର୍ମ କିଛି ନାହିଁ ମାତ୍ର ଆଡ଼ମ୍ବର ତାହା
ଶୈବ ବୈଷ୍ଣବ ଧରମ ମଧ୍ୟ ସେହିପରି
ରହିଛି କେବଳ ଏଥି ଶାସ୍ତ୍ର ବାହାଦୂରି
ଏହି ସବୁ ଧର୍ମ ଜାଣ ଅଟଇ କୁତ୍ସିତ
କ୍ରୁର ଆନ୍ତି ଲୋକେ ଏହା ଭାର୍ଯ୍ୟାର ସହିତ

ହିଂସାପୂର୍ଣ୍ଣ ସବୁ ଏଥି ନକର ସଂଶୟ
ପ୍ରମାଣ ରୂପେ ମୋ କଥା ସର୍ବେଧରି ନିଅ
ଜାଣିଅଛି ସର୍ବେ ଶିବ ଅର୍ଦ୍ଧ ନାରୀଶ୍ୱର
କେଉଁପରି ମୋକ୍ଷଲାଭ ହୋଇବ ତାଙ୍କର
ସଦା ତାଙ୍କୁ ଘେରି ରହିଥାନ୍ତି ଭୂତଗଣ
ସ୍ମଶାନ ଅଟଇ ତାର ସଦା ବାସସ୍ଥାନ
ସ୍ମଶାନ ଭସ୍ମ ଦେହରେ ବୋଳିହୋଇ ଥାଏ
ହାଡ଼ସବୁ ମାଳାକରି ବେକରେ ଝୁଲାଏ
ଏସବୁ ଅଟଇ ଯାର ଶରୀର ଭୂଷଣ
ତା ପକ୍ଷେରେଁ ସ୍ୱର୍ଗ ଲାଭ ନୁହେଁ କି ଦୂଷଣ
ଯେଉଁମାନେ ସେବା କରୁ ଅଛନ୍ତି ତାହାର
ବ୍ୟର୍ଥଶ୍ରମ ତାହାଙ୍କର ବୋଲି ମନେକର
ବିଷ୍ଣୁ ବୋଲି ଯେହୁ ସେହି ହିଂସାର ପ୍ରତୀକ
ସେ କେହ୍ନେ ପାଇବ ମୁକ୍ତି କର ଏ ବିବେକ୍
ବ୍ରହ୍ମାବୋଲି ଯେଉଁ ଦେବ ରଜୋଗୁଣେ ଯୁତ
ନିଜସୃଷ୍ଟିକି ଆବୋରି ରହିଛି ଜୀବିତ
ଯାଜ୍ଞିକ ଦେବର୍ଷି ଯେତେ ବୈଦିକ ମତରେ
ଯେତେକ ଅଛନ୍ତି ରହି ସମଗ୍ର ସଂସାରେ
ନ ହୋଇବ କହି ଏମାନଙ୍କ କ୍ରୂର ପଣ
ଲୋକେ ଦେଖିବାକୁ ଭେକ କରନ୍ତି ଧାରଣ
ସର୍ବଦା ଅଟଇ ମାଂସ ଏହାଙ୍କ ଆହାର
ପାପ କର୍ମେ ମତି ତାଙ୍କ ଥାଏ ନିରନ୍ତର
ଦେବତା ପିଅନ୍ତି ମଦ ବିପ୍ରେ ମାଂସଭୋଜୀ
ତଥାପି ଯାଉଅଛନ୍ତି ସ୍ୱର୍ଗ ଲୋକ ଖୋଜି
ଏହିମାନେ ସ୍ୱର୍ଗ ମୋକ୍ଷ ପାଇବେ କିପରି
ତୁମେ ସର୍ବେ କହ ମୋତେ ସେ କଥା ବିଚାରି
ବେଦ ସ୍ମୃତିର କଥିତ ଶ୍ରାଦ୍ଧାଦି କରମ
ଯାହା ଶୁଣୁଛ ସେ ଅଟେ ଅତି ଅଧରମ
ଯଜ୍ଞରେ ପଶୁ ହନନ ଅଟଇ ପ୍ରଧାନ
କରଇ କର୍ତ୍ତା କେବଳ ରୁଧିରରେ ସ୍ନାନ
ଏସବୁ ଅଟଇ ହିଂସାପ୍ରଧାନ କରମ
ଏଥୁ ସ୍ୱର୍ଗ ସୁଖ ଭୋଗ ଆଶା ଅଟେ ଭ୍ରମ
ଏମାନେ ଯଦ୍ୟପି ଯାଇ ସ୍ୱର୍ଗରେ ବସିବେ
କେଉଁମାନେ ଆଉ ନର୍କ ଯାତନା ଭୋଗିବେ
ଭୋଗ ଯେବେ ଅନ୍ୟଦ୍ୱାରା ପ୍ରାପତ ହୋଇବ
ତୁମ ତୃପ୍ତି ଅନ୍ୟ ଲୋକ ଯଦ୍ୟପି ଲଭିବ
ତେବେ ବିଦେଶରେ ଥିବା ତୁମ ଲୋକପାଇଁ
ଘରେ ରହି ଖାଦ୍ୟ କିପାଁ ବାଢ଼ିଦେବି ନାହିଁ
ବିଦେଶୀ ବନ୍ଧୁ ତା ଖାଇ ତୃପତି ଲଭିବ
ବିଦେଶରେ ଦୁଃଖେକେଷ୍ଟେ କାହିଁକି ସଢ଼ିବ
ଏକଥା ଏପରି କିନ୍ତୁ କଦାପି ନୋହିବ
ସମସ୍ତେ ମୋର ଏକଥା ମନେ ରଖିଥିବ ।
ଆକାଶରେ ଯିବା ବିପ୍ର ମାଂସ ଭକ୍ଷଣରେ
ପତିତ ହୁଏ ଏକଥା ଶୁଣିଛ କାନରେ
ମୋକ୍ଷ ସ୍ୱର୍ଗ ଏ ବିପ୍ରକୁ ଯଦ୍ୟପି ମିଳିବ
ହେ ଦାନବଗଣ ସୃଷ୍ଟି ଆଉ କି ରହିବ
ସର୍ବହିତ ପାଇଁ ପ୍ରାଣୀ ଭବ ହୁଏ ଜନ୍ମ
ମାଂସସବୁ ସମ-କେହି ନୁହେ ବଡ଼ସାନ
ପଣ୍ଡିତ ହୋଇଣ ମାଂସ ଯେଜନ ଖାଇବ
ପଣ୍ଡିତ ବୋଲି ତାହାକୁ କେ କିପାଁ କହିବ
ଯୋନୀରୁ ଜନମି ଲୋକେ ଯୋନି ଭୋଗକରି
ଆନନ୍ଦିତ ହେଉଛନ୍ତି ଦେଖାଇ ଚାତୁରୀ
ମୈଥୁନ କର୍ମ ଯେ କରେ ଶୁଣ ଦୈତ୍ୟଗଣ
ତାହାର କିପରି ଲାଭ ହେବ ସ୍ୱର୍ଗସ୍ଥାନ
ପାଉଁଶରେ ଯହିଁ ମାଟି ହେଉଅଛି ଶୁଦ୍ଧ
କହ ସେଠାରେ ଆସିବ କିପାଁ ଶୁଚିବୋଧ
ମଳମୂତ୍ର ତ୍ୟାଗ ପରେ ମାଟିରେ ଶୋଧନ
ଶାସ୍ତ୍ରଯେବେ କରିଅଛି ଏପରି ବିଧାନ
କହ ତେବେ ଲୋକେ କିପାଁ ଭୋଜନରପରେ
ଶୁଦ୍ଧି ନକରିବେ ନିଜ ମୁଖ ମୃତ୍ତିକାରେ
ଗୁଦ ଲିଙ୍ଗ ପାଇଁଯେଉଁ ବିଧାନ ହୋଇଲା
ମୁଖ ପାଇଁ କିପାଁ ତାହା ବିପରୀତ ହେଲା
ଏ ସଂସାର ସହିତରେ ଅନ୍ୟ ଯେତେ ଲୋକ
ସବୁଠି ରହିଛି ପୂରି ଏସବୁ ପାତକ
ଦୈତ୍ୟରାଜ ଯହିଁ ଧର୍ମ ଅଟଇ ଏପରି
ତହିଁ ପରମାର୍ଥ ଲାଭ ହୋଇବ କିପରି
ମୁଁ କିପାଁ କହିବି ନିଯେ କହନ୍ତୁ ଆପଣ
ଶୁଣିଲେ ରାକ୍ଷସଗଣ ଗୁରୁଙ୍କ ଭାଷଣ
ଯେତେକ ତାହାଙ୍କ ମଧ୍ୟେ ପରମାର୍ଥ ଥିଲେ
ସେମାନଙ୍କ ସହ ସର୍ବେ କୌତୁକ ଲଭିଲେ
ଗୁରୁଙ୍କ ପ୍ରତି ସମସ୍ତେ ଭକ୍ତିଭାବ ଧରି
ବିଚାରିଲେ ଭବସିନ୍ଧୁ ଅବା ଗଲୁ ତରି

ଶୁଣି ରକ୍ଷଗଣ ଏହି ଗୁରୁ ପ୍ରବଚନ
କହିଲେ ଆମ ରକ୍ଷକ ଶ୍ରୀଗୁରୁ ଚରଣ
ଆମ୍ଭେ ଯେତେ ଏ ସଭାରେ ଆଜି ଉପସ୍ଥିତ
ଗ୍ରହଣ କରିବୁ ମନ୍ତ୍ର-ଏ ଆମ୍ଭର ମତ
ଆମ୍ଭ ହୃଦ ଭକ୍ତି ବେଦ କରିଣ ଗ୍ରହଣ
ଦିଅ ଦୀକ୍ଷା ଶିଷ୍ୟରୂପେ ସେବିବୁ ଚରଣ
ଦିଅ ସେହି ଶିକ୍ଷା ଯାକୁ ନାବ ରୂପେ ଧରି
ଅତି ସହଜରେ ମୋହ ସିନ୍ଧୁ ହେବୁ ପାରି
ଜାଣୁ ଏ ସଂସାର ଶୋକ ମୋହ ପ୍ରଦାୟକ
ତୁମର ବାଚକ ହେଲା ବୈରାଗ୍ୟ ଦୈତ୍ୟଙ୍କ
ପୂର୍ଣ୍ଣଭାବେ ସର୍ବେ ହେଲୁ ସଂସାର ବିରାଗୀ
ସର୍ବଦା ହୋଇବୁ ପ୍ରଭୁ ତୁମ ଅନୁରାଗୀ
କୂହଁରେ ପଡ଼ିଛି ଲୋକ ଯଦ୍ୟପି ଜାଣିବ
କେଶ ତାର ଧରି ତାକୁ ତହୁଁ ଉଦ୍ଧାରିବ
ସେହିପରି କରି ଆମ୍ଭ କେଶ ଆକର୍ଷଣ
ସଂସାର ସାଗରୁ ପ୍ରଭୁ କରନ୍ତୁ ତାରଣ
ବିପ୍ରଶ୍ରେଷ୍ଠ କହ ଏବେ କରିଣ ନିଶ୍ଚୟ
କେଉଁ ଦେବତାର ଆମ୍ଭେ ଘେନିବୁ ଆଶ୍ରୟ
ଶରଣାଗତ ତୁମର ଆମେ ରକ୍ଷଗଣ
ଆମ୍ଭର ଦେବତା ମାତ୍ର ଅଟନ୍ତି ଆପଣ
ଆମ୍ଭଙ୍କୁ ହେ ମତିମାନ ଦିଅନ୍ତୁ ପ୍ରକାଶ
ସଂସାର ବିରକ୍ତ ଆମ୍ଭେ କୁଟୁମ୍ବ ସହିତ
ପୂଜା, ଧ୍ୟାନ, ଉପବାସ ଧାରଣା ସ୍ମରଣ
ଅପବର୍ଗ ପ୍ରାପ୍ତିର ଏ ଅଟନ୍ତି କାରଣ
ଅଲୋଡ଼ ତା ହୋଇଅଛି ହେ ପ୍ରଭୁ ଆମ୍ଭର
ଶ୍ରୀଗୁରୁ ଚରଣ ରେଣୁ ଲଭୁ ଆମ୍ଭ ଶିର
ଦନୁଜ ପୁଙ୍ଗବେ-ଶୁକରୂପୀ ଗୁରୁପାଶେ
ନିବେଦନକଲେ ଏହା ଗଦଗଦ ଭାଷେ
ଚିନ୍ତା କରୁଥିଲେ ତେବେ ଛଦ୍ମବେଶୀ ଗୁରୁ
ସମାଧୀ ହୋଇବ କେଉଁ କାର୍ଯ୍ୟ ତଦୁତ୍ତାରୁ
ଯଥା ନର୍କଗାମୀ ହେବେ ଏହି ଦୁଷ୍ଟଗଣ
କିପରି ସେ କାର୍ଯ୍ୟ ମୁହିଁ କରିବି ସାଧନ
ତିନିଲୋକେ ହାସ୍ୟକରି ସ୍ତୁତି କରିବି ସାଧନ
ଅଛନ୍ତି ଏ ଦୈତ୍ୟେ କେହ୍ନେ ଭଜିବେ ବିଳୟ
ଭାବି ଏହା ସୁରଗୁରୁ ଚିନ୍ତାକଲେ ହରି
ଜାଣି ଗୁରୁ ଆଗେ ଉଭା ହେଲେ ଚକ୍ରଧାରୀ
ମାୟା ମୋହର ଆକାର ପ୍ରଭୁ ଜନାର୍ଦ୍ଦନ
ଜ୍ଞାତହୋଇ ଗୁରୁଙ୍କର ସେକାଳ କଷଣ
ନିଜ ଅଙ୍ଗୁ ଜାତକରି ମାୟା ମୋହ ରାଶି
ଦୈତ୍ୟ ନାଶ ପାଇଁ ଦେଲେ ଗୁରୁପାଶେ ପେଷି
ସେହି ମାୟା ମୋହ ଭୀଷ୍ଟ ଅଟଇ ଭୀଷଣ
କ୍ଷଣକେ ସେ ମୋହିପାରେ ଅସୁରଙ୍କ ମନ
କହିଲେ ତାହାଙ୍କୁ ତୁମେ ଗୁରୁପାଶେ ଯିବ
ବେଦମାର୍ଗ ବିରହିତ ଦୈତ୍ୟଙ୍କୁ ମୋହିବ
କହି ଏହିପରି ପ୍ରଭୁ ହେଲେ ଅନ୍ତର୍ହିତ
ତାପରେ ଯା ହେଲା ଶୁଣ ଶାନ୍ତନୁଙ୍କ ସୁତ
ବିଷ୍ଣୁ ପ୍ରାଶୁ ମାୟା ମୋହ ହେଇଣ ପ୍ରାପତ
ଗଲେ ଗୁରୁ ଦୈତ୍ୟେ ଯହିଁ ତପେ ଥିଲେରତ
କହିଲେ ତୁମର ଭକ୍ତିଭାବରେ ପ୍ରସନ୍ନ
ହୋଇଛନ୍ତି ଶିବ ଦେଖ ଦିତି ସୁତଗଣ
ନେତ୍ରଖୋଲି ଦେଖ ସର୍ବେ ନିଜ ସମ୍ମୁଖରେ
ଯୋଗୀ ଦିଗମ୍ବର ମୁଣ୍ଡମାଳା ଶୋହେଉରେ
ଗୁରୁଙ୍କ ବଚନ ପରେ ବିଷ୍ଣୁ ମୋହ ମାୟା
କହିଲେ ଯୋଗୀ ରୂପରେ ବିସ୍ତାରିଣ କାୟା
ଆଚରୁଛ ତପ ତୁମେ ଆହେ ଦୈତ୍ୟଗଣ
କହ ଏବେ ତୁମର ଏ ତପସ୍ୟା କାରଣ
ଇଚ୍ଛାକଲେ ତପ ଫଳ ଏ ଦେହେ ପାଇବ
ଇଚ୍ଛିଲେ ପରଲୋକକୁ ସଞ୍ଚିତ ରହିବ
ରଖ ମୋର କଥା ଯେବେ ମୁକ୍ତି ଇଚ୍ଛାକର
ଅହିତ ଅଟେ କଥିତ ଯେତେ ମୁକ୍ତିଦ୍ୱାର
ଧର୍ମଛଡ଼ା ଲୋକଙ୍କର ଯୋଗ୍ୟ ଅଟେ ଏହି
କହିବାକୁ ଏଥି ଆଉ କଥା କିଛି ନାହିଁ
ଘରେ ବସିଥିଲେ ସ୍ୱର୍ଗ ମୁକତି ମିଳିବ
କପଟୀ ଯୋଗୀ କହିଲେ ଏହା ବହି ଭାବ
ଅସୁରେ ବେଦ ବିଦିତ ମୁକତି ଦୁଆର
ବିଷ୍ଣୁ ମାୟା ମୋହ ବଶୁ ଭୀଷ୍ମ କଲେ ଦୂର
ସତ୍ୟାହାଧର୍ମ ତାହା ଅଧର୍ମ ଅସତ
ବିମୁକ୍ତ ନିମନ୍ତେ ଏହା ମୁକ୍ତି ପ୍ରଦାୟକ
ପରମାର୍ଥ ଏହା କିନ୍ତୁ ଅତ୍ୟଧିକ ନୁହେଁ
କାର୍ଯ୍ୟ ଏହା ଅକାର୍ଯ୍ୟରେ ମଧ୍ୟ ଗଣାଯାଏ
ସଂପୂର୍ଣ୍ଣରେ ଏହି କଥା ହୋଇଛି ପ୍ରକାଶ
ଦିଗମ୍ବର ଯିଏ ତାର ଧର୍ମ ଏ ଅବଶ୍ୟ

ତାହାପକ୍ଷେ ଏହି ମଧ୍ୟ ଅଟଇ ଧାରଣ
ସର୍ବଦା ଯେ କରେ ବହୁ ବସ୍ତ୍ର ପରିଧାନ
ଏପରି ଅନେକ ବାଦ କହିଲେ ବତାଇ
ବିଷ୍ଣୁଙ୍କ ପ୍ରେରିତ ସେହି ମାୟା ମୋହ ଦୁଇ
ଶୁଣଭୀଷ୍ମ ଫଳେସବୁଦୈତ୍ୟେ ଗୋଟିହେଲେ
ସମସ୍ତ ପ୍ରକାରେ ନିଜ ଧର୍ମ ଭୋଗକଲେ
କହିଲେ ଅସୁରେ କହିଛନ୍ତି ଯୋଗୀବର
ଆମର ଧର୍ମ କେବଳ ଅଟେ ଅହଂକାର
ଯେଉଁମାନେ ଭୀଷ୍ମ ଏହି ଧର୍ମ ଆଶ୍ରାକଲେ
ଆର୍ହତ ରୂପେ ବିଶ୍ୱରେ ପରିଚିତ ହେଲେ
ବିଷ୍ଣୁ ମାୟା ମୋହ ଦ୍ୱାରା ହୋଇ ପ୍ରଭାବିତ
ତ୍ୟାଗକଲେ ବେଦତ୍ରୟୀ ସମ୍ବଳିତ ପଥ
ଅସୁର ଅଖଣ୍ଡ ଭାବେ ହୋଇଲେ ଅସୁର
ହେ ଭୀଷ୍ମ ଏଥିରେ ତିଳେ ସଂଦେହ ନଧର
ଏମାନଙ୍କ ପ୍ରଭାବରେ ଚକ୍ଷୁହୀନ ଜନ
ଅନ୍ଧ ହୋଇ କଲା ମଧ୍ୟ ସେ ପଥେ ଗମନ
ଜଣେ ଅନ୍ୟଠାରୁ ଶୁଣି ଏପରି କ୍ରମରେ
ବ୍ୟାପିଗଲା ଭୀଷ୍ମ ତାହା ଦୈତ୍ୟ ମଣ୍ଡଳରେ
ସମସ୍ତ ରାକ୍ଷସ ହୋଇଗଲେ ସ୍ମିତବାଦୀ
ଅର୍ହଙ୍କୁ ନମିଲେ ସର୍ବେ ହୋଇ ନିର୍ବିବାଦୀ
ତା ମଧ୍ୟରୁ ହୋଇଗଲେ କେତେ ରକ୍ତାମ୍ବର
ଅନ୍ୟପାଶେ କଲେ ଯାଇ ସେ ଧର୍ମ ପ୍ରଚାର
ଅତି ସୁମଧୁର କହୁଥିଲେ ଯେଉଁବାଣୀ
ଏଥିରେ ଲଭିବ ସ୍ୱର୍ଗବାସ ଥାଅ ଜାଣି
ନହେଲେ ଏଠାରେ ମୃତ୍ୟୁ ଦୁଃଖ ଭୋଗହେବ
ନିର୍ବାଣ ଇଚ୍ଛିଲେ ଆମ କଥା ମାନିନେବ
ଯଜ୍ଞ ନାମେ ପଶୁ ଘାତ ଆଉ କେ ନକର
ଆମ ଏହି କଥା ବୁଝି ହୃଦୟରେ ଧର
ବିଶେଷଜ୍ଞାନ ଏଥିରେ ହୋଇଅଛି ପୂର୍ଣ୍ଣ
ତେଣୁ ଜାଣ ଏହାନାମ ହୋଇଛି ବିଜ୍ଞାନ
ବୁଦ୍ଧି ସେମାନଙ୍କ ମଧ୍ୟେ ଯେଉଁ କେତେଥିଲେ
ଶୁଣ ଭୀଷ୍ମ ସେହିମାନେ ଏପରି କହିଲେ
ଯେଉଁ ଆଧାର ଉପରେ ରହିଛି ଜଗତ
ହୋଇଅଛି ତାହା ଭ୍ରାନ୍ତି ଜ୍ଞାନର ପୂରିତ
ଦୂଷିତ ହୋଇଛି ରାଗ ଦ୍ୱେଷ ଇତ୍ୟାଦିରେ
ଭ୍ରମେ ଆତ୍ମା ଏଥି ପଡ଼େ ମହା ସଂକଟରେ

ଯୁକ୍ତିରେ ଯୁକ୍ତ ଏପରି ବହୁତ ବଚନ
କହିବାରୀତି ଅଟଇ ଅଖଣ୍ଡ ନୂତନ
ଯା ଶୁଣି ଚଞ୍ଚଳ ଧର୍ମ ତ୍ୟାଗୀ ହେବ ନର
କହିଲେ ସେମାନେ ବାଣୀ ଅତୀବ ମଧୁର
କେତେଥିଲେ ତା ମଧ୍ୟରେ ବେଦର ନିନ୍ଦକ
ଦେବଙ୍କର ନିନ୍ଦା ବାଢୁଥିଲେ କେତେଲୋକ
ଯଜ୍ଞ ନିନ୍ଦା ମଧ୍ୟ ତହୁଁ ଥୋକେ କରୁଥିଲେ
କେତେହେଁ ସଦା ଦ୍ୱିଜଙ୍କଦୋଷ ଦ୍ରଷ୍ଟହେଲେ
ବାଢୁଥିଲେ ଯୁକ୍ତି ଯଜ୍ଞେ ଯେ କରନ୍ତି ହିଂସା
ଧାର୍ମିକ ବୋଲି ସେ କିପାଁ ଲଭିବ ପ୍ରଶଂସା
ଯଜ୍ଞେ ବଧ ପ୍ରାଣୀ ମାଂସେ ତୃପ୍ତିଯାର ହେବ
ସେ କିପାଁ ପିତାକୁ ଯଜ୍ଞେ ଆହୂତି ନ ଦେବ
ପିତୃଯେବେ ତୃପ୍ତ ହେବେ ଅନ୍ୟର ମୁଖରେ
ତୃପ୍ତ କି ନୋହିବ ଲୋକ ରହି ପ୍ରବାସରେ
ବହୁ ଯଜ୍ଞ କଲେ ଯହିଁ ଇନ୍ଦ୍ରିତ୍ୱ ମିଳଇ
ଇନ୍ଦ୍ର ଭୋଗ କରୁଅଛି ସ୍ୱର୍ଗ ସେଥିପାଇଁ
ଶମୀ ଆଦି ଯଦି ଶ୍ରେଷ୍ଠ କାଷ୍ଠେ ଧରାଯିବ
ପତ୍ର ଭୋଜ୍ୟ ପଶୁ କିପାଁ ଉତ୍କୃଷ୍ଟ ନୋହିବ
ମୋ କହିବା କଥା ଯଦି ଅଟେ ରୁଚିକର
ଏବେ ମୋ କହିବାକଥା ଘେନ ରକ୍ଷେଶ୍ୱର
ମୁଁ କହିଲି ବୋଲି ଏଥି ନଦେଇ ଗୌରବ
ଯୁକ୍ତି ଯୁକ୍ତ ଯଦି ତେବେ ନିଶ୍ଚେ ଆଚରିବ
ଏ ବାକ୍ୟରେ ରକ୍ଷେ ହୋଇ ଆନନ୍ଦେ ବିଭୋର
ଭକ୍ତିଭରେ ଚରଣରେ କରି ନମସ୍କାର
କହିଲେ ହେ ଗୁରୁ ତୁମେ ଅତ୍ୟନ୍ତ ପଣ୍ଡିତ
ତୁମ ତବ ବାଦେ ଆମ୍ଭେ ସର୍ବେ ସହମତ
ଆମଠରେ ଯେବେ ଗୁରୁ ହେଉଛ ପ୍ରସନ୍ନ
ଏହିମାତ୍ର ଅନୁଗ୍ରହ କରନ୍ତୁ ଆପଣ
ଆଜି ତୁମଠାରୁ ଦୀକ୍ଷା କରିବୁ ଗ୍ରହଣ
ଆଣିବୁ ଯା ଲୋଡ଼ା ତାହା କରନ୍ତୁ ବହନ
ଆପଣଙ୍କ ପ୍ରସାଦରୁ ହେବ ଏହି ଫଳ
ଆମ ହାତେ ମୋକ୍ଷ ଆସି ପଡ଼ିବ ତତ୍କାଳ
ଗୁରୁଙ୍କ କହିବାପରେ ମାୟା ମୋହ ଥିଲେ
ଅସୁର ରୂପେ ଗୁରୁଙ୍କୁ ଏକଥା କହିଲେ
ମୁଁ ମାନିବି ନିଶ୍ଚୟରେ ଗୁରୁଙ୍କ ଶାସନ
ଶ୍ରେଷ୍ଠବୁଦ୍ଧି ଗୁରୁ ଆଶ୍ରା ତାଙ୍କ ଶ୍ରୀଚରଣ

ପ୍ରାର୍ଥନା କରିବି ସର୍ବେ ଦୀକ୍ଷା ଦେବେ ସେହି
ତାଙ୍କଠାରୁ ଶ୍ରେଷ୍ଠ କେହି ତିନିପୁରେ ନାହିଁ
କହି ଏହା ପରେ ଦୈତ୍ୟଗଣେ ମୋହକଲେ
ତୂଷ୍ଣ ମୁଁ ଗୁରୁ ଶାସନେ ପ୍ରଥମେ କହିଲେ
ଶ୍ରେଷ୍ଠ ମୋର ଗୁରୁଙ୍କର କମଳ ଚରଣ
ସେହି ପାଦେ ପ୍ରଭୁ ମୋର ଏହି ନିବେଦନ
ଏହି ମୋର ପୁତ୍ରଗଣେ ତୁମର କିଙ୍କର
ସର୍ବେ ଆଜି ଦୟାବହି ଦୀକ୍ଷା ଦାନକର
କହି ଏହା ମାୟା ମୋହ ହେଲେ ଅନ୍ତର୍ହିତ
ତାପରେ ସମସ୍ତ ଦୈତ୍ୟ ହୋଇ ଏକତ୍ରୀତ
ଶୁକ୍ରବେଶୀ ଅଙ୍ଗୀରାଙ୍କ ସୁତ ପାଦେ ନମି
କହିଲେ ଆମକୁ ଭବୁ ପାରିକର ସ୍ୱାମୀ
ଯେପରି ଏ ଭବୁ ସର୍ବେ ହୋଇଯିବୁ ପାର
ଆମ୍ଭଙ୍କୁ ସେପରି ଦୀକ୍ଷା ପ୍ରଭୁ ଦାନକର
ଛଦ୍ମବେଶୀ ଶୁକ୍ର ତେବେ କହିଲେ ତା ଶୁଣି
ନର୍ମଦା ତଟକୁ ସର୍ବେ ଚାଲ ଏହିକ୍ଷଣି
ମନ୍ତ୍ରଦେବି ସର୍ବେ ଏବେ ହୁଅ ଦିଗମ୍ବର
ତା ନହେଲେ ନମିଳିବ ଫଳ ଏ ମନ୍ତ୍ରର
ଏହି ଭାବେ ଶୁକ୍ରବେଶୀ ଅଙ୍ଗୀରାଙ୍କବଳା
କରାଇଲେ ଭୀଷ୍ମ ସବୁ ଦୈତ୍ୟଙ୍କୁ ଲଙ୍ଗଳା
ମୟୂର ପିଛ ସହିତ ମାଳି କାଇଁଚର
ପ୍ରତ୍ୟେକଙ୍କୁ ଦେଲେ ଗୁରୁ ହୋଇ ହର୍ଷଭର
ସମସ୍ତଙ୍କୁ କରାଇଲେ ତାପରେ ମୁଣ୍ଡନ
ତୁଟି ଯାହାଥିଲା ତାକୁ କଲେ ଉତ୍ପାଟନ
କହିଲେ ପରମଧର୍ମ ଏ ଅଟେ ତୁମର
ଜାଣ ଏହା ଅଟେ ତୁମ ମୋକ୍ଷର ଦୁଆର
ତୁମେ ଯେଉଁ କୁବେରକୁ ଜାଣିଛ ସଂପ୍ରତି
ଏପରି କରି ସେ ହୋଇଛନ୍ତି ଧନପତି
ଅର୍ହ ଏହିପରି କରି ନିତ୍ୟବ ଲଭିଲେ
ନିଯେ ସେ ସ୍ୱମୁଖେ ଏହା ମତେ କହିଥିଲେ
କରିବ ଏଠାରେ ଯେହୁ କେଶ ଉତ୍ପାଟନ
ଦେବତ୍ୱ ହୋଇବ ପ୍ରାପ୍ତି ତାହାକୁ ବହନ
ଏହିପରି କରି ଯେବେ ପୁଣ୍ୟ ପ୍ରାପ୍ତ ହେବା
ତେବେ ଏ ସାମାନ୍ୟ କଥା କିପାଁ ନକରିବା
ସଂସାରେ ମନୁଷ୍ୟ ହୋଇ ଦେବ ମନୋରଥ
କେ କରିଛି ଶୁଣିଥିଲେ ସେକଥା କହତ

ଦେବଙ୍କ ଏ ମନୋରଥ ଭାରତବର୍ଷରେ
କିପରି ହୁଅନ୍ତେ ଜନ୍ମ ଶ୍ରାବକ କୂଳରେ
ସମୟରେ ସବୁ କେଶ କରି ଉତ୍ପାଟନ
ହୁଅନ୍ତୁ କିପରି ସଦା ତପସ୍ୟା ମଗନ
ଏହିପରି କରି ଚତୁର୍ବିଂଶ ତୀର୍ଥଙ୍କର
ପୁରସ୍କୃତ ହୋଇଥିଲେ ବୋଲି ମନେକର
ମନ୍ତ୍ରନେଇ ଅର୍ହଙ୍କୁ ଯେ ନମସ୍କାର କରେ
ସେହିକ୍ଷଣି ସେହି ଚାଲିଯାଏ ସ୍ୱର୍ଗପୁରେ
ଅଥବା ମୋକ୍ଷ ସେକ୍ଷଣି ହୁଅଇ ପ୍ରପାତ
ଏଥିରେ ସଂଦେହ କିଛି ନାହିଁ ଦିତିସୁତ
ବିଚାରିବାକୁ ଏଥିରେ ହେତୁ କିଛି ନାହିଁ
ଆବଶ୍ୟକତା ଏହାର ଏଥି ଅଛି ରହି
ପଞ୍ଚାଙ୍ଗ ମନ୍ତ୍ର ଜପରେ ସୂର୍ଯ୍ୟାଗ୍ନି ପ୍ରକାର
ବିରାଗୀ ଅମର୍ଷୀ ହୋଇ ହେବ ତେଜସ୍କର
ଏପରି ଯେ ତପକରେ କଷ୍ଟଜୀବି ହୁଏ
ପାଷାଣେ ପିଟିଲେ ମୁଣ୍ଡ ମୃତ୍ୟୁ ତାର ନୁହେ
ଜନଶୂନ୍ୟ କାନନରେ କରେ କେବେ ବାସ
ଶ୍ରାବକ ପରାୟେ ଜପ କରେ ଅହର୍ନିଶ
ତା ଶୁଣି କହିଲେ ଶେଷେ ଦାନବ ନିକର
ହେ ଗୁରୁମୋକ୍ଷ ପଦରେ ତୁମଅଧୀକାର
ପୁନରାବୃତ୍ତି ହୋଇବ ତୁମେ ଯେବେ ଯିବ
ସେଥିପାଇଁ କିପାଁ ତାହା କରିବା ହୋଇବ
ସଂସାର ଧ୍ୱଂସ କାରକ ତୁମେ ମୋକ୍ଷପଦ
ତୁମକୁ କି ଅଛି ପ୍ରଭୁ ସଂସାର ବିପଦ
ଆହେ ଭୀଷ୍ମ ତଦପରେ ଗୁରୁ ସୁରଙ୍କର
ଅନ୍ତର୍ହିତହେଲେ କରେ ନହୋଇ ଗୋଚର
ପ୍ରବେଶ ହୋଇଲେ ଯାଇ ଅମରାବତୀରେ
ଯା କରିଥିଲେ କହିଲେ ଦେବଙ୍କ ଆଗରେ
ଦାନବ ଅସୁର ତେବେ ଯେତେ ଯାଇଥିଲେ
ନର୍ମଦା ନଦୀର କୂଳେ ସେଦିନୁ ରହିଲେ
ପ୍ରହ୍ଲାଦ ବ୍ୟତୀତ ଭୀଷ୍ମ ଦୈତ୍ୟ ଯେତେଥିଲେ
ଇନ୍ଦ୍ର ତାହାଙ୍କୁ ନର୍ମଦା କୂଳରେ ଦେଖିଲେ
ଦେଖି ତାଙ୍କୁ ଶଚୀପତି ହୋଇଲେ ପ୍ରସନ୍ନ
ଗୁରୁଙ୍କ କରଣୀଭାବି କଲେ ଧନ୍ୟ ଧନ୍ୟ
ତା ମଧ୍ୟେ ଥିଲେ ନମୁଚି ଦୈତ୍ୟ ଯଜ୍ଞହନ୍ତା
ଧନପତି ଯାର ଥାଏ ସର୍ବଦା ଅହନ୍ତା

ବେଦର ନିନ୍ଦୁକ ହିରଣାକ୍ଷ ଥିଲା ତହିଁ
ଧର୍ମଘ୍ନ, ପ୍ରଧସ ତଥା ବାଣ ଥିଲା-ରହି
ଶୁଚି ବିରୋଚନ ସହ ମହିଷାକ୍ଷ ଥିଲେ
ବାଷ୍କଳ ପ୍ରଚଣ୍ଡ ଚଣ୍ଡ-ମଘବା ଦେଖିଲେ
କହିଲେ ତାହାକୁ ତେବେ ଦେବ ଶଚୀସାଇଁ
ଆମ୍ଭ ପୂର୍ବରୁ ଉତ୍ପନ୍ନ ତୁମ୍ଭେ ଅଛ ହୋଇ
ସ୍ୱର୍ଗ ରାଜ୍ୟ ଥିଲା ତୁମ ଶାସନ ଅଧୀନ
ଏବେ କେଉଁପରି ହୋଇଗଲ ଧର୍ମହୀନ
କଲ ବେଦ ଧର୍ମ ବ୍ରତ ବିରୋଧୀ ଚରଣ
ତୁମର ଏ ତପସ୍ୟାର ଅଟେ କି କାରଣ
କେକୀପୁଚ୍ଛ ଧାରୀ କିପାଁ ଏଥି ଛନ୍ତି ରହି
ତାହାର କାରଣ କହ ପଚାରୁଛି ମୁହିଁ
ଦାନବେ କହିଲେ ଶୁଣି ବାଣୀ ଇନ୍ଦ୍ରଙ୍କର
ଲୋପହୋଇଛି ଅସୁର ଭାବଟି ଆମର
ଋଷିଧର୍ମେ ସର୍ବେ ଏବେ ହୋଇଅଛୁ ସ୍ଥିତ
ପଚାରିବାରୁ କହୁଛୁ ଆହେ ପୁରୁହୂତ
ସବୁଲୋକ ସବୁଜନ୍ତୁ ସବୁ ଧର୍ମ ଠାରେ
ସମବୁଦ୍ଧି ହେବ ଆମ୍ଭ ଏହି ସାଧନାରେ
ଆପଣ କରନ୍ତୁ ଭୋଗ ସୁଖରେ ତ୍ରିଲୋକ
ଯାଆନ୍ତୁ ଏଠାରୁ ଆଉ ନକହି ଅଧିକ
ହେଉ କରିବା ସେପରି କହି ପୁରନ୍ଦର
ସେହିକ୍ଷଣି ସେଠାବରୁ ଗଲେ ସ୍ୱର୍ଗପୁର
ଶୁଣ ଶାନ୍ତନୁକପୁର କୁରୁକୂଳ କୀର୍ତ୍ତୀ
ଏହିପରି ସୁରାଚାର୍ଯ୍ୟ ଦେବ ବୃହସ୍ପତୀ
କରାଇଣ ଅସୁରଙ୍କୁ ଏସନେ ମୋହିତ
ନର୍ମଦା ନଦୀ କୂଳରେ କରିଥିଲେ ସ୍ଥିତ
ରକ୍ଷଗୁରୁ ଶୁକ୍ରାଚାର୍ଯ୍ୟ ସେକଥା ଜାଣିଲେ
ପୂର୍ବରୁ ବୃତାନ୍ତ ତାଙ୍କ ଆଗରେ କହିଲେ
ଶୁଣି ତାହାଙ୍କର ସବୁକଥା ଦୈତ୍ୟଗଣ
ପୁଣି ପୂର୍ବପରି କଲେ କୂର ଆଚରଣ
ଏଠାରେ ଶେଷ ହୋଇଲା ଅଧ୍ୟାୟ ସପ୍ତମ
ସବୁପୁରାଣରେ ଶ୍ରେଷ୍ଠ ଶ୍ରୀ ପଦ୍ମପୁରାଣ
ଏ ଚରିତ ବୁଝିବାର ଅତି କଷ୍ଟକର
ଥିଲେ ଦୋଷ ଗୋପୀନାଥେ ସୁଧୀ କ୍ଷମାକର

ଇତି ଶ୍ରୀ ପଦ୍ମପୁରାଣେ
ସୃଷ୍ଟିଅନ୍ତେ ଭୀଷ୍ମ ପୁଲସ୍ତ୍ୟ ସଂବାଦେ
ଶ୍ରେଷ୍ଠବଂଶ ବିସ୍ତାର ବର୍ଣ୍ଣନୋ ନାମ
ସପ୍ତମୋଧ୍ୟାୟ

❑

## ଅଷ୍ଟମ ଅଧ୍ୟାୟ

### କର୍ଣ୍ଣାର୍ଜୁନଙ୍କ ଉତ୍ପତ୍ତି ଓ ବୈରତାର ବିବରଣ

ପଚାରିଲେ ସ୍ନେହେ କୁରୁକୁଳ ପିତାମହ
ହେ ପୁଲସ୍ତ୍ୟ ଋଷି ମୋରେ ଦୟାବହି କହ
ଶତ୍ରୁକୁଳର ନିହନ୍ତା ବୀର ଅରଜୁନ
କେଉଁପରି ଇନ୍ଦ୍ରଙ୍କର ହୋଇଲେ ନନ୍ଦନ
କାନୀନ ବୋଲି କାହିଁକି କର୍ଣ୍ଣ ନାମ ହେଲା
ପୁଣି ସୂତପୁତ୍ର ସେହି କିପରି ହୋଇଲା
ଶତ୍ରୁତା କାହିଁକି ହେଲା ଏହି ଦୁହିଁଙ୍କର
ତାହାସବୁ ସବିସ୍ତାରେ ହେ ଋଷିବର
କାରଣ ଏହି କଥାର ଜାଣିବା ନିମିତ୍ତ
କୌତୁହଳ ମୋର ହୃଦେ ବଢ଼ିଛି ବହୁତ
ଭାବେ ଯୋଗ୍ୟ ତୁମଠାରୁ ଆଉ କେହି ନାହିଁ
ମୋତେ ଏହି ବିଷୟରେ ବୋଧ ଦେବାପାଇଁ
ଋଷିଙ୍କେ ଶ୍ରେଷ୍ଠ ପୁଲସ୍ତ୍ୟଭୀଷ୍ମଙ୍କ ପ୍ରଶ୍ନରେ
ଦେଲେ ଯେ ଉତ୍ତର ତାହା ଶୁଣ ସୁଚିତ୍ତରେ
ପୂର୍ବେ ଛିଡ଼ନ୍ତେ କପାଳ କ୍ରୋଧେ ବ୍ରହ୍ମାଙ୍କର
ଲଲାଟ ପଟ ବହିଲା ସ୍ୱେଦ ଝରଝର
ସେହି ସ୍ୱେଦ ଜଳ ପୃଥ୍ୱୀ ବକ୍ଷରେ ଧଇଲା
ତେଣୁ ସବୁ ସ୍ୱେଦ ବିନ୍ଦୁ ଏକାଠି ରହିଲା
କୁଣ୍ଡଳୀ ପରାଏ ହେଲା ଆକାର ତାହାର
ଜନ୍ମିଲା ତହିଁରୁ ମାହେସ୍ୱଧି ଧନୁର୍ଦ୍ଧର
ସହସ୍ର କବଚରେ ସେ ହୋଇଣ ଆବୃତ
ମୋ କହିବାରୁ ଜାଣହେ ଗଙ୍ଗାଦେବୀ ସୁତ
ଜନ୍ମ ହୋଇ ସେହି ସୁତ ବ୍ରହ୍ମାମୁଖ ଚାହିଁ
କହିଲା କହ ତାଏବେ କି କରିବି ମୁହିଁ
ତୁରନ୍ତ ଏହି ଦୁଷ୍ଟକୁ ତୁହି ନାଶକର
ଶିବଙ୍କୁ ଦେଖାଇ କହିଦେଲେ ବେଦବର
ମାରିବୁ ଏପରି ଯଥା ପୁଣି ନ ଉଠିବ
ଜଗତରୁ ଶିବ ନାମ ଆଜୁ ଲୋପହେବ ।

ବ୍ରହ୍ମାଙ୍କର ଆଦେଶରେ କରେ ଧନୁ ଧରି
ଧାଇଁଗଲେ ସେହି ଶିବ ପୃଷ୍ଠ ଅନୁସରି
ଭୀଷଣ ସ୍ୱରୂପ ତାର ହାତେ ଶାଣବାଣ
ତା ଦେଖି ପ୍ରାଣ ଭୟରେ ଧାଇଁଲେ ଈଶାନ
ଯେବେ ଆବ କେବେ ପୃଷ୍ଠେ ଦିଅନ୍ତି ସେ ଚହିଁ
ଦେଖନ୍ତି ସେହି ପୁରୁଷ ଆସୁଛି ଗୋଡ଼ାଇ
ଅତିଶୟ ଭୟ ପାଇ ଦେବ ତ୍ରିଲୋଚନ
ପ୍ରବେଶ ହୋଇଲେ ଯାଇ ବୈକୁଣ୍ଠଭୁବନ
ବିଷ୍ଣୁଙ୍କ ସମୀପେ ଯାଇ ହୋଇଲେ ପ୍ରବେଶ
ଶ୍ରମ ହେତୁ ଖର ହୋଇ ବହୁଥିଲା ଶ୍ୱାସ
କହିଲେ ରକ୍ଷାକରନ୍ତୁ ମୋତେ ଶ୍ରତୁହାରି
ବ୍ରହ୍ମାକୃତ ଏହି ମ୍ଳେଚ୍ଛ ଦେବ ମୋତେ ସାରି
ସେହି ମ୍ଳେଚ୍ଛ ଅଟେ ପ୍ରଭୁ ଅତି ଭୟଙ୍କର
ପର୍ବତ ଆକାର ଦିଶେ ତାର କଳେବର
କର ଏବେ ରକ୍ଷା ମୋତେ ହେ ଜଗତପତି
ତୁମ ବିନା ତିନିପୁରେ ନାହିଁ କେ ମୋ ଗତି
ମାରିବ ମୋତେ ସେ ପ୍ରଭୁ ଧାଇଁଛି ପଛରେ
ନବର୍ତ୍ତୀ ନ ଯିବ ମୋତେ ନମାରି ପ୍ରାଣରେ
ଶୁଣି ବିଷ୍ଣୁ ଶିବଙ୍କର କରୁଣ ଚିତ୍କାର
ପ୍ରକାଶ ସେ କଲେ ଏକ ଭୀଷଣ ହୁଂକାର
ସେ ହୁଁ କାର ଶବ୍ଦେମ୍ଳେଚ୍ଛ ହୋଇଲା ମୋହିତ
ମନେରଖିଥିବ ଏହା ଗଙ୍ଗ ଦେବୀସୁତ
ଯୋଗସ୍ୱରୂପ ଯେ ସବୁ ପ୍ରାଣୀ ଅଗୋଚର
ରଚକ ଅଟନ୍ତି ଯେହୁ ସମସ୍ତ ବିଶ୍ୱର
ଭୀତ ବିରୂପାକ୍ଷଙ୍କୁ ସେ ପ୍ରବୋଧ ବାକ୍ୟରେ
କରାଇଲେ ଶାନ୍ତ ଭୀଷ୍ମ ଜାଣ ସେ କାଳରେ
ପ୍ରଣତ ହୋଇଣ ଶିବ ଥିଲେ ଭୂମୀପରେ
ନିରେଖିଲେ ଶଙ୍ଖଚକ୍ରଧାରୀ ତା ନେତ୍ରରେ
କହିଲେ ତୁମ୍ଭେ ଶଙ୍କର ଅଟ ମୋର ନାତି
ତୁମ କାମନା ପୂରଣେ ବଳିଛି ମୋ ମତି
ତବ କେଉଁ କାମନା ମୁଁ କରିବି ପୂରଣ
ପରେ କହନ୍ତୁ ତାହା ଦେବ ତ୍ରିନୟନ
ଶୁଣି ନାରାୟଣଙ୍କର ବଚନ ମଧୁର
ଦେବା ହେଉ ଭିକ୍ଷା ମୋତେ କହିଲେ ଶଙ୍କର
ବିଷ୍ଣୁଙ୍କ ଭିକ୍ଷା ଗ୍ରହଣେ କରିଣ ପ୍ରୟାସ
କପାଳ ପାତ୍ର ଦେଖାଇ ଦେଲେ ଗିରିବାସ

ସେକାଳେ ଶଙ୍କର ତେଜ ଏପରି ଦିଶିଲା
ବାଡ଼ାବଗ୍ନି ଅବା ତାଙ୍କ ଅଙ୍ଗେ ଜଳୁଥିଲା
ବ୍ରହ୍ମ କପାଳକୁ ବିଷ୍ଣୁ ହାତରେ ଧଇଲେ
ଭିକ୍ଷାଗ୍ରହଣ ଯୋଗ୍ୟ ଏ ଚିତ୍ତେ ଚିନ୍ତାକଲେ
ଏହାଙ୍କ ସମାନ ଭିକ୍ଷୁ କେ ଅଛି ଜଗତେ
ମୋହର ପ୍ରଦତ୍ତ ଭିକ୍ଷା ଗ୍ରହଣ ନିମନ୍ତେ
ଉତ୍ତମ ଭିକାରୀ ମିଳିଅଛି ଦାନ ପାଇଁ
ଏ ସଂକଳ୍ପ କରି ମନେ କମଳାଙ୍କ ସାଇଁ
ନିଜ ଦକ୍ଷ ଭୂଜ ତାଙ୍କୁ କରିଲେ ପ୍ରଦାନ
ଶୂଳେ ଶଶିଧର ତାକୁ କଲେ ବିଭେଦନ
ଶୂଳାଘାତ ଯେବେ ବିଷ୍ଣୁ ଭୁଜରେ ହୋଇଲା
ଶୋଣିତର ଧାର ଭୀଷ୍ମ ତହୁଁ ଜାତହେଲା
ଜମ୍ବୁନଦ ରସ ସମ ସେହି ରକ୍ତ ଧାର
ଦେଖାଗଲା ଜ୍ୱାଳାମୟି ବହ୍ନିର ଆକାର
ଶମ୍ଭୁ ପ୍ରଦତ୍ତ କପାଳ ରକ୍ତେ ପୂର୍ଣ୍ଣହେଲା
ରୁଜୁ ହୋଇ ସେ ପାତ୍ରରେ ଜମାଟ ବାନ୍ଧିଲା
ବେଗଶାଳୀ ଥିଲା ସେହି ରକତର ଧାରା
ଆକାଶ ସ୍ପର୍ଶ ନିମନ୍ତେ ଧାଇଁଥିଲା ପରା
ସେ ଧାରର ଦୀର୍ଘ ଥିଲା ପଚଶ ଯୋଜନ
ବିସ୍ତାର ଦଶ ଯୋଜନ ବୋଲି ମନେଘେନ
ସହସ୍ର ଦିବ୍ୟବରଷ ଯାଏଁ ସେ ଶୋଣିତ
ପ୍ରବାହିତ ହେଲା ବିଷ୍ଣୁ ଭୁଜୁ ହୋଇ ଜାତ
ଭିକ୍ଷୁକ ଶିବ ସେ ଭିକ୍ଷା କରିଣ ଗ୍ରହଣ
କପାଳ ପାତ୍ରେ ଯା ଦେଇଥିଲେ ନାରାୟଣ
ତଦପରେ ନାରାୟଣ କହିଲେ ଶଙ୍କରେ
ପୂର୍ଣ୍ଣ କି ଅପୂର୍ଣ୍ଣ ପାତ୍ର ଦେଖି ନିଅ ଥରେ
ଜଳଦଗମ୍ଭୀର ସମଥିଲା ସେ ବଚନ
ଅତି ଆଦରରେ ତାହା ଧଇଲେ ଈଶାନ
ଚନ୍ଦ୍ରମୌଳୀ ଶଶି ସୂର୍ଯ୍ୟ ପାବକ ନୟନ
ତେବେ ଶ୍ରୀହରିଙ୍କୁ ଚହିଁ ହୋଇଗଲେ ଧନ୍ୟ
ସେହି ତିନି ନେତ୍ରେ ଥରେ କପାଳେ ଚହିଁଲେ
ପୂର୍ଣ୍ଣହେବ ସଂକେତ ସେ ଅଙ୍ଗୁଳିରେ ଦେଲେ
ଶିବଙ୍କ ସେ ବାଣୀ ଶୁଣି ଦେବ ଲକ୍ଷ୍ମୀବର
ବନ୍ଦକରିଦେଲେ ତେବେ ରକତର ଧାର
ଦେଖୁଥିଲେ ଲକ୍ଷ୍ମୀପତି ତେବେ ଶୂଳପାଣି
ଅଙ୍ଗୁଳିରେ ସେ ରକ୍ତକୁ ମନ୍ଥିଲେ ସେକ୍ଷଣି

ସହସ୍ର ଦିବ୍ୟ ବରଷ ମନ୍ଥନର ପରେ
ପାତ୍ରସ୍ଥ ରକ୍ତ ଦିଶିଲା ବୁଦ୍‌ବୁଦ୍ ଆକାରେ
ତଦପରେ ଶୁଣ ଭୀଷ୍ମ ଯେପରି ହୋଇଲା
କିରୀଟ ଧନୁ ଆକାର ବୁଦ୍‌ବୁଦ ଧଇଲା
ଦୁଇଟି ତୁଣୀର ସେହି କପାଳୁ ଜନ୍ମିଲା
କୃଷସ୍କନ୍ଦ ପୁଂସ ଅଙ୍ଗେ ସବୁ ଶୋଭୁଥିଲା
ଦେଖି ତାକୁ ବିଷ୍ଣୁ ଶିବେ କହିଲେ ବଚନ
କପାଳୁ ସଂଜାତ ନରେ ଦେଖ ତ୍ରିଲୋଚନ
ବିଷ୍ଣୁଙ୍କର ଶୁଣି ସେହି ବୀଣାଜିଣା ବାଣୀ
କହିଲେ ଶିବ ଶୁଣନ୍ତୁ ଦେବ ଚକ୍ରପାଣି
ଜନ୍ମିତ ଏ ପୁରୁଷର ନାମ ଅଟେ ନର
ଶ୍ରେଷ୍ଠ ପରମାତ୍ମ ଜ୍ଞାତ ଏହି ତ୍ରିପୁରର
ନରବୋଲି ଆଗ ତୁମ୍ଭେ କହିଥିଲ ଯେଣୁ
ଏହିପୁରୁଷର ନାମ ନର ହେଲା ତେଣୁ
ବିଶ୍ୱେ ଖ୍ୟାତ ହେବ ନରନାରାୟଣ ନାମ
ଯୁଦ୍ଧ ବେଳରେ ଦିଶିବ ଏ ଦୁହିଁଙ୍କ କାମ
ଦେବକାର୍ଯ୍ୟେ ପୁଣି ଲୋକ ପାଳନା କାରଣେ
ଦିଶିବ ଏହାଙ୍କ କାର୍ଯ୍ୟ ବିଶ୍ୱେ ବହୁଗୁଣେ
କହିଲେ ଶଙ୍କର ଭବିଷ୍ୟତେ ଏହି ନର
ହେବେ ବିଶ୍ୱେ ପ୍ରିୟସଖା ନାରାୟଣଙ୍କର
ତୁମ୍ଭର ସହାୟ ହେବେ ଅସୁର ନାଶରେ
ଦ୍ୟୁତିମନ୍ତ ହେବେ ବଳ ବହିବ ଅଙ୍ଗରେ
ବିଜେତା ହୋଇବେ ବିଶ୍ୱେ ଏ ସବୁପ୍ରକାରେ
ହାରିବେ ଏହାଙ୍କୁ ମୁନି ଜ୍ଞାନ ପରୀକ୍ଷାରେ
ଏହି ବୀର ଦିବ୍ୟତେଜ ଅଧିକାରୀ ହେବେ
ବ୍ରହ୍ମାଙ୍କ ପଞ୍ଚମଶିର ରୂପେ ଖ୍ୟାତି ନେବେ
ବ୍ରହ୍ମତେଜେ ଦୀପ୍ତ ତବ ଭୁଜରକ୍ତ ଜାତ
ତେଜସ୍ୱୀ ରୂପରେ ଭବେ ତେଣୁହେବେ ଖ୍ୟାତ
ମୋର ଦୃଷ୍ଟିପାତ ଯେଣୁ ହୋଇଛି ତାପରେ
ଶଶି ସୂର୍ଯ୍ୟ ଅଗ୍ନିତେଜ ଧରିବେ ଅଙ୍ଗରେ
ଏ ତିନିତେଜ ସଂଯୋଗ ବିଜିତ ହୋଇବେ
ଦୁର୍ଜୟ ଶତ୍ରୁଙ୍କୁ ଅଞ୍ଚ ଯୁଦ୍ଧରେ ଜିଣିବେ
ଏହାଙ୍କର ପରାକ୍ରମ ଅଜ୍ଞେୟ ହୋଇବ
ବିଜୟ ନାମରେ ତେଣୁ ଖ୍ୟାତି ବଢ଼ିଯିବ
ସୁରାସୁର ପତିଙ୍କର ହେବେ ଭୟଙ୍କର
କହି ଏତେ ତୁନି ହୋଇ ରହିଲେ ଶଙ୍କର

ଶୁଣି ବାଣୀ ଚକ୍ରପାଣି ଚକିତ ହୋଇଲେ
ସେହି କପାଳ ପାତ୍ରକୁ ଦୁହେଁ ସ୍ତୁତି କଲେ
ତଦପରେ ସ୍ୱ ଶରୀରେ କରାଙ୍ଗୁଳି ଦେଇ
କହିଲେ ସେ ବୀର ଧୀର ହରିହରେ ଚାହିଁ
କି କରିବି ଏବେ ମୁହିଁ ଦିଅନ୍ତୁ ଆଦେଶ
କହି ସ୍ପର୍ଶକଲେ ହରିହର ପାଦ ଦେଶ
କହି ଏହା ଯେବେ ବୀର ରହିଲା ସୁସ୍ଥିର
କହିଲେ ତାହାକୁ ନେବେ ପାର୍ବତୀଙ୍କ ବର
ଧନୁର୍ଦ୍ଧାରୀ ପୁରୁଷେକ ବ୍ରହ୍ମା ସରଜିଲେ
ମୋତେ ମାରିବା ନିମନ୍ତେ ତାକୁ ପଠାଇଲେ
ସ୍ତୁତିକଲେ ନରେ ଏହା କହିଣ ଶଙ୍କର
ବଦ୍ଧାଞ୍ଜଳି ହୋଇ ପୁଣି ଧରି ତାଙ୍କ କର
କପାଳ ବୀର ଆବର ତାହାଙ୍କୁ କହିଲେ
ଯାହା ତାହା ଶୁଣ ଭୀଷ୍ମ ମନଦେଇ ଭଲେ
ତୁମକୁ ମୁଁ କହୁଥିଲି ଯାର କଥା ଏବେ
ଏ ସେହି ଭୀମ ପୁରୁଷ ଦେଖିନିଅ ତୁମ୍ଭେ
ମୋହ ନିଦ୍ରା ଯାହା ବିଷ୍ଣୁ ହୁଂକାର ସଂଭୂତ
ତାରବଳେ ଏ ପୁରୁଷ ହୋଇଛି ନିଦ୍ରିତ
ଉଠାଇଣ ତାକୁ ତୁମେ କର ପ୍ରବୋଧନ
କହି ଏହା ଗିରିବାସ ହେଲେ ଅନ୍ତର୍ଦ୍ଧ୍ୟାନ
ଭଗବାନଙ୍କ ସମ୍ମୁଖେ ଥିଲେ ତେବେ ନର
ମୌନତାରୁ ଜାଣି ତହିଁ ସମ୍ମତି ତାଙ୍କର
ଅତି ଭୀମ ଲଭି ନର ବାମ ପାଦାଘାତ
ସେ ପୁରୁଷ ତେଜି ନିଦ୍ରା ଉଠିଲ ତୁରିତ
ଯା ହେଲା ତାପରେ ଶୁଣ ଶାନ୍ତନୁ ନନ୍ଦନ
ସ୍ୱେଦରକ୍ତ ଜାତ ଦୁହେଁ ଅଟନ୍ତି ମହାନ
ଜଣେ ବ୍ରହ୍ମଶକ୍ତିଧର ଜଣେ ବିଷ୍ଣୁଙ୍କର
କେ କାହାକୁ ଊଣା ନୁହେ ଦୁହେଁ ବଳକର
ସଂଗ୍ରାମ ଉଭୟଙ୍କର ହୋଇଲା ଭୀଷଣ
ଟଙ୍କାରିଲେ ଦୁହେଁ ନିଜ ନିଜ ଶରାସନ
ବିସ୍ତାରିତ ତେବେ ହେଲା ଧନୁର ଟଙ୍କାର
ଶୁଣ ଭୀଷ୍ମ ଚରାଚର ହେଲା ଥରହର
ଟଙ୍କାର ଶବ୍ଦରେ ସ୍ତବ୍ଧ ହୋଇଲା ଜଗତ
ସ୍ୱେଦଜ କବଚ ପାତ କଲା ରକ୍ତଜାତ
ରଣରଙ୍ଗେ ଦିବ୍ୟବର୍ଷ ଦୁଇ ଗତହେଲା
ହରାଜିଣା କାର କିଛି ଗୋଚର ନୋହିଲା

ଜଣେ ଜନ୍ମିଥିଲା ଭୀଷ୍ମ ବ୍ରହ୍ମାଙ୍କ ସ୍ୱେଦରୁ
ଅନ୍ୟ ଜନ୍ମିଥିଲା ବିଷ୍ଣୁ ଭୁଜ ଶୋଣିତରୁ
ସ୍ୱେଦଜ ରକ୍ତଜଙ୍କର ସଂଗ୍ରାମ ଦର୍ଶନ
କରିଣ ଚିନ୍ତିତ ହେଲେ ଗରୁଡ଼ ଆସନ
ଚିନ୍ତାକରି ପରେ ବ୍ରହ୍ମା ସଦନକୁ ଗଲେ
ସସଂଭ୍ରମେ ବ୍ରହ୍ମାଙ୍କୁ ଏ ବଚନ କହିଲେ
ହେ ବ୍ରହ୍ମା ରକ୍ତଜ ଏବେ ସ୍ୱେଜଜେ ବଧିଲା
ଶୁଣି ବ୍ରହ୍ମା ହୃଦ ଅତି ବ୍ୟାକୁଳିତ ହେଲା
ଶ୍ରୀହରିଙ୍କୁ ପରେ ବ୍ରହ୍ମା କହିଲେ ଏପରି
ହେପ୍ରଭୁ ସେ ଜୀବ ପାଉ ନର ଦେହଧରି
ତୁମକଥା ହେଉ ବିଷ୍ଣୁ କହିଲେ ହରଷେ
ଦୁହେଁ ଗଲେ ଯୁଦ୍ଧ ହେଉଥିଲା ଯେଉଁ ଦେଶେ
ଯାଇ ଉଭୟଙ୍କୁ କରି ଯୁଦ୍ଧରୁ ବିରତ
ଯା କହିଲେ ଶୁଣ ତାହା ଶାନ୍ତନୁଙ୍କ ସୁତ
ଏବେ ଯେଉଁ ଯୁଦ୍ଧ ହୋଇଅଛି ନିବାରିତ
ଅନ୍ୟ ଜନ୍ମେ ପୁଣି ତାହା ହେବ ସଂଘଟିତ
ଦୁହିଁଙ୍କ ମଧ୍ୟରେ ଏହି ଯୁଦ୍ଧ ପୁଣି ହେବ
ତେବେ କଳି ଦ୍ୱାପରର ସନ୍ଧି ହୋଇଥିବ
ତେବେ ହରି ଇନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କି ଡ଼ାକିଲେ
ବ୍ରହ୍ମାଙ୍କ ସମ୍ମୁଖେ ତାଙ୍କୁ ଏପରି କହିଲେ
ଏହି ଦୁହେଁ ନରଙ୍କରେ ହୋଇବେ ଉତ୍ତମ
ଯତ୍ନେ ଏ ଦୁହିଁଙ୍କୁ ତୁମ୍ଭେ କରିବ ପାଳନ
ଆହେ ଅଂଶୁମାନ ଏହା ମନେ ରଖିଥିବ
ଏ ସ୍ୱେଦଜ ତୁମ ଅଂଶୁ ଧରାରେ ଜନ୍ମିବ
ଆହେ ଦେବରାଜ ଏହି ରକ୍ତଜ ତୁମର
ଅଂଶୁ ଜନ୍ମହୋଇ ଭବେ ହେବ ଧନୁର୍ଦ୍ଧର
ଦ୍ୱାପର ଯୁଗ ଶେଷରେ ଏ କଥା ହୋଇବ
ଯାଙ୍କ ଲାଗି ଦେବକାର୍ଯ୍ୟ ବହୁ ସିଦ୍ଧହେବ
ଯଦୁବଂଶେ ଅତି ବଳଶାଳୀ ନରପତି
ତାଙ୍କ କନ୍ୟା ପୃଥାନାମେ ଅତି ରୂପବତୀ
ଜାତହେବେ-ଦେବକାର୍ଯ୍ୟ ହୋଇବ ସାଧନ
ଦୁର୍ବାସା ସେବାରେ ତାର ହୋଇ ସୁପ୍ରସନ୍ନ
ସରହସ୍ର ବହୁମନ୍ତ୍ର ତାଙ୍କୁ ଶିଖାଇବେ
ସେହି ମନ୍ତ୍ର ବଳେ ସୁରେ ତାଙ୍କ ପାଶେ ଯିବେ
ଯେଉଁ ଦେବଙ୍କୁ ଇଚ୍ଛିବ-ମନ୍ତ୍ର କରି ଜପ
ସେହି ଦେବ ସେହିକ୍ଷଣି ଯିବ ତା ସମୀପ
ପୁତ୍ରକାମେ ଯେଉଁ ଦେବ ମନ୍ତ୍ର ସେ ଜପିବ
ସେହିଦେବତା ସଙ୍ଗମେ ପୁତ୍ର ଜାତହେବ
ଆହେ ସୂର୍ଯ୍ୟ ଏହିକଥା ରଖିଥିବମନେ
କନ୍ୟା ବେଳେ ସେ ଲୋଡ଼ିବ ତୁମକୁ ଯତନେ
ପୁତ୍ର ନିମନ୍ତେ ହୋଇବ ତାର ଅଭିଲକ୍ଷ୍ୟ
ତୁମର ସଙ୍ଗମେ ପୁତ୍ର ହୋଇବ ଅବଶ୍ୟ
ଉପୁଯିବ ଯେଉଁ ସୁତ ସେ କନ୍ୟା କାଳରେ
କାନୀନ ରୂପରେ ଖ୍ୟାତ ହେବ ଭୂମଣ୍ଡଳେ
କାନୀନ କୁନ୍ତୀନନ୍ଦନ ରୂପେ ରହିଥିବ
ଦେବଙ୍କର ବହୁ କାର୍ଯ୍ୟ ସାଧିତ ହୋଇବ
ଏସନ ବଚନ ଶୁଣି ଲକ୍ଷ୍ମୀପତିଙ୍କର
କହିଲେ ସୂର୍ଯ୍ୟ କରିବି ମୁହିଁ ଏ ପ୍ରକାର
ମୋର ତେଜ ପରାକ୍ରମ ପାଇବ ସେ ସୁତ
ପୁଣି ହୋଇବ ସେ ଅତି ଗର୍ବରେ ସଂଯୁତ
କର୍ଣ୍ଣ ନାମେ ପରିଚିତ ସେ ହେବ ଲୋକରେ
ବିଷ୍ଣୁ, ବିପ୍ର ଭକ୍ତ ହେବ ମୋର ପ୍ରସାଦରେ
ମହାଦାନୀପଣେ ପୂଜ୍ୟ ହେବ ଜଗତରେ
ନାହିଁ ଶବ୍ଦ ନ ସ୍ଫୁରିବ ଏହା ମୁଖରେ
ଅଦେୟ ହୋଇଣ କିଛି ତାର ନ ରହିବ
ଦାନଶୀଳତାର ଗୁଣ ତା ପାଶେ ଦିଶିବ
ଉତ୍ପନ୍ନ କରିବି ସୁତ ମୁହିଁ ଏହିପରି
ଏଥିରେ ସଂଦେହ କିଛି ନକର ହେ ହରି
ନାରାୟଣଙ୍କୁ ଏପରି କହି ବିବସ୍ୱାନ
ସେହିକ୍ଷଣି ସେ ସ୍ଥାନରୁ ହେଲେ ଅନ୍ତର୍ଦ୍ଧ୍ୟାନ
ଯାଆନ୍ତେ ସେଠାରୁ ବାରୀତସ୍କର ଭାସ୍କର
ପାଶକୁ ଡାକିଲେ ହରି ଦେବ ସୁନାଶିର
ପ୍ରୀତିରେ କହିଲେ ଶୁଣ ସହସ୍ର ନୟନ
ଏ ମୋ ରକ୍ତଜାତ ପ୍ରତି ମୁଁ ଅତି ପ୍ରସନ୍ନ
ତାପ୍ରତି ରହିଛି ମୋର ସବୁ ଅନୁଗ୍ରହ
ହେ ଶଚୀରମଣ ଏଥି ନରଖ ସଂଦେହ
ଦ୍ୱାପର ଯୁଗ ଶେଷରେ ତୁମ ବୀର୍ଯ୍ୟ ଜାତ
ଏ ହୋଇବ ଏହା ମୋର ଅଟଇ ଇପ୍ସିତ
ତୁମବଳବୀର୍ଯ୍ୟ ତେଜ ଓଜ ସଂପୂର୍ଣ୍ଣରେ
ଅକ୍ଷୟ ହୋଇ ରହିବ ସର୍ବଦା ତାଠାରେ
ଦ୍ୱାପର ଯୁଗ ଶେଷରେ ଏକଥା ଘଟିବ
ଭାଗ୍ୟଶାଳୀ ପଣ୍ଡୁଙ୍କର ଭାର୍ଯ୍ୟା ପୃଥା ହେବ

ନଦ୍ରୀନାମେ ଥିବେ ତାଙ୍କ ଦ୍ୱିତୀୟ ରମଣୀ
ବନେ ତେବେ ଯିବେ ପଣ୍ଡୁ ଏ ଦୁହିଙ୍କୁ ଘେନି
ଅରଣ୍ୟରେ ଥିଲାବେଳେ ପଣ୍ଡୁ ନୃପବର
ଲାଭକରିବେ ସଂପାତ ମୃଗରଷିଙ୍କର
ବୈରାଗ୍ୟ ତାହାଙ୍କହୃଦେ ତେବେହେବ ଜାତ
ସଭାର୍ଯ୍ୟା ଆଶ୍ରିବେ ଶତଶୃଙ୍ଗ ପରବତ
ନିଜ କ୍ଷେତ୍ରରେ ସୁପୁତ୍ର ପଣ୍ଡୁ କରି ଆଶ
ସେ ଇଚ୍ଛା ପୃଥାଙ୍କ ଆଗେ କରିବେ ପ୍ରକାଶ
ଇଚ୍ଛାକରିଲେହେଁ ପୃଥା ସେହି ସମୟରେ
କହିବେ ନିଜ ଭର୍ତ୍ତାଙ୍କୁ ଲଜ୍ଜାଧରିଉରେ
ପୁତ୍ରଜନ୍ମ ନୁହେ ନାଥ ମନୁଷ୍ୟ ଅଧୀନ
ସୁପୁତ୍ର ଜନମେ ସୁରେ ହୋଇଲେ ପ୍ରସନ୍ନ
ଦେବତା ପରାୟେ ପୁତ୍ର ଅଭିଳାଷ ମୋର
ତେବେ ଇନ୍ଦ୍ର ଆବଶ୍ୟକ ହୋଇବ ତୁମ୍ଭର
ପ୍ରାର୍ଥନା କରିବେ କୁନ୍ତୀ ତୁମଙ୍କୁ ସାଦରେ
କରାଇବ ପୁତ୍ରଜାତ ତୁମ୍ଭର ବୀର୍ଯ୍ୟରେ
ମନେରଖି ବୃଦ୍ଧଶ୍ରବା ଏ ମୋର ବଚନ
କୁନ୍ତିଙ୍କୁ ଚିନ୍ତିବା ମାତ୍ରେ ଗମିବେ ଆପଣ
ଦୁଃଖିତ ହୋଇଣ ଇନ୍ଦ୍ର ବିଷ୍ଣୁ ବଚନରେ
ଆହେ ଭୀଷ୍ମ ନରାୟଣେ କହିଲେ ତାପରେ
ଏହି ମନ୍ୱନ୍ତରଶେଷେ ଚତୁର୍ବିଂଶ ଯୁଗେ
ପ୍ରତିଷ୍ଠିତ ହେଲା ରଘୁକୁଳ ଧରା ଭାଗେ
ଦଶରଥ ନାମେ ହେଲେ ତହିଁ ନରପତି
ତୁମେ ତେବେ ଅବତାର ନେଇ ଶିରୀପତି
ଦାଶରଥୀ ନାମେ ତୁମ୍ଭେ ହେଲେ ଭବେଖ୍ୟାତ
ଭବେଯେବେ ବଢ଼ିଥିଲା ରାବଣ ଉତ୍ପାତ
ତାହାର ବଧ କାରଣେ ଦେବକାର୍ଯ୍ୟ ପାଇଁ
ଭାବଗ୍ରାହୀ ତୁମେ ଥିଲ ରାମନାମ ବହି
ସୀତାଙ୍କୁ ଖୋଜିବା ପାଇଁ ବନେ ବୁଲୁଥିଲ
ହିତ ସୂର୍ଯ୍ୟ ତନୟର ନିଶ୍ଚୟ ଇଚ୍ଛିଲ
ତୁମେ ତେବେ ହିଂସାକଲ ମୋର ପୁଅଠାରେ
ସୂର୍ଯ୍ୟସୁତ ସୁଗ୍ରୀବର କଲ୍ୟାଣଇଚ୍ଛାରେ
ବାନର ନୃପତି ବାଳୀ ମୋହର ତନୟ
ତେବେ ତାକୁ ନାଶିଥିଲ ହୋଇଣ ନିର୍ଦ୍ଦୟ
ସେହି ଦୁଃଖେ ହେଉଅଛି ମୁଁ ସଦା ଦୁଃଖିତ
ଏଣୁ ପୁଣି ନରସୁତେ ନାହିଁ ମୋର ମତ
ଅଗ୍ରାହ୍ୟ କଲେ ପ୍ରସ୍ତାପ ଜାଣି ଶଚୀପତି
କହିଲେ ତେବେ ଇନ୍ଦ୍ରଙ୍କୁ ସ୍ନେହେ ଲକ୍ଷ୍ମୀପତି
ଯା କହିଲ ଶଚୀପତି ମନେ ଅଛି ମୋର
ସେ କାରଣୁ ମର୍ତ୍ତ୍ୟେ ମୁହଁ ହେବି ଅବତାର
ସୂର୍ଯ୍ୟସୁତକୁ ମରାଇ ତୁମ ସୁତ କରେ
ପୂର୍ଣ୍ଣ ଦୃଷ୍ଟି ଦେବିସଦା ତାର ବିଜୟରେ
ଜୟ ଜୟ ହେ ଶ୍ରୀରାମ ଜାନକୀ ରମଣ
ତୁମ ଚରଣେ ନିରତେ ରହୁ ମୋର ଧ୍ୟାନ
ମୂର୍ଖପଣେ ମୋ ନାମରେ ଆଗପଢ଼େଗାର
ତୁମେ ଅଟ ରାବଣାରି ରାଜରାଜେଶ୍ୱର
ଗୋପୀନାଥର ମିନତି ରଖିଣ ଚିତ୍ତରେ
ରାଜ ମୋ ହୃଦରେପ୍ରଭୁ ନିଶି ଓ ବାସରେ

ଇତି ଶ୍ରୀ ପଦ୍ମ ପୁରାଣେ ସୃଷ୍ଟିଖଣ୍ଡେ
ଭୀଷ୍ମ ପୁଲସ୍ତ୍ୟ ସଂବାଦେ
କର୍ଣ୍ଣାର୍ଜ୍ଜୁନ ଉତ୍ପତ୍ତି ଓ ବୈରତା ବର୍ଣ୍ଣନୋ
ନାମ ଅଷ୍ଟମୋଽଧ୍ୟାୟଃ ।



## ନବମ ଅଧ୍ୟାୟ

### ପୁଷ୍କର ତୀର୍ଥର ଉତ୍ପତ୍ତି ପ୍ରକରଣ

ନୈମିଷାରଷିଗଣଙ୍କୁ ସୁତ ମହାଯତି
କହିଲେ ଆନନ୍ଦେ ସର୍ବେ ଶୁଣ ଦେଇ ମତି
ପୂର୍ବେ ଭୀଷ୍ମ ପିତାମହ ଚୀର ବ୍ରହ୍ମଚାରୀ
ପୁଲସ୍ତ୍ୟଙ୍କୁ ଯା ପୁଚ୍ଛିଲେ ହୃଦେ ମୋଦଭରି
କହିଲେ ଭୀଷ୍ମ କହନ୍ତୁ ଆହେ ଋଷିବୀର
ଉତ୍ପତ୍ତି ହେଲା କିପରି ପୁଷ୍କର କ୍ଷେତ୍ରର
କହିଲେ ପୁଲସ୍ତ୍ୟ ଶୁଣ ଭୀଷ୍ମ ମହାମନା
ଦେବଗଣର କଲ୍ୟାଣ କରିଣ କାମନା
ପ୍ରତିଷ୍ଠିତଥିଲା ଆଗୁଁ ଏକ ସମ୍ମେଳନ
କାନ୍ତିମତୀ ବୋଲି ଅଟେ ସେହି ସଭା ନାମ
ଋଷିବୃନ୍ଦ ସୁରଙ୍କରେ ହୋଇ ନିସେବିତ
ସେହି ସଭା ବାଞ୍ଛୁଥିଲା ସଦା ସୁର ହିତ
କରୁଥିଲେ ଦ୍ୱିଜଗଣ ସାଦା ସାମଗାନ
ବେଦ ଝଂକାରେ ଝଂକୃତ ଥାଏ ସେହିସ୍ଥାନ
ସନ୍ଧ୍ୟା କରୁଥିଲେ ଥରେ ବ୍ରହ୍ମା ବସି ତହିଁ
ନିବିଷ୍ଟ ଚିତ୍ତରେ ଶୁଣ କୁରୁକୁଳ ସାଇଁ
ପରାତ୍ପରଯେହୁ ଏହି ଜଗତ କରତା
ଧ୍ୟାନେ ପିତାମହ ତାଙ୍କୁ କରୁଥିଲେ ଚିନ୍ତା

ଆସିଲା ଏକଥା ତେବେ ବ୍ରହ୍ମାଙ୍କ ମନରେ
ସଂତୋଷିବି କେହ୍ନେ ପରମାତ୍ମାଙ୍କୁ ଯଜ୍ଞରେ
କରିବି ଯଦ୍ୟପି ଯଜ୍ଞ କେଉଁଠି ତା ହେବ
ଧରାରେ ସେପରି ସ୍ଥାନ କେଉଁଠି ମିଳିବ
କାଶୀ ନୈମିଷ ଶୃଙ୍ଗଳ କୁରୁକ୍ଷେତ୍ର ତୁଙ୍ଗ
ଭଦ୍ର ସରସ୍ୱତୀ କାଞ୍ଚୀ ବେଦିକା ପ୍ରୟାଗ
ପ୍ରଭାସ ଆଦି ଏ ତୀର୍ଥେ ଜଗତ ମଧ୍ୟରେ
ଉତ୍ତମ ବୋଲି କଥିତ ହୋଇଛି ଶାସ୍ତ୍ରରେ
ଏହାଙ୍କ ବ୍ୟତୀତ ଅନ୍ୟ ତୀର୍ଥେ ଛନ୍ତି ରହି
ସେ ପୁଣ୍ୟ ତୀର୍ଥଙ୍କ ସଂଖ୍ୟାକେପାରିବ କହି
ଖ୍ୟାତିରେ କାହାକୁ କିଏ ନୁହନ୍ତି ନିଉନ
ଯଜ୍ଞପାଇଁ ହୋଇପାରେ ଯଥାର୍ଥ ଏ ସ୍ଥାନ
ସ୍ଥିତ ମୁଁ ଯଥା ଦେବଙ୍କ ମଧ୍ୟେ ଆଦିଦେବ
ସେହିପରି ଏକ କାର୍ଯ୍ୟ ମୋ ଦ୍ୱାରା ହୋଇବ
କରିବି ମୁଁ ତୀର୍ଥ ଭବେ ଶ୍ରେଷ୍ଠହେବସେହି
ଆହେ ଭୀଷ୍ମ ବ୍ରହ୍ମାମନେ ଏହି କଥା ଧ୍ୟାୟୀ
ଭାବିଲେ ଯେଉଁ ସ୍ଥାନରୁ ହେଲି ମୁହିଁଜାତ
ବିଷ୍ଣୁଙ୍କର ନାଭୀ ପଦ୍ମ ରୂପେ ତାହା ଖ୍ୟାତ
ବେଦଜ୍ଞ ଋଷି ଏ ତାକୁ କହନ୍ତି ପୁଷ୍କର
ପବିତ୍ର କୀର୍ତ୍ତୀ ରହିଛି ତେଣୁ ତାହାଙ୍କର
ପ୍ରଜାପତି ବ୍ରହ୍ମା ଏହି କଥା ଚିନ୍ତାକଲେ
ଦୃଢ଼ମନେ ପୃଥିବୀକୁ ଯିବା ସ୍ଥିରକଲେ
ବେଦବର ସେହି ସ୍ଥାନ ଖୋଜି ପ୍ରଥମରେ
ପ୍ରବେଶ ହୋଇଲେ ସେହି ପବିତ୍ର ବନରେ
ନାନାଦ୍ରୁମରେ ଶୋଭିତ ଥିଲା ସେ କାନନ
ବିବିଧ ଲତାରେ ପୁଣି ତା ଥିଲା ଆକୀର୍ଣ୍ଣ
ବୃକ୍ଷଲତା ଧରିଥିଲେ କୁସୁମ ସମ୍ଭାର
ଶୁଭୁଥିଲା ଭ୍ରମରଙ୍କ ଗୁଣୁଗୁଣୁ ସ୍ୱର
ନିଉନ ହୋଇବ ତାକୁ ନନ୍ଦନ କାନନ
ଚିତ୍ତହର ରୂପେ ଥିଲା ଅତି ଅନୁପମ
ବାଣର ଥିଲା ହରଷ ମନ ନୟନର
ଜଗତେ ନରଖି କିଛି ତାଠାରୁ ସୁନ୍ଦର
ପ୍ରବେଶି କମଳଯୋନି ସେ ପୁତ କାନନେ
ନିରେଖିଲେ ତାକୁ ଭୀଷ୍ମ ବିମୁଗ୍ଧ ନୟନେ
ସେ ବନର କାନ୍ତି ଅଟେ ଦର୍ପଣ ସମାନ
ବ୍ରହ୍ମା ତାକୁ ନେତ୍ରପଥେ କରୁଥିଲେ ପାନ

ବୃକ୍ଷପନ୍ତି ଆଗମନ ଜାଣ ବ୍ରହ୍ମାଙ୍କର
ଆନନ୍ଦେ ଅର୍ପିଲେ ପାଦେ କୁସୁମ ସଭାର
ବୃଷ୍ଟି ହେଲା ସୁବାସିତ କୁସୁମ ନିଚୟ
ଦେଖି ତାହାମନ ତୁଷ୍ଟ ହେଲେ ପିତାମହ
କହିଲେ ତାପରେ ଶେଯେ କମଳ ଆସନ
ହେ ଲତା ପାଦପେ ହେଉ ତୁମର କଲ୍ୟାଣ
ଇଚ୍ଛାକରି ଅଛି ଦେବି ତୁମ୍ଭଙ୍କୁ ମୁଁ ବର
ମାଗ ତାହା ଯାହା ଇଚ୍ଛା ହେଉଛି ତୁମ୍ଭର
ଅବଗ୍ରହେ ରହିତ ସେ ବନେ ବୃକ୍ଷ ଶ୍ରେଣୀ
ଆଦି ଦେବ ବ୍ରହ୍ମାଙ୍କର ସେହି କଥା ଶୁଣି
କର ଯୋଡ଼ି ତାଙ୍କପାଦେ କରି ନମସ୍କାର
କହିଲେ ହେ ପ୍ରଭୁ ତୁମେ ଶରଣ ସୋଦର
କୃପାଯେବେ କରିଛନ୍ତି ପ୍ରଭୁ ଆମ୍ଭପ୍ରତି
ମାଗୁଁ ଏହି ବର ଦିଅ ଆମ୍ଭକୁ ସଂପ୍ରତି
ଏହିବନେ ଏହିସ୍ଥାନେ ରହିବେ ଆପଣ
ମାଗୁଅଛୁ ଏହି ବର କରନ୍ତୁ ପ୍ରଦାନ
ପୁଣିପ୍ରଭୁ ତୁମ ପାଦେ କରୁ ନମସ୍କାର
କରନ୍ତୁ ପୂର୍ଣ୍ଣ ଏ ମନ କାମନା ଆମ୍ଭର
ତା ଶୁଣି କହିଲେ ବ୍ରହ୍ମା ଏହି ପୂଣ୍ୟକ୍ଷେତ୍ର
ସବୁତୀର୍ଥଠାରୁ ହେବ ପରମ ପବିତ୍ର
ସଦା ପୁଷ୍ପଫଳବନ୍ତ ହେବ ଏ କାନନ
ସୁସ୍ଥିର ଯୌବନା ହୋଇଥିବ ଚିରଦିନ
ଯହିଁକି ଯିବା ଇଚ୍ଛିବ ତହିଁ ଯାଉଥିବ
ଇଚ୍ଛା ରୂପ ଧାରଣରେ ସକ୍ଷମ ହୋଇବ
ସର୍ବଦା ଉତ୍ତମଫଳ କରିବ ପ୍ରଦାନ
ଇଚ୍ଛା ଅନୁସାରେ ଦେବ ପ୍ରାଣୀଙ୍କୁ ଦର୍ଶନ
ଶ୍ରେଷ୍ଠ ସିଦ୍ଧି ଜାଣ ରଣ ଦେବ ମାନବର
ଉଜ୍ଜ୍ୱଳ ହୋଇବ ସଦା କୀରତି ଏହାର
ମୋହର ପ୍ରଭାବେ ତୁମେ ହେବ ଭତିମନ୍ତ
ଏହିବର ଦାନକଲେ ସାବିତ୍ରୀଙ୍କ କାନ୍ତ
ବ୍ରହ୍ମା ଅନୁଗ୍ରହଲଭି ସେ ଦିବ୍ୟ କାନନ
ତିନିଭୁବନରେ ହେଲା ମହାପୁଣ୍ୟ ସ୍ଥାନ
ସହସ୍ରେ ବରଷ ବ୍ରହ୍ମା ହୋଇ ତହିଁ ସ୍ଥିତ
ଧରାପରେ ସମ୍ପାଦିଲେ ପଦ୍ମ ପଦ୍ମହସ୍ତ
ସେ ପୁଷ୍କର ନିପତିତେ ପୃଥିବୀ କମ୍ପିଲା
ଶୁଣ ଭୀଷ୍ମ କ୍ରମେ ରସାତଳ ଗାମୀହେଲା

ପ୍ରକମ୍ପିତହେଲା ଧରା ଅତ୍ୟନ୍ତ ବେଗରେ
କ୍ଷୋଭେଯୁକ୍ତହେଲା ସିନ୍ଧୁ ବହୁ ତରଙ୍ଗରେ
ବେଳାଲଘିଂ ସେହିକାଳେ ଆସିଲା ସାଗର
ବାଘ ସାପେ ପୂର୍ଣ୍ଣ ହୋଇ ଗଙ୍ଗାଙ୍କ କୂମର
ତେବେ ସମୁଦ୍ରରୁ ଯେଉଁ ଧ୍ୱନି ଜାତହେଲା
ଇନ୍ଦ୍ରକର ସ୍ଥିତ ବଜ୍ର ଶବ୍ଦେ ନିନ୍ଦାକଲା
ତା ଶୁଣି ଶୀର୍ଣ୍ଣ ହୋଇଲେ ପର୍ବତ ଶିଖର
ଆକାଶରେ ଦୃଶ୍ୟହେଲା ଗନ୍ଧର୍ବ ନଗର
ନଭପୂର୍ଣ୍ଣହେଲା ସୁର ସିଦ୍ଧ ବିମାନରେ
ଖସିଲେ ପୃଥବୀ ପୃଷ୍ଟେ ସବୁ ଚକ୍ରାକାରେ
ଦଶଦିଗ ଅତିଭୟଙ୍କର ଦେଖାଗଲା
ମହାବାତ ସହ ମେଘ ଆକାଶେ ଉଠିଲା
ଅନ୍ୟସବୁ ଜ୍ୟୋତି ନାଶି ଆଦିତ୍ୟ ଦ୍ୱାଦଶ
ସମସ୍ତଙ୍କ ନୟନର ହୋଇଲେ ପ୍ରକାଶ
ସୂର୍ଯ୍ୟମଧ୍ୟ ସେ କାଳରେ ହୋଇଲେ ଅସ୍ଥିର
ପୁଷ୍କର ନିକଟେହେଲା ଶବ୍ଦ ଅତି ଘୋର
ବଧୀର ହୋଇଲେ ସର୍ବେ ଶୁଣି ସେ ଶବଦ
ବ୍ୟାକୁଳିତେ ଚରାଚର ହୋଇଲେ ସ୍ତବଧ
ଭୟଭୀତ ହେଲେ ତ୍ରିପୁରର ଚରାଚରେ
ଦେବତା ଅସୁର ଶୀର୍ଣ୍ଣ ହେଲେ ବିଷାଦରେ
ଅବସାଦେ ବୁଡ଼ିଗଲା ସମସ୍ତଙ୍କ ମନ
ଶୁଣ ଆହେ ଭୀଷ୍ମ ଦେଖି ସେ ଦୃଶ୍ୟଭୀଷଣ
କିହୋଇବ ପରିଣାମ କେହି ନ ଜାଣିଲେ
ଧୈର୍ଯ୍ୟଧରି ସର୍ବେ ପରେ ବ୍ରହ୍ମାପାଶେଗଲେ
ଖୋଜିଲେ ବ୍ରହ୍ମାଙ୍କୁ କିନ୍ତୁ ନପାଇଲେ କାହିଁ
ବିଶେଷ ଆକୁଳ ହେଲେ ତାଙ୍କ ଦେଖାପାଇଁ
କେଉଁଠାକୁ ଗଲେ ବ୍ରହ୍ମା ସର୍ବେ ବିଚାରିଲେ
ଭୂମି କମ୍ପିବା କାରଣ କେହି ନ ଜାଣିଲେ
ଉତ୍ପାତର ପୂର୍ବରୂପ ତାହାକୁ ବିଚାରି
ଭାବୁଥିଲେ ତେବେ ତହିଁ ପହଞ୍ଚିଲେ ହରି
ଦେଖି ସୁରଗଣ ତାଙ୍କ ପାଦ ପଦ୍ମେ ନମି
ପଚାରିଲେ ଦୟାବହି କହ ଆହେ ସ୍ୱାମୀ
ଏ ଯାହା ହେଉଛି ତାର କି ଅଛି କାରଣ
ଅବା ମହା ଉତ୍ପାତର ହେବ ଆଗମନ
କାଳଧର୍ମ ଘେନି ପ୍ରକମ୍ପିତ ତିନିପୁର
କି କାରଣ ଅଛି ପ୍ରଭୁ କହନ୍ତୁ ଏହାର
ଶୁଭା ଶୁଭ ଦେବଙ୍କର ଏଥୁ କି ହୋଇବ
ନଜାଣି ତ ଦେବଙ୍କର ଅତି ଭୀତଭାବ

ପ୍ରଭୁଯେବେ ଜାଣିଅଛ କାରଣ ଏହାର
ପ୍ରକାଶ କରନ୍ତୁ ସୁଖୀ ହେଉ ଚରାଚର
ଅତି ଆର୍ତ୍ତେ ପଚାରନ୍ତେ ଏହା ଦେବଗଣ
ଉତ୍ତରିଲେ ଅନୁଗ୍ରହେ କମଳା ରମଣ
ଜାଣେ ମୁହିଁ ସୁରେ ଯାହା କାରଣ ଏହାର
ଏଥିପାଇଁ ନୁହ ସୁର ବ୍ୟାକୁଳ ଅନ୍ତର
ଭୟଭୀତର କାରଣ ଏଥି କିଛି ନାହିଁ
ଶୁଣ ସର୍ବେ ହୋଇଅଛି ଏହା ଯହିଁ ପାଇଁ
ସଂଘଟିତହେଲା ଏହା ଯେବଣ ବିଧିରେ
ବତାଇ କହିବି ତାହା ବସି ଶୁଣ ସୁରେ
ଜାଣ ହାତେ ଥାଏ ପଦ୍ମ ପିତାମହଙ୍କର
ତେଣୁ ତାଙ୍କ ଅନ୍ୟନାମ ଅଟେ ପଦ୍ମକର
ଯଜ୍ଞ କରିବା କାମନା ଧରି ହୃଦୟରେ
ବୁଲିଲେ ଧରାରେ ପୁଣ୍ୟସ୍ଥାନ ସନ୍ଧାନରେ
ଭୂଧର ନିମ୍ନରେ ବନ ଅତ୍ୟନ୍ତ ସୁନ୍ଦର
ଯଜ୍ଞ ଯୋଗ୍ୟ ହେବ ଏହି ଇଚ୍ଛା ବ୍ରହ୍ମାଙ୍କର
ଭ୍ରମଣ ମଧ୍ୟରେ ପଦ୍ମ ବ୍ରହ୍ମାକରୁ ଖସି
ପଡ଼ିଲା ଧରାରେ ଶୁଣ ସୁରପୁରବାସୀ
ପଦ୍ମ ପାତନରେ ଶବ୍ଦ ସର୍ବେ ଯା ଶୁଣିଲ
ତ୍ରିପୁରର ଚରାଚର ଭୟରେ କମ୍ପିଲ
ତରୁରାଜି ବ୍ରହ୍ମାପାଦେ ଦେଲେ ଉପହାର
ଯେ ସୁମନ ତା ଗନ୍ଧରେ ବାସିତ ଅମ୍ବର
ବନ ଉପହାରେ ବ୍ରହ୍ମା ମନ ଆନନ୍ଦରେ
ଅନୁଗ୍ରହ କଲେ ମୃଗନାଭୀ ପ୍ରଦାନରେ
ବିଚାରିଣ ତିନିପୁର ହିତ ସଂପାଦନ
ସ୍ଥିରକଲେ ତାକୁ ନିଜ ନିବାସର ସ୍ଥାନ
ପୁଷ୍କର ନାମେ ନାମିତ ସେ ସ୍ଥାନ ହୋଇଲା
କ୍ଷେତ୍ରରୂପେ ଜଗତରେ କୀର୍ତ୍ତିପ୍ରକାଶିଲା
ବୃଷଭକ୍ଷେତ୍ରେ ଆବର ନାମ ଅଟେ ତାର
ଭାଗବତ ଗ୍ରନ୍ଥେ ତାହା ହୋଇଛି ପ୍ରଚାର
ହିତକର ଲୋକଙ୍କର ଅଟଇ ଏ କ୍ଷେତ୍ର
ତହିଁ ଯାଏ ଥରେ ଯେହୁ ସେ ହୁଏ ପବିତ୍ର
ଦେବଙ୍କୁ କହିଲେ ହରି ଆସ ସଙ୍ଗେ ମୋର
ଦର୍ଶନ କରିବା ସର୍ବେ ସାବିତ୍ରୀଙ୍କ ବର
ଯଥାରୀତି ସର୍ବେ ତାଙ୍କୁ କରିବା ଅର୍ଚ୍ଚନା
ସଂତୁଷ୍ଟ ସେ ହେବେ ଘେନି ଆମ୍ଭ ଆରାଧନା

ପ୍ରୀତ ଯେବେହେବେ ତେବେ ଯାଚି ଦେବେ ବର
ଆନନ୍ଦରେ ଲକ୍ଷ୍ମୀବର କହିଲେ ଏ ଗୀର
ହର୍ଷଭରେ ଦେବ ଦାନବଙ୍କୁ ସଙ୍ଗେ ଘେନି
ସେହି ବନେ ପ୍ରବେଶିଲେ ଦେବ ଚକ୍ରପାଣୀ
ଯେଉଁ ବନେ ରହିଥିଲେ କମଳଉଦ୍ଭବ
ମନେ ରଖିଥାଅ କୁରୁକୁଳର ପୁଙ୍ଗବ
ଆହେ ଭୀଷ୍ମ ତଦପରେ ହର୍ଷେ ଦେବଗଣ
ଇନ୍ଦ୍ରଙ୍କୁ ଆଗରେ ରଖି ଭ୍ରମିଲେ ସେ ବନ
ସୁଖୀହେଲେ ସୁରେ ସେହି ବନର ଶୋଭାରେ
ସ୍ୱର୍ଗଶ୍ରୀ ମଣିଲେ ତୁଚ୍ଛ ତାହାର ଆଗରେ
ବୁଲିବୁଲି ସୁରକୁଳ ହୋଇଗଲେ ଶ୍ରାନ୍ତ
ତଥାପି ପାଇଲେନାହିଁ ସେ ବନର ଅନ୍ତ
ଖୋଜି ବୁଲୁଥିଲେ ବାଟେ ବାଟେ ଦେଖି ବନେ
ସକଳ ଦେବତା ଗଲେ ତାଙ୍କ ସନ୍ନିଧାନେ
ଉଦ୍ଦେଶ୍ୟ ଦେବତାଙ୍କର ପ୍ରଭଞ୍ଜନ ଜାଣି
କହିଲେ ହେ ଭୀଷ୍ମ ଅତି ଧୀରେ ଏହି ବାଣୀ
ଶୁଣ କହେ ସୁରଗଣ ବିନା ତପସ୍ୟାରେ
ଦେଖି ନ ପାରିବ କେବେ ବ୍ରହ୍ମାଙ୍କୁ ନେତ୍ରରେ
ପଦ୍ମଭବେ ଖୋଜି ଖୋଜି ସେହି ସମୟରେ
ଅତି ଶୀର୍ଣ୍ଣ ହୋଇ ରହିଥିଲେ ସବୁସୁରେ
ସେ କାରଣୁ ସେହିଠାରେ ବସି ଦେବଗଣ
ସତପସ୍ୟା କଲେ ସ୍ତୁତି ଶୁଣ ବୀରଗଣ
ଜାଣିମନ କରମରେ ସର୍ବ ଦଇବତ
ଶରଣରକ୍ଷକ ଜାଣି କମଳସମ୍ଭୂତ
କହିଲେ କରନ୍ତୁ ରକ୍ଷା ହେ କଞ୍ଜନୟନ
ତୁମ୍ଭବିନା ଆମ୍ଭର କେ ନାହିଁ ପରିତ୍ରାଣ
ଶରଣାଗତ ଆମ୍ଭଙ୍କୁ ଜାଣି ଦେବବର
ବାରେ ମାତ୍ର ଆମ୍ଭପ୍ରତି ଅନୁଗ୍ରହ କର
ସଂତୁଷ୍ଟ ହୋଇ ସ୍ତବରେ ବ୍ରହ୍ମା ବ୍ରହ୍ମବେତ୍ତା
କହିଲେ ହୃଦରୁ ସୁରେ ଛାଡ଼ିଦିଅ ଚିନ୍ତା
ନିଶ୍ଚୟ ତୁମ୍ଭଙ୍କୁ ଏବେ ଦେବି ମୁଁ ଦର୍ଶନ
ତପରେ କରିଛ ଯେଣୁ ମୋତେ ସୁପ୍ରସନ୍ନ
ପ୍ରକାଶକର ଏକ୍ଷଣି କିଇଚ୍ଛା ତୁମ୍ଭର
ଯା ବାଞ୍ଛିବ ନିଶ୍ଚୟରେ ଲଭିବ ସେ ବର
ଅପ୍ରାପ୍ୟ ହେଲେ ହେଁ ତାହା କରିବି ମୁଁ ଦାନ
ଶୁଣି ତାହା ଦେବଗଣ କହିଲେ ଏସନ

କର ପଦ୍ମକୁ ଧରାରେ କରିଣ ପାତନ
ଅପର୍ଯ୍ୟାପ୍ତ ତାହା ଯାହା କରିଅଛ ଦାନ
ଉତ୍ପନ୍ନ ହୋଇଛି ତହୁଁ ଯେ ଶବ୍ଦ ରୁଚିର
ସ୍ଥିର ହୋଇ ହୃଦେ ତାହା ରହିଛି ଆମ୍ଭର
କହ ପ୍ରଭୁ ଥିଲା ତହିଁ କିବା ପ୍ରୟୋଜନ
ବ୍ୟାକୁଳିତ କଲା ଧରା କରି ପ୍ରକମ୍ପନ
କେଉଁ କାର୍ଯ୍ୟ ଏଥୁ ସିଦ୍ଧ ହୋଇଲା ତୁମର
ଯା ଫଳେ ହୋଇଲା ଭୟ ଭୀତ ତିନିପୁର
ତବ ସୃଷ୍ଟି ନ ହୁଅଇ କେବେ ନିରର୍ଥକ
ତେଣୁ ତା ଉତ୍ପତ୍ତି ହେତୁ କହ ଚତୁର୍ମୁଖ
କେଉଁ କାର୍ଯ୍ୟେ ଲୋଡ଼ାହେବ ଆବର କହିବ
ତା ଶୁଣିଲେ ଆମ୍ଭ ମନ ସଂତୋଷ ହୋଇବ
ଶୁଣି ଦେବତାଙ୍କ ବାଣୀ କମଳଆସନ
କହିଲେ ଏ ତୁମ୍ଭ ହିତ ବୋଲି ମନେ ଘେନ
ଚିତ୍ତରେ ବିଚାରି ସୁରେ ରକ୍ଷଣ ତୁମ୍ଭର
ବିଧାନ ମୁଁ କଲି ଏହି ପଦ୍ମ ପତନର
ପକାଇଲି କରୁ ପଦ୍ମ ସୁରେ ଯହିଁ ପାଇଁ
ତାହାର କାରଣ କହେ ଶୁଣ ମନଦେଇ
ଶିଶୁ ଜୀବନ ହାରକ ବଜ୍ରନାଭ ଦୈତ୍ୟ
ଶୁଣ ଦେବେ ରସାତଳେ ଗୋପ୍ୟକଲା ଗାତ୍ର
ଭୟ ବୋଲି କିଛି ତାର କାହାଠାରେ ନାହିଁ
ସେକ୍ଷଣି ତା କରେ ଖଳ ଯାହା ବିଚାରଇ
ତୁମ୍ଭେ ନିଶ୍ଚୟ ଏଠାକୁ ଆସିବ ଜାଣିଲା
ତୁମ୍ଭଙ୍କୁ ବଧିବାପାଇଁ ଉପାୟ ପାଞ୍ଚିଲା
ତପସ୍ୟାରେ ରତ ବେଳେ ଶାସ୍ତ୍ର ଦେବଙ୍କର
ତୁମ ବଧେ ରଖି ଚିତ୍ତ କଲା ଅଧୀକାର
ଆହେ ସୁରଗଣ ସେହି କଥା ମୁଁ ଜାଣିଲି
କମଳ ପାତନେ ସେହି ଦୈତ୍ୟ ଘାତକଲି
ଐଶ୍ୱର୍ଯ୍ୟ ଗର୍ବରେ ଥିଲା ଦୁରାତ୍ମା ମୋହିତ
ସେହି କାରଣୁ ତାକୁ ମୁଁ କରିଅଛି ହତ
ଦେବେ ବିପ୍ରେ ଦୁର୍ଗତିରୁ ହୋଇଯିବେ ପାର
ଦେବ ବେଦ ଭକ୍ତଙ୍କର ଦୁଃଖ ହେବ ଦୂର
ତିନିପୁର ଲୋକଙ୍କର ବିଚାରି ସୁଗତି
ପିଙ୍ଗିଲି କରୁ କମଳ କମ୍ପିଗଲା କ୍ଷିତି
ଦେବ ଦାନବ ଉରଗ ମନୁଷ୍ୟ ରାକ୍ଷସ
ସମସ୍ତ ଭୂତ ସହିତ ଶୁଣହେ ତ୍ରିଦଶ

ସମସ୍ତଙ୍କ ପ୍ରତି ମୋର ସମାନ ପୀରତି
ସହି ମୁଁ ନପାରେ କେବେ କାହାର ବିପତ୍ତି
ତ୍ରିପୁର କଲ୍ୟାଣ ପାଇଁ ଆହେ ଦେବଗଣ
ପଦ୍ମପାତେ ଦୁରାତ୍ମର ସାଧିଲି ନିଧନ
ଦରଶନ କରି ମୋର ମନ୍ତ୍ରୀତ କମଳ
ପୁଣ୍ୟଲୋକ ପ୍ରାପ୍ତ ହୋଇଅଛି ସେ ଅସୁର
ପଦକୁ ମୁଁ କରୁ ଖସାଇଲି ଯେଉଁଠାରେ
ପୁଷ୍କର ନାମରେ ଖ୍ୟାତ ହେବ ସେ ଲୋକରେ
ଅତିଶୟ ପୁଣ୍ୟପ୍ରଦ ସଂସାରେ ସେ ହେବ
ଦର୍ଶନ ମାତ୍ରକେ ପାପ ଖଣ୍ଡନ କରିବ
ନିରନ୍ତରେ ଚିତ୍ତ ଯାର ଭକ୍ତିରେ ରହିବ
ଏ କ୍ଷେତ୍ରେ ମୋ ଅନୁଗ୍ରହ ନିଶ୍ଚେ ସେ ପାଇବ
ଏ କାନନେ ନିତ୍ୟ ଯେହୁ କରିବ ନିବାସ
ବୃକ୍ଷଙ୍କୁ କରିବ ପୂଜା ମନେ ବହି ତୋଷ
ଅବା ବହୁକାଳ ଏହି ବନେ ବାସକରି
ସମସ୍ତଙ୍କ ପ୍ରତି ହୃଦେ ସମଭାବ ଧରି
ଏ ବନେ କରିବ ଯେହୁ ତପ ଆଚରଣ
ଲଭିବ ସେ ପୁଣ୍ୟଫଳେ ସୁମହତ ଜ୍ଞାନ
ଆହେ ସୁରେ ଏହି କଥା ହୃଦୟରେ ଧର
ପରପାଇଁ ନିଜସ୍ୱାର୍ଥ ଉପଯୋଗ କର
ତୁମ୍ଭର ତପସ୍ୟା ବଳେ ଏପରି ହୋଇବ
ପୃଥିବୀରେ ନାନାରୂପେ ତୁମ୍ଭେ ବୁଲୁଥିବ
ଦ୍ୱେଷଭାବ ତୁମ୍ଭଠାରେ ରହିବ ଯାହାର
ଅହିତ ପାଞ୍ଚିବ ଯେହୁ ଜ୍ଞାନୀ ବିପ୍ରଙ୍କର
ପାପୀ ବୋଲି ଏମାନଙ୍କୁ କହଇ ଜଗତ
ଶତଜନ୍ମେ ନୁହନ୍ତି ସେ ଏ ପାପୁ ମୁକତ
ତେଣୁ ବିପ୍ର ହେଉ ଯେବେ ବିରୋଧି ବେଦର
ପାପ ନାହିଁ କିଛି ବଧ ପାଞ୍ଚିଲେ ତାହାର
ବଧକଲେ ମଧ୍ୟ ଲୋକନିନ୍ଦା ନ ହୋଇବ
ଜଣେପାଇଁ ଯେବେ କୋଟି ଜୀବନ ରହିବ
ଜଣର ଅଭାବେ ଯଦି କାନ୍ଦିବେ କୋଟିଏ
ତେବେ ସେ ଜଣକୁ ରକ୍ଷା କରବ ଉପାୟେ
ବେଦାନ୍ତ ଜ୍ଞାନରେ ପୂତ ବିପ୍ରେ ଶ୍ରଦ୍ଧାଭରେ
ଭୋଜନରେ ତୃପ୍ତକଲେ କଥିତ ପୁଣ୍ୟରେ
କହିଲେ ପୁଣି ଦେବଙ୍କୁ ସାବିତ୍ରୀ ରମଣ
ଶୁଣ ଏ ସ୍ଥାନେ ମୋହର ଆସିବା କାରଣ

ଆବର ରହିଲି କିପାଁ ମୁହିଁ ଏ କାନନେ
କହୁଛି ତା ଦେବଗଣ ଶୁଣ ସାବଧାନେ
ଚନ୍ଦ୍ରନଦୀ ରହେ ଏହା ଉତ୍ତର ଦିଗରେ
ନିରନ୍ତରେ ସରସ୍ୱତୀର ଥାନ୍ତି ପଶ୍ଚିମରେ
ପୂର୍ବଦିଗେ କୃଷ୍ଣାନଦୀ ଜାଣ ଯାଏ ବହି
କନ୍ତ ଜୀବୀ ସେହି ନାମ ପୁଷ୍କର ଅଟଇ
ବିଦିତ ଲୋକେ ବେଦରେ ବ୍ରହ୍ମଯଜ୍ଞସ୍ଥଳ
ଅଟେ ଏ ପବିତ୍ର ଅତି ଶାନ୍ତନୁ ଦୁଲାଳ
ଅଧିଷ୍ଠାନ ଅଟେ ଏହା ପଦ୍ମଯୋନିଙ୍କର
ଉତ୍ତମ ପବିତ୍ର ରୂପେ ତିନିପୁରେ ସାର
ମଧ୍ୟମ ତୀର୍ଥ ଯେତେକ ଅଟନ୍ତି ବୈଷ୍ଣବ
ବିଷ୍ଣୁ ତାର ଅଧିଷ୍ଠାତା ବୋଲିଣ ବୁଝିବ
ଛୋଟ ତୀର୍ଥ ଯେତେ ଅଛି ସଂସାର ଭିତରେ
ଶଙ୍କର ତା ଅଧିଷ୍ଠାତା ବିଦିତ ଶାସ୍ତ୍ରରେ
ସଂସାର ମଧ୍ୟରେ ଯେତେ ଛନ୍ତି କ୍ଷେତ୍ରବର
ତାହାଙ୍କ ମଧ୍ୟରେ ଶ୍ରେଷ୍ଠ ଅଟଇ ପୁଷ୍କର
ଆଦ୍ୟକ୍ଷେତ୍ର ଅଟେ ଏହା ଚତୁର୍ମୁଖ କୃତ
ବେଦରେ ଗୋପ୍ୟ ଆବର ଅଟଇ ପବିତ୍ର
ପୁଷ୍କର ନାମକୁ ବହୁ ଅଛି ଯେ ଅରଣ୍ୟ
ଜାଣ ତାହା ଅଟେ ବ୍ରହ୍ମଯୋନୀଙ୍କ ଆସ୍ଥାନ
ପୃଥିବୀପ୍ରତି ବିଧାତା କରି ଅନୁଗ୍ରହ
ପ୍ରତିଷ୍ଠାତକଲେ ଏହାକୁ ଶାନ୍ତନୁତନୟ
ବ୍ରାହ୍ମଣ ଯେତେକ ଏହି ଧରାରେ ଅଛନ୍ତି
ତାଙ୍କପ୍ରତି ଅନୁଗ୍ରହ କରି ବେଦପତି
ବହୁ ବେଦୀ ହୀରା ସୁବର୍ଣ୍ଣରେ ବିରଚିଲେ
କୁଟୀ କାମ କର୍ଯ୍ୟେ ତାକୁ ସୁରୁଚିର କଲେ
ସେବନ ଶୋଭା ଉପମା ଜଗତେ ଦୁର୍ଲ୍ଲଭ
ଯହିଁରେ ବ୍ରହ୍ମାଙ୍କ ସ୍ଥିତି ହୋଇଛି ସୁଲଭ
ବୈକୁଣ୍ଠ ବିହାରୀ ବିଷ୍ଣୁରୁଦ୍ର ଶଚୀବର
ମରୁତ ମହେନ୍ଦ୍ର ତଥା ଅଶ୍ୱିନୀ କୁମାର
ଆବର ସ୍ୱର୍ଗରେ ସ୍ଥିତ ସମସ୍ତ ଦେବତା
ଭ୍ରମନ୍ତି ଏହି କାନନେ ମନୁ ଛାଡ଼ି ଚିନ୍ତା
ଏକଥା କହିଲେ ଭୀଷ୍ମ ସାବିତ୍ରୀଙ୍କ ସାଇଁ
ନିର୍ମିତ ଏ ତୀର୍ଥ ଲୋକ ଅନୁଗ୍ରହ ପାଇଁ
ବିପ୍ର ଯେବେ ବେଦପାଠ କରେ ଏହିଠାରେ
ସଂହିତାକୁ ଆଶ୍ରାକରି ଯଥା ଉଚିତରେ

ବିଧି ବିଜ୍ଞାନ ସହିତ ମନ୍ତ୍ରେ କରି ଯୁତ
ଯେ ପଢ଼େ ହୋଇଣ ଗୁରୁ ପଦସେବାରତ
ନିଶ୍ଚୟ ସେହି ପାଠକ ବ୍ରହ୍ମପଦ ପାଇ
ଜନ୍ମ ମରଣ ଚକ୍ରରୁ ରହେ ଆଡ଼ହୋଇ
ତଦପରେ ପଚାରିଲେ ଶାନ୍ତନୁ କୁମର
କହ ଯାହା ପଚାରିବି ଆହେ ଋଷିବର
ପୁଷ୍କର ତୀର୍ଥେ ରହିବା କାମନା ଯାହାର
ବ୍ରହ୍ମପ୍ରାପ୍ତି ଇଚ୍ଛାମାତ୍ର ଧରି ହୃଦୟର
କେଉଁ ବିଧିରେ ହୋଇବ ତାର ଆଚରଣ
କହନ୍ତୁ ହେ ଋଷିତାହା ସୁଦୟା କରିଣ
ବର୍ଣ୍ଣ ଶ୍ରମଧର୍ମୀ କି ପୁରୁଷ ଅବା ନାରୀ
ଏହି ପୁଷ୍କର କ୍ଷେତ୍ରରେ ବାସ ଇଚ୍ଛାକରି
ତେବେ ହୋଇବ କିପରି ତାଙ୍କ ଆଚରଣ
ପଚାରିଲେ ଭୀଷ୍ମ ଏହା କହ ଋଷିଗଣ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ତନୟ
ଯାହା ପାଇଁ ଯାହା ବେଦ କରିଛି ନିର୍ଣ୍ଣୟ
ସ୍ୱଧର୍ମ ପାଳି ତାହାର ଆଚରଣ କଲେ
ଲଭେ ନର ବ୍ରହ୍ମପଦ ଭୀଷ୍ମ ଶୁଣ ଭଲେ
ନତକରି ମଥା ହରି ପଦ ପଙ୍କଜରେ
କହେ ଗୋପୀନାଥ ବୁଧେ କ୍ଷମାକର ତାରେ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ ପୁଷ୍କର
ତୀର୍ଥ ଚରିତ୍ରେ ବର୍ଣ୍ଣନୋ ନାମ ନବମୋଧ୍ୟାୟ ।

❑

## ଦଶମ ଅଧ୍ୟାୟ

### ବ୍ରହ୍ମ ଦେବକୃତ ଯଜ୍ଞ ବର୍ଣ୍ଣନା

କହିଲେ ଶାନ୍ତନୁ ସୁତ ଆହେ ତପୋଧନ
କହିଲ ବର୍ଣ୍ଣି ଯେ ତୀର୍ଥ ମାହାତ୍ମ୍ୟ ଉତ୍ତମ
କମଳ ପାତନେ ଯେଉଁ ତୀର୍ଥହେଲା ଜାତ
ବ୍ରହ୍ମ ସଦାଶିବ ବିଷ୍ଣୁ ହେଲେ ତହିଁ ସ୍ଥିତ
ଏହି ତିନି ଦେବ ଶ୍ରେଷ୍ଠ ତହିଁ ହୋଇ ଠୁଳ
କିକଲେ କହନ୍ତୁ ତାହା ହେ ମୁନି ଶାର୍ଦ୍ଦୂଳ
କହ ବ୍ରହ୍ମା କଲେ ତହିଁ ଯଜ୍ଞ କେଉଁପରି
ସଜସ୍ୟ ଋତ୍ୱିଜ ପଣେ କାରେ ଥିଲେ ବରି
କାହାର କି ଭାଗ ଥିଲା କୁହ ସେ ଯଜ୍ଞରେ
ଖରଚ ହୋଇଲା ଦ୍ରବ୍ୟ କେତେ କହ ଥରେ
କହ କିଏ କେତେ ଯଜ୍ଞେ ଦକ୍ଷିଣା ପାଇଲେ
କିପରି ସେ ବେଦୀ ଯାହା ବ୍ରହ୍ମ କରିଥିଲେ
ଓସାର ଲମ୍ବ ଅଟଇ କେତେ ସେ ବେଦୀର
ଯଜନଯୋଗ୍ୟ ଦେବଙ୍କେ ଯାହା ମନୋହର
ଶୁଭୁଥିଲା ଯେଉଁଠାରେ କୃତ ବେଦ ଧ୍ୱନୀ
ଯାହାର ଝଂକାରେ ପୂତ ଥିଲା ଏ ଅବନୀ
କେଉଁ କାମନା ପୂରଣ ପାଇଁ ପଦ୍ମଭବ
ଏ ଯାଗକୁ ଇଚ୍ଛାକଲେ ତା ମଧ କହିବ
ଅଜର ଅମର କଲେ ସୁରଙ୍କୁ କିପରି
ଅକ୍ଷୟ ସ୍ୱର୍ଗେ କିପରି କଲେ ଅଧିକାରୀ
ଅନ୍ୟାନ୍ୟ ଦେବଙ୍କୁ ସ୍ୱର୍ଗେ କିପରି ସ୍ଥାପିଲେ
ଅଗ୍ନିରୁ ଔଷଧି ବେଦ କପରି ସର୍ଜିଲେ
ଯେତେ ପଶୁ ବିଚରଣ କରନ୍ତି ମହୀରେ
ସେ ସବୁ ବ୍ରହ୍ମାଙ୍କ କୃତ ଯଜ୍ଞ ଉଦ୍ଦେଶ୍ୟରେ
ଏହି ଯଜ୍ଞପାଇଁ ସବୁ ସୃଷ୍ଟି ବ୍ରହ୍ମାଙ୍କର
ନିଗମ ସହିତ ଶ୍ରୁତି କରେ ଏ ପ୍ରଚାର
ଉତ୍ତର ଦିଅନ୍ତୁ ଋଷି ଏହି ମୋ ପ୍ରଶ୍ନର
ସେ ଯାଗର ଅଂଶ କିଛି କରିଣ ପ୍ରଚାର
ଅଖଣ୍ଡ କୌତୁକ ସେହି ଯାଗର ଘଟଣା
ନାହିଁ ନଥିଲା ଥିବ ଋଷି ମହାମନା
ବିନା ଭାବନାରେ କିଛି କର୍ମ ହୁଏ ନାହିଁ
ଭାବ ଅନୁରୂପ ଫଳ ତହିଁରୁ ଫଳଇ
ମହାପୁରୁଷ ବ୍ରହ୍ମାଙ୍କ କୃତ ଏ ଯାଗରେ
ନଥିଲା କାମନା ଏହା ନଭାବେ ହୃଦରେ
ସମସ୍ତଙ୍କ ଶୁଭ ପାଇଁ ପିତାମହଙ୍କର
ଏ ଯାଗର ସୃଷ୍ଟି ବୋଲି ହୋଇଛି ପ୍ରଚାର
ଶୁଣିଅଛି ଯେଉଁନାରୀ ନାମ ଶତରୂପା
ସେହିନାରୀ ଗୋଟି ଅଟେ ସାବିତ୍ରୀ ସ୍ୱରୂପା
ଜନନୀ ଅଟନ୍ତି ସେହି ସର୍ବ ଋଷିଙ୍କର
ପୁଲସ୍ତ୍ୟ ଆଦି ଋଷିଏ ତାହାଙ୍କ କୁମର
ତାଙ୍କଠାରୁଁ ଜାତ ଦକ୍ଷ ସପ୍ତପ୍ରଜାପତି
ସ୍ୱାୟମ୍ଭୁବ ମନୁ ଆଦି ତାଙ୍କର ଉତ୍ପତ୍ତି
ସୁହାସିନୀ ପତିବ୍ରତା ସୁଭଗା ସେ ନାରୀ
ସତୀ ସୁବ୍ରତାପଣେ କେ ନୁହେ ତାଙ୍କୁ ସରି

କହ ତାହାଙ୍କୁ କିପରି ଧାତା କଲେ ତ୍ୟାଗ
ଅନ୍ୟ ଏକ ନାରୀ ପ୍ରତି ଧରି ଅନୁରାଗ
କି ନାମ ଅଟେ ଆବର ସେହି ରମଣୀର
କିଏ ସେ ତା ପିତା କିବା କାର୍ଯ୍ୟ ଅଟେତାର
କିପରି ସେ ବିଧାତାଙ୍କ ଦୃଷ୍ଟିକୁ ଆସିଲା
କାହିଁକି କିଏସେ ଆଣି ତାଙ୍କୁ ଭେଟାଇଲା
ତାହାର ରୂପ ସୌନ୍ଦର୍ଯ୍ୟ ଅଟଇ କିପରି
ଯାହାଲାଗି ସେ ହୋଇଲା ଧାତା ମନେ ହାରୀ
ଯାହାକୁ ଦର୍ଶନ କରି ବ୍ରହ୍ମା ପିତାମହ
ଅତି ଶୀଘ୍ର ରୂପେ ଗୁଣେ ହୋଇଗଲେ ମୋହ
କିପରି ସୌନ୍ଦର୍ଯ୍ୟ ତାର କରନ୍ତୁ ବର୍ଣ୍ଣନ
ଯା ଦର୍ଶନେ ବ୍ରହ୍ମା ହେଲେ କାମେ ଶରାଧୀନ
ମରାଳ·ଆସନ ସବୁ ଲୋକର ଈଶ୍ୱର
ଯା ସୌନ୍ଦର୍ଯ୍ୟବଶ ଭାଗ୍ୟବତୀ ସେ ବିଶ୍ୱର
ତ୍ରିଲୋକସୁନ୍ଦରୀ ନିଶ୍ଚେ ହୋଇଥିବ ସେହି
ନୋହିଲେ ବ୍ରହ୍ମାଙ୍କୁ କେବେ ନପାରନ୍ତାମୋହି
ବ୍ରହ୍ମା କେଉଁପରି କରି ସେ ନାରୀ ଗ୍ରହଣ
ଯଜ୍ଞରେ ପ୍ରବୃତ୍ତ ହେଲେ କରତା ବର୍ଣ୍ଣନ
ସାବିତ୍ରୀ ପାଖରେ ଥିଲେ ସେକାଳେ କିକଲେ
ଦେଖି ତାହା ତେବେ କି'ବା ବ୍ରହ୍ମାଙ୍କୁ କହିଲେ
ସାବିତ୍ରୀଙ୍କ ବାକ୍ୟେ ବ୍ରହ୍ମା ଦେଲେ କି ଉତ୍ତର
ସଂକ୍ଷେପରେ ତାହା ମୋତେ କହ ମୁନିବର
ଆପଣତ ସେହିସ୍ଥାନେ ସେତେବେଳେ ଥିଲେ
ବ୍ରହ୍ମାପ୍ରତି କୋପ ଅବା କ୍ଷମା ଆଚରିଲେ
ତହିଁ ଯାହା ହେଲା ତାହା କହ ମୋ ଆଗରେ
ଶୁଣିବାକୁ ଶ୍ରଦ୍ଧା ଅତି ବଳିଛି ଚିତ୍ତରେ
ବିସ୍ତାରି କହିବ ତେବେ କର୍ମ ବ୍ରହ୍ମାଙ୍କର
ସଂପୂର୍ଣ୍ଣରେ ଶୁଣିବାକୁ ଇଚ୍ଛା ଅଛି ମୋର
ଋଷିକୁଳର ଈଶ୍ୱର କହିଲେ ତା ଶୁଣି
ହେ ଭୀଷ୍ମ ପ୍ରଶ୍ନ ତୁମ୍ଭର ନହୋଇବ ଗଣି
କରିବି ଉତ୍ତର ତାର ପାରିବି ମୁଁ ଯାହା
ସାବଧାନେ କୁରୁବୃଦ୍ଧ ଶୁଣ ବସି ତାହା
କ୍ଷମ ହୋଇବ ବ୍ରହ୍ମାଙ୍କ ଭୂତି ବର୍ଣ୍ଣନାରେ
ଏପରି ପୁରୁଷ କିଏ ନାହାନ୍ତି ବିଶ୍ୱରେ
ସହସ୍ର ବଦନ ଭୀଷ୍ମ ଅଟଇ ତାଙ୍କର
ସହସ୍ର ଚକ୍ଷୁରେ ସେହି ଦେଖନ୍ତି ସଂସାର
ସହସ୍ରପାଦ ତାଙ୍କର ସହସ୍ର ଶ୍ରବଣ
ଅବ୍ୟୟ ସେହି ସହସ୍ର କର ମନେ ଘେନ
ସହସ୍ର ଜିହ୍ୱା ସେ ପ୍ରଭୁ କୋଟିଏ ବିଶ୍ୱର
ମହାଲୋକ ପ୍ରଦାନିବା ଶକତି ତାଙ୍କର
ଅକ୍ଷୟଭୂଜ ତାଙ୍କର ହବନ ସଦନ
ସେ ଅଟନ୍ତି ହବ୍ୟ ହେ ତା ଭୀଷ୍ମ ବୀରଗଣ
ସେହି ପାତ୍ର ପୁଣି ସେହି ଅଟନ୍ତି ପବିତ୍ର
ବେଦ, ଦୀକ୍ଷା, ଚରୁ ଶ୍ରୁବ ଶ୍ରୁଚାଦି ସେହିତ
ସେହି ଅଟନ୍ତି ପ୍ରୋକ୍ଷଣୀ ଅବଭୃତ ସେହି
ସେ ସୋମ-ଦକ୍ଷିଣା ପାଇଁ ଧନ ତାଙ୍କୁ କହି
କରୁଥାନ୍ତି ଯେଉଁ ବିପ୍ରଗଣ ସାମଗାନ
ସେ ଯୂପ ସେହି ମସିଧ ସଦସ୍ୟ ସଦନ
ସେହି ସଦ, କୁଶ, ଦର୍ବୀ ସେହି ଉଲୂଖଳ
ହୋତା ପ୍ରାକବଂଶ ବନ୍ଧନ ସେହି ଯଜ୍ଞସ୍ଥଳ
ସେ ଅତି ପ୍ରମାଣ ହ୍ରସ୍ୱ ପ୍ରମାଣ ସ୍ଥାବର
ସେହି ବାଜ ପ୍ରାୟଶ୍ଚିତ ସେ ସର୍ବପ୍ରକାର
ମନ୍ତ୍ର ଯଜ୍ଞ ଅଗ୍ନିଭୁଜ ବହ୍ନିଭାଗ ହୋମ
ହବନ ଶୁଭାର୍ଚ୍ଚି ଭାବ ଉଦାହୃତ୍ୟ ଚର୍ମ
ବେଦବିଦ ଦ୍ୱିଜେ ଡ଼ାକି ସବୁ ବତାଇଲେ
ସେହି ଯଜ୍ଞ ସେ ଶାସ୍ୱତ ଶୁଣ ଭୀଷ୍ମଭଲେ
ତୁମ୍ଭେ ଯା ପଚାରିଥିଲ ସେ ପୁଣ୍ୟ ପ୍ରସଙ୍ଗ
କହିଲି ଯା ଜାଣିଥିଲି କୁରୁବଂଶସ୍ତମ୍ଭ
ବ୍ରହ୍ମା ଯହିଁପାଇଁ ଧର୍ମ କଲେ ଏ ଧରାରେ
ସୁରନର ଲୋକସୃଷ୍ଟି ହିତ କାମନାରେ
ଶୁଣ ଭୀଷ୍ମ ତଦପରେ ବ୍ରହ୍ମାକଲେ ସୃଷ୍ଟି
ପରମେଷ୍ଠି ଦେବଗଣ କପିଳ ସପ୍ତର୍ଷି
ତ୍ରମ୍ବକ ଯଜ୍ଞ ଶ୍ରେଷ୍ଠ ସନତ କୁମାର
ମହାତ୍ମା ମନୁ ସହିତ ପ୍ରଜାପତିଙ୍କର
ପୁରାଣ ବେଦ ଯା ତେଜ ନିନ୍ଦଇ ପାବକ
ବ୍ରହ୍ମା ତେବେ ହେଲେ ଭୀଷ୍ମ ଏହାଙ୍କ ଜାତକ
ଶାୟିତ କମଳକୋଷ ମଧ୍ୟୁ ପ୍ରଥମରେ
ଯହିଁ ଜାତ ହୋଇଥିଲେ ବିଧାତା ପୂର୍ବରେ
ସେ ପଦ୍ମ କୋଷରୁ ମଧ୍ୟ ଜାତ ସବୁଦେବ
ଋଷିଗଣ ସହିତରେ ହେ କୁରୁପୁଙ୍ଗବ
ମହାତ୍ମା ବ୍ରହ୍ମା ସମ୍ଭବ ଯେ ପଦ୍ମ ପୁଷ୍କରୁ
ପୁରାଣ ବେଦ ସହିତା ଶ୍ରୁତି ତାଙ୍କଠାରୁ

ସ୍ମୃତିମୁଖ ବରାହଙ୍କ ବିରଞ୍ଚି ଜନକ
ଇନ୍ଦ୍ରଙ୍କ ସାହାଯ୍ୟେ ତାଙ୍କ ସୃଷ୍ଟି ମନେରଖ
ଯେ ବରାହ ସେ ଅଟନ୍ତି ଦେବଙ୍କ ଈଶ୍ୱର
ବରାହ ରୂପରେ ହୋଇଥିଲେ ଅବତାର
ବିସ୍ତାରଣେ କୋକମୁଖ ତୀର୍ଥର ପୁଷ୍କରେ
ପ୍ରଭୁ ସମାହିତ ଥିଲେ ବରାହ ରୂପରେ
ଚରଣ ଅଟଇ ଚାରି ବେଦ ବରାହର
ଯୂପତାର ଦନ୍ତ ବୋଲି ଘେନ କୁରୁବୀର
ତାହାର ହସ୍ତଟି କ୍ରତୁ ଚିତି ତାର ମୁଖ
ରସନା ଅଗ୍ନି ତା ରୋମ କୁଶ ମନେରଖ
ମହାତପା ବ୍ରହ୍ମା ଅଟେ ତାର ଶୀର୍ଷସ୍ଥାନ
ଅହୋରାତ୍ର ନେତ୍ର ବେଦ ଶ୍ରୁତି ତା ଭୂଷଣ
ଅଟଇ ହେ ଭୀଷ୍ମ ଘୃତ ନାସିକା ତାହାର
ମନେକର ସ୍ରୁବତାର ମୁଖର ଗହ୍ୱର
ଗର୍ଜନ ସେ ବରାହର ସାମବେଦ ଧ୍ୱନୀ
ଜାଣ ଭୀଷ୍ମ ମନେ କିଛି ସଂଶୟ ନଘେନି
ଶ୍ରୀସଂପନ୍ନ ସେ ବରାହ ସତ୍ୟଧର୍ମେ ଯୁତ
ବିକ୍ରମ କର୍ମସଂଭାରେ ଅଟେ ଅତିପୂତ
ପ୍ରାୟଶ୍ଚିତ ଅଟେ ମହାଘୋର ନଖ ତାର
ମଖର ଆକୃତି ତାର ଜାନୁର ସଂଚର
ଉଦ୍‌ଗାତନ୍ତ ହୋମ ଲିଙ୍ଗ ତାର ଅନ୍ତରାତ୍ମା
ଫଳ ବୀଜ ମହୋଦଧି ଯୁକ୍ତ ସେ ମହାତ୍ମା
ମନ୍ତ୍ର ଅସ୍ଥିରେ ଯୁକ୍ତ ସେ ଛେପ ତାର ଜଳ
ଅସ୍ଥିରତା ତାହାଙ୍କର ଅଟେ କୁରୁବୀର
ସ୍କନ୍ଧ ତାହାଙ୍କର ବେଦ ହବି ଅଟେ ଗନ୍ଧ
ହବ୍ୟ କବ୍ୟ ବେଦ ସହ ବେଶୀ ତା ସମ୍ବନ୍ଧ
ପ୍ରାକ୍ତନ ଶରୀର ତାର ସୁଦୀପ୍ତିରେ ଯୁତ
ଆବର ବହୁ ପ୍ରକାରେ ଦୀକ୍ଷା ସମାର୍ଚ୍ଚିତ
ଅଶେଷ ଦକ୍ଷିଣା ଅଟେ ହୃଦୟ ତାହାର
ମହାଯଜ୍ଞ ବରାହ ସେ ଈଶ୍ୱର ବିଶ୍ୱର
ସୁନ୍ଦର କର୍ମଉପାନ୍ତ ଆର୍ଯ୍ୟାବର୍ତ୍ତ ଶିରୀ
ଛାୟା ଜାୟା ପ୍ରଭାବରେ ମଣିଶୃଙ୍ଗପରି
ଉତ୍ସର୍ଗ ତାଙ୍କର ସବୁ ଲୋକ ହିତ ପାଇଁ
ବରାହ ସ୍ୱରୂପ ଧରିଥିଲେ ରମାସାଇଁ
ଉଦ୍ଧରିଣ ପୃଥିବୀକୁ ଦନ୍ତାଗ୍ରେ ଧଇଲେ
ଯେଉଁଠାରେ ପୂର୍ବେ ଥିଲା ତହିଁ ନିବେଶିଲେ
ବରାହ ରୂପରେ ପରାତ୍ପର ଭଗବାନ
ଯା ପରଶ ପାଇ ଧରା ଲଭିଲା ନିର୍ବାଣ
ସାଧିଥିଲେ ପ୍ରଭୁ ବ୍ରହ୍ମା ହିତ ଏହିପରି
ବରାହ ପ୍ରଭୁ ରୂପରେ ଧରା ଦନ୍ତେ ଧରି
ପ୍ରବେଶି ସମୁଦ୍ରଜଳ ମଧ୍ୟେ ଭଗବାନ
ପୁଷ୍କର ମଧ୍ୟରୁ ପୃଥ୍ୱୀ କଲେ ଉଦ୍ଧାରଣ
ଶମ ଦମାଦିରେ ଯୁକ୍ତ ଦିବ୍ୟ କୋକାମୁଖ
ସ୍ଥିତ ହୋଇ ରହିଛନ୍ତି ଶୁଣ ବୀରଶିଖ
କେ କାମୁଖ ତୀର୍ଥବରେ ଅତି ହର୍ଷଭରେ
ସମସ୍ତ ଆଦିତ୍ୟ ବସୁଗଣ ସହିତରେ
ମରୁଦ୍‌ଗଣ ଦେବ ସାଧ୍ୟ ରାକ୍ଷସ କିନ୍ନର
ଦିଗ ବିଦିଗ ପୃଥିବୀ ନଦୀରତ୍ନାକର
ଚରାଚର ଶ୍ରେଷ୍ଠ ଗୁରୁ ବ୍ରହ୍ମାଙ୍କ ସହିତ
ଶୁଣ ଭୀଷ୍ମ ଭଗବାନ ତେବେ କଲେସ୍ଥିତ
ସେହିକାଳେ କହିଥିଲେ ପ୍ରଭୁ ଭଗବାନ
କହୁଛି ପାଳିବ ସର୍ବେ ଯତ୍ନେ ମୋ ବଚନ
ଏ ତୀର୍ଥକୁ ଗୋପନୀୟ ରଖିବ ନିରତେ
ତୁମ୍ଭ ସମସ୍ତଙ୍କୁ ରକ୍ଷା କରିବାନିମନ୍ତେ
କହିଲେ ପ୍ରଭୁଙ୍କୁ ତେବେ ମରାଳବାହନ
ମୋହର ଏହି ମିନତି ଶୁଣ ଭଗବାନ
ଆପଣ କହିଲେ ଯାହା କରିବି ସେପରି
ବିଷ୍ଣୁଙ୍କୁ କହିଲେ ମୋଦେ ସାବିତ୍ରୀ ବିହାରୀ
କହି ଏହା ଆନନ୍ଦରେ ବିଷ୍ଣୁମୁଖ ଚାହିଁ
ପୁଣି ଯା କହିଲେ ତାହା ଶୁଣି କୁରୁସାଇଁ
ତୁମ୍ଭେ ମୋ ପରମଦେବ ମୋ ପରମଗୁରୁ
ତୁମେ ମୋ ପରମଧାମ ବାଞ୍ଛା କଳ୍ପତରୁ
ଶ୍ରେଷ୍ଠ ଦେବ ତୁମେ ଇନ୍ଦ୍ରଆଦି ଦେବଙ୍କରେ
ବିକଶିତ ପଦ୍ମ ଶୋଭା ଯୁଗଳ ନେତ୍ରରେ
ଶତ୍ରୁପକ୍ଷ କ୍ଷୟକାରୀ ସର୍ବଦା ଆପଣ
ନୋହିଲେ ମୋ ଯଜ୍ଞନାଶ ହୋଇଥାଆନ୍ତା ଜାଣ
ଯଜ୍ଞର କ୍ଷୟକାରକ ଦାନବ କୁଳର
ଉତ୍ପାତରୁ କିଏ ରଖିଥାନ୍ତା ଚକ୍ରଧର
ଆପଣଙ୍କ କୃପା ପ୍ରଭୁ ନିହିତ ଏଥିରେ
ତେଣୁ କରୁଛି ପ୍ରଣାମ ତୁମ୍ଭ ପଦାବ୍ଜରେ
ସୁପ୍ରୀତ ହୋଇଣ ସ୍ତବେ କହିଲେ ଶ୍ରୀହରି
ରହ ଦେବଈଶ ହୃଦ ଭୟ ଦୂରକରି

ସମସ୍ତ ଦାନବକୁଳ ମୁ କରିବି କ୍ଷୟ
ବିଘ୍ନକାରୀ ଅନ୍ୟ ଯେଉଁ ଅସୁର ନିଚୟ
ହୁଅନ୍ତୁ ସେ ଯାତୁଧାନ ଅଥବା ଅସୁର
ନିଶ୍ଚୟ ବଧିବି ତାଙ୍କୁ ହେ କଞ୍ଜକୁମର
ଆହେ ପିତାମହ ହେଉ ତୁମ୍ଭର କଲ୍ୟାଣ
କହି ଏହା ସେହି କାଳୁ କମଳାରମଣ
ରହିଲେ ସେ ସ୍ଥାନେ ସୁରକାର୍ଯ୍ୟ ସିଦ୍ଧିପାଇଁ
ସୁରଙ୍କ ସହାୟ ରୂପେ ଶୁଣ କୁରୁସାଇଁ
ଜାଣି ସେ ସମୟ ବାୟୁ ବହିଲା ସଧୀରେ
ପୂତ ମଳୟସୁବାସ ଧରି ସଙ୍ଗତରେ
ସବିଦିଗ ଦଶଦିଗ ନିର୍ମଳ ଦିଶିଲା
ଗ୍ରହ ନକ୍ଷତ୍ରଗଣର ପ୍ରଭା ପ୍ରକାଶିଲା
ସବୁଗ୍ରହ ହର୍ଷେ କଲେ ଶଶି ପ୍ରଦକ୍ଷିଣ
ବିଗ୍ରହ ପରସ୍ପରର ହୋଇଗଲା ଶୂନ୍ୟ
ପ୍ରସନ୍ନ ହୋଇ ସାଗର ସୁସ୍ଥିର ହୋଇଲା
ମୋ କହିବାରୁ ଶୁଣ ଶାନ୍ତନୁଙ୍କ ବଳା
ଧୂଳୀରେ ହୀନ ହୋଇଲା ଧରା ସେ କାଳରେ
ଆହ୍ଲାଦ ନିବାସ କଲା ସକଳ ହୃଦରେ
ସ୍ୱମାର୍ଗରେ ନଦୀଗଣ ହେଲେ ପ୍ରବାହିତ
ସାଗର ହୋଇଲେ ତେବେ କ୍ଷୋଭ ବିରହିତ
ମନୁଷ୍ୟଙ୍କ ହୃଦୟରେ ଇନ୍ଦ୍ରିୟ ସକଳ
ଶାସନ ଅଧୀନ ହୋଇ ରହିଲେ କେବଳ
ପ୍ରବୃତ୍ତ ହୋଇଲେ ସର୍ବେ ଶୁଭ କରମରେ
ପର ପୀଡ଼ା ପ୍ରବୃତ୍ତିକୁ ବରଜି ସୁଚିରେ
ସାଧୁଙ୍କର ଶୋକ ତାପ ସବୁ ନାଶହେଲା
ନିରତ ବେଦର ଚର୍ଚ୍ଚାଚିତ୍ତ ଆଶ୍ରେକଲା
ବେଦ ବାଚନର ସ୍ୱର ହେଲା ଉଚ୍ଚତର
ଯଜ୍ଞରେ ହୋଇଲା ହବି ସୁମଙ୍ଗଳ ଘର
ପାବକର ଶିଖ ହେଲା ମଙ୍ଗଳ ଶକୁନ
ଖୋଜିଲା ନିରତ ଶୁଭକାର୍ଯ୍ୟ ଜନମନ
ଉତ୍ତମ ବୃତ୍ତି ସର୍ବଦା ସର୍ବେ ଆଚରିଲେ
ପ୍ରସନ୍ନତା ଧରି ଭୟ ଦୁଃଖ ବରଜିଲେ
ସତ୍ୟପ୍ରତିଜ୍ଞା ହୋଇଲେ ଭବେ ସବୁନର
ପ୍ରଭୁଙ୍କ ଶ୍ରୀମୁଖ ଶୁଣି ସେ ଅମୀୟଗୀର
ରାକ୍ଷସ ଦାନବ ସହ ଦେବତା ସକଳ
ତେବେ ଭୀଷ୍ମ ସେହିଠାରେ ଆସିହେଲେ ଠୁଳ

ଭୂତ ପ୍ରେତ ପିଶାଚାଦି ଆସିଲେ କ୍ରମରେ
ନାଗ ବିଦ୍ୟାଧର ସହ ଗନ୍ଧର୍ବ କିନ୍ନରେ
ଆଉଷଧି ବନସ୍ପତୀ ଯହିଁ ଯେତେ ଥିଲେ
ଶୁଣ ଭୀଷ୍ମ ସେହିଠାରେ ସେକାଳେ ଆସିଲେ
ଯେଉଁମାନେ ନ ଆସିଲେ ବ୍ରହ୍ମା ଆଦେଶରେ
ବାତଯାଇ ଜଣାଇଲେ ତାହାଙ୍କୁ ସତ୍ୱରେ
ଯେଉଁ ପର୍ବତରେ ଭୀଷ୍ମ ଯଜ୍ଞ ହେଉଥିଲା
ତା ବ୍ୟାପ୍ତି ଶିଖର ଦେଶୁ ଦକ୍ଷିଣକୁ ହେଲା
ଉତ୍ତରଦିଗ ହୋଇଲା ସୁର ନିକେତନ
ସେ ପବିତ୍ର ଶୃଙ୍ଗ ମଧ୍ୟ ଥିଲା ଦେବାଧୀନ
ଗନ୍ଧର୍ବ ଅପ୍‌ସରା ଯେତେ ବେଦବିଦ ମୁନି
ଆବୋରି ରହିଲେ ଯାଗ ପଶ୍ଚିମ ଅବନୀ
ସୁରଙ୍କ ଅହିତକର ଦାନବ ଅସୁର
ସହର୍ଷ ବଦନ ମାତ୍ର ଅମର୍ଷ ଅନ୍ତର
ସର୍ବେଥିଲେ ଋଷିଙ୍କର ସେବା ପରାୟଣ
ସେ ସେବାରେ ନ୍ୟସ୍ତ କରିଥିଲେ ପ୍ରାଣମନ
ତା ମଧ୍ୟରେ ଥିଲେ ବହୁ ଋଷି ବ୍ରହ୍ମଋଷି
ଦେବର୍ଷି ବ୍ରାହ୍ମଣ ସହ ବହୁତ ରାଜର୍ଷି
ଯାଗପାଇଁ ହୋଇଥିଲା ସର୍ବ ସମାଗମ
ରହିଁଥିଲେ ହେବ କେବେ ଆରମ୍ଭ ଯଜନ
ପଶୁ ପକ୍ଷୀ ଯେତେ ଥିଲେ ସମସ୍ତ ବିଶ୍ୱରେ
ରଣ୍ଡ ହେଲେ ତହିଁ ଯାଗ ଦର୍ଶନ ଇଚ୍ଛାରେ
ବ୍ରାହ୍ମଣ ଇତ୍ୟାଦି ବର୍ଣ୍ଣ ପ୍ରିୟ ଯା ଭୋଜନ
ସୁଭୋଜନ ପ୍ରାପ୍ତି ପାଇଁ କଲେ ଆଗମନ
ନିଯେ ବରୁଣ ସେ ଯାଗେ ହୋଇ ଉପସ୍ଥିତ
ଯକ୍ଷ ରକ୍ଷ ସହ ନିଯେ ହେଲେ କର୍ମରତ
ନିଜ ଲୋକ ହାତେ ଅନ୍ନ ପକ୍ୱ କରାଇଲେ
ଦକ୍ଷ ଯକ୍ଷଗଣ କରେ ଖାଦ୍ୟ ପରଷିଲେ
ଭକ୍ଷପରେ ବାୟୁ କରୁଥିଲେ ପରିଷ୍କାର
ରସପକ୍ୱ କରୁଥିଲେ ନିଯେ ଦିବାକର
ଚନ୍ଦ୍ର ନିଯେ କରୁଥିଲେ ଅନ୍ନାଦି ରନ୍ଧନ
ମତି ଗୁରୁ ବୃହସ୍ପତୀ କରୁଥିଲେ ଦାନ
ଧନ ଦେଉଥିଲେ ହର୍ଷଭରେ ଧନପତି
ବସ୍ତ୍ର ପ୍ରଦାନ କାର୍ଯ୍ୟରେ ଥିଲେ ସରସ୍ୱତୀ
ଥିଲା ଭୀଷ୍ମ ସେହି ବସ୍ତ୍ର ବହୁତ ବର୍ଣ୍ଣର
ଯା ପିନ୍ଧିଲେ ଅସୁନ୍ଦର ଦିଶିବ ସୁନ୍ଦର

ନଦୀ ଯେତେ ଜଗତରେ ଭୀଷ୍ମଥିଲେ ରହି
ତାହାଙ୍କ ଅଧ୍ୟକ୍ଷା ଗଙ୍ଗା ନର୍ମଦା ଏ ଦୁଇ
ମହାନଦେ ସେ ଯାଗରେ ଥିଲେ ଉପସ୍ଥିତ
ସଂଶୟ ନମଣ ତିଳେ ଗଙ୍ଗାଦେବୀସୁତ
ସେ ମହା ଯାଗରେ ସୁରଗଣଙ୍କ ଆଗରେ
ବସିଥିଲେ ଋଷିଗଣ ହରଷ ଅନ୍ତରେ
ଋଷିଙ୍କ ସଙ୍ଗରେ ଦେବ କମଳାବଲ୍ଲଭ
ବ୍ରହ୍ମାଙ୍କ ଦକ୍ଷପାରୁଶେ ପାଇଥିଲେ ଠାବ
ବ୍ରହ୍ମା ବାମପାଶେ ଥିଲେ ପିନାକଧାରଣ
ଇଚ୍ଛାବରଯେହୁ କରି ପାରନ୍ତି ପ୍ରଦାନ
ବରିତ ହୋଇ ସେ ସ୍ଥାନେ ଥିଲେ ମହାଋଷି
ଭୃଗୁଋଷି ଯଜ୍ଞେ ଥିଲେ ହୀତାପଣେ ବସି
ପୁଲସ୍ତ୍ୟ ମହର୍ଷି ଥିଲେ ଅଧ୍ୱଜ ରୂପରେ
ଉଦ୍‌ଗାତା ରୂପେ ମରିଚୀ ଥିଲେ ସେ ଯାଗରେ
ବ୍ରହ୍ମ ରୂପେ ବସିଥିଲେ ମହର୍ଷିନାରଦ
ସଦସ୍ୟ ଯାଗରେ ଥିଲେ ଅନ୍ୟ ବେଦବିଦ
ପ୍ରଜାପତି ଦକ୍ଷ ଆଦି ଯେତେକ ବ୍ରାହ୍ମଣ
ଋତ୍ୱିଜ ରୂପେ କଳ୍ପିତ ସର୍ବେ ବୋଲିଘେନ
ମୁଦି କଙ୍କଣ ମୁକୁଟେ ସର୍ବେବିଭୂଷିତ
ହୋଇଥିଲେ ସେ ଯାଗରେ ଶାନ୍ତନୁଙ୍କସୁତ
ଅଷ୍ଟାଦଶ ତଦପରେ ଷୋହଳ ଋତ୍ୱିଜ
ଅତି ନମ୍ରେ ପ୍ରଣମିଲେ ସଭିଙ୍କୁ କଞ୍ଜଜ
ସମସ୍ତଙ୍କୁ ପୂଜାକଲେ ଅତି ଭକ୍ତିରେ
ବିନମ୍ରେ କହିଲେ ସର୍ବେ ପୁରି ଯୋଡ଼କରେ
ଏ ଯଜ୍ଞରେ ସର୍ବେ ମୋରେ କରି ଅନୁଗ୍ରହ
ସାଦରେ ଗ୍ରହଣକର ମୋହର ବିନୟ
ବରବର୍ଣ୍ଣିନୀ ସାବିତ୍ରୀ ପତ୍ନୀ ବ୍ରହ୍ମାଙ୍କର
ବିଧିରେ ଲଭିବେ ଏଥି ଉଚିତ ସତ୍କାର
ଅଧ୍ୱଜ ଯାଇଣ ତାଙ୍କୁ ଆଣନ୍ତୁ ତୁରିତେ
ଶ୍ରେଷ୍ଠ ଅଧ୍ୱଜ ଚଳିଲେ ବ୍ରହ୍ମାଇଚ୍ଛାମତେ
କହିଲେ ଅଧ୍ୱଜ ଦେବୀ ଆସନ୍ତୁ ତୁରିତ
ଦୀକ୍ଷା ବେଳ ହେଲା ଅଗ୍ନିଜ୍ୱଳେ ପ୍ରଜ୍ୱଳିତ
ସାବିତ୍ରୀ ବହୁତ କାର୍ଯ୍ୟେ ବ୍ୟସ୍ତଥିଲେ ଯେଣୁ
ଡ଼ାକିବା ମାତ୍ରକେ ଆସି ନପାରିଲେ ତେଣୁ
ଜାଣ ଭୀଷ୍ମ ଅଟଇ ଏ ନାରୀଙ୍କ ସ୍ୱଭାବ
ବୁଡ଼ିଯାଉ ଘର ତାଙ୍କ କାର୍ଯ୍ୟ ଆଗ ହେବ

ଋତ୍ୱିଜ କହିଲେ ଯାଇ ଶୁଣ ପଦ୍ମସୁତ
ଘର କାର୍ଯ୍ୟରେ ସାବିତ୍ରୀ ଅଛନ୍ତି ନିଯୁକ୍ତ
କହିଲେ ପାଖରେ ମୋର ସଖୀ କେହିନାହିଁ
ବିଳମ୍ବ ହୋଇବ ତେଣୁ ଯାଗେ ଯିବାପାଇଁ
ତଥାପି କହିଲୁ ଆମ୍ଭେ ଯାଗର ସମୟ
ହେଲାଣି ତେଣୁ ଏକ୍ଷଣି ଆସନ୍ତୁ ନିଶ୍ଚୟ
କରୁଅଛୁ ନିବେଦନ ତେଣୁ ପିତାମହ
କରନ୍ତୁ ପରିବର୍ତ୍ତନ ଯାଗର ସମୟ
ଯେ ସମୟ ଆପଣଙ୍କ ପସନ୍ଦ ହୋଇବ
କହିଲେ ଯଜ୍ଞର କର୍ମ ବନ୍ଦ ହୋଇଥିବ
ଶୁଣି ତାହା ବ୍ରହ୍ମାହୃଦେ କ୍ଷୋଭହେଲା ଜାତ
କହିଲେ ତେବେ ଇନ୍ଦ୍ରଙ୍କ କ୍ରୋଧେହୋଇ ଯୁତ
ମୋ ନିମନ୍ତେ ଯଜ୍ଞ କର୍ମ ବନ୍ଦ ନ ହୋଇବ
ଯଥା ସମୟେ ସଂପନ୍ନ ନିଶ୍ଚୟ ତା ହେବ
ମୋ ନିମନ୍ତେ ଅନ୍ୟ ପତ୍ନୀ କର ଅନ୍ୱେଷଣ
ଯାହାକୁ ପାଇବ ତାକୁ ବେଗେ ଯାଇ ଆଣ
ନଷ୍ଟ ନକର ସମୟ ବୃଥା ଠିଆ ହୋଇ
ନୀଚତା ଏଥିରେ ଇନ୍ଦ୍ର କିଛିମାତ୍ର ନାହିଁ
ଯେଉଁ ଉପାୟରେ ହେଉ ଆଣ ଏକ ନାରୀ
ଯଜ୍ଞ ଶେଷ ଯାଏ ରହୁ ହୋଇ ମୋର ସ୍ତିରୀ
ଏଥିପାଇଁ ମନେ କିଛି ଚିନ୍ତା ନ କରିବ
ଯଜ୍ଞ ଶେଷହେଲେ ତାର ପତ୍ନୀତ୍ୱ ସରିବ
ଆଦିଷ୍ଟ ହୋଇ ଏପରି ଶଚୀଙ୍କ ରମଣ
ସେହିକ୍ଷଣି ଯାଇ କଲେ ଜଗତେ ଭ୍ରମଣ
ବିବାହିତା ସର୍ବେ ଦେଖିଲେ ସେ ଯେତେନାରୀ
ଅବିବାହୀ ମାତ୍ରଥିଲା ଗୋଟିଏ ଆଭିରୀ
ରୂପ ଲାବଣ୍ୟରେ ଯୁତ ସେ ନବ ଯୁବତୀ
ନାସିକା ଅତି ସୁନ୍ଦର ଆବର ସୁଦତି
ପାଦ୍ମ ପାଖୁଡ଼ା, ପରାୟେ ତା ବେନି ନୟନ
ସବୁ ଅବୟବ ଅଟେ ଅତି ମନୋରମ
ଦେବତା ଗନ୍ଧର୍ବ ନାଗ ଅଥବା ଅସୁର
ଘରେ ଏପରି ସୁନ୍ଦରୀ ମିଳିବା ଦୁଷ୍କର
ଆଭିରୀ କନ୍ୟା ତଥାପି ସୌନ୍ଦର୍ଯ୍ୟ ଗୁଣରେ
ଅଧିକ ହେଲା ଏ କନ୍ୟା ଇନ୍ଦ୍ରଙ୍କ ମତରେ
ପ୍ରତୀତି ହେଲା ଇନ୍ଦ୍ରଙ୍କୁ ତେବେ ଏହିପରି
ଦ୍ୱିତୀୟ ଲକ୍ଷ୍ମୀ ଅଥବା ଅଛି ଅବତରି

ମନ ବୁଦ୍ଧି ତା ସୌନ୍ଦର୍ଯ୍ୟ ବର୍ଣ୍ଣନପାରିବ
ବିଶ୍ୱର ରୂପ ସଂଭାର ତାଠୁଁ ଊଣାହେବ
ନିଜ ସୌନ୍ଦର୍ଯ୍ୟରେ ଗର୍ବ ଯେ ଜନ କରିବ
ସେ ଦେଖିଲେ ଏ କନ୍ୟାକୁ ନିଶ୍ଚେ ମୋହହେବ
ସେ କନ୍ୟା ଲଭେ ଜୀବନ କରିଦେବ ପଣ
ଆହେ ଭୀଷ୍ମ ସେ କନ୍ୟାର ଏପରି ଲକ୍ଷଣ
ଉପମା ରହିତ ଶ୍ରେଷ୍ଠ ତନୁ ବରାଙ୍ଗୀର
ଯୁଗେ ଯୁଗେ ଖୋଜିଲେହେଁ ନୋହିବ ଗୋଚର
ସେ କନ୍ୟାକୁ ଦେଖି ଇନ୍ଦ୍ର ଚିତ୍ତେ ଚିନ୍ତାକଲେ
କେତେକାଳ ଲାଗି ବିହି ଏହାକୁ ସର୍ଜିଲେ
ବ୍ରହ୍ମା ପତ୍ନୀ ପାଇଁ ଯୋଗ୍ୟ ଅଟେ ଏ ନବୀନା
ବିଶ୍ୱେ ନଥିବ ଏପରି ଆଉ କେ ଅଙ୍ଗନା
ରତ୍ନରୁ ଅଧିକ ଅଟେ ଏ ନାରୀରତନ
ନେବି ମୁଁ ଏହାକୁ ଏବେ କରି ମୁଁ ଯତନ
ବ୍ରହ୍ମାଙ୍କପାଶେ ବସିବା ଯୋଗ୍ୟ ଅଟେ ଏହି
ସୌଭାଗ୍ୟ ଏହାର କର୍ମେ ଅଛି ଲେଖାହୋଇ
ପଚ୍ଚରିଲେ ଇନ୍ଦ୍ର ଯାଇ ସମୀପକୁ ତାର
କିଏ ତୁମେ କହ କିଏ ତୁମ୍ଭର ପିଅର
କେଉଁଠାରୁ ଆସିଅଛ କହ ତା ବୁଝାଇ
ଏକାକୀ ଏହି ବଣରେ ବୁଲୁଛ କିପାଇଁ
ଇନ୍ଦ୍ରଙ୍କ ବଚନ ଶୁଣି ସେହି ଗୋପଲୁଣୀ
କହିଲା ମୁଣ୍ଡେ ଓଢ଼ଣା ଅଳ୍ପ ଦେଇ ଟାଣି
ଗଉଡ଼ ଘରର ଝିଅ ଅଟଇ ମୁଁ ବୀର
ଗୋରସ ବିକିବା ଅଟେ ବେଉଷା ମୋହର
ଗୋରସ ବିକିବାପାଇଁ ଯାଉଅଛି ଏବେ
ନିଅ ଲହୁଣୀ ଉତ୍ତମ ଅଛି ନେବ ଯେବେ
ଆହୁରି ନିଅନ୍ତୁ ଅଛି ଭଲ ବସା ଦହି
ଖାଇଥିଲେ ଥରେ କେବେ ପାଶୋରିବ ନାହିଁ
ଦୁଧ,ଦହି ଅବା ଚହ୍ଲା ଯା ଇଚ୍ଛା ଖାଇବ
ଉପଯୁକ୍ତ ମୂଲ୍ୟ ତାରଭାବି ମତେ ଦେବ
ଗଉଡୁଣୀଠାରୁ ଶୁଣି ଏସନ ବଚନ
ଧଇଲେ ଦୃଢ଼େ ତା କର ଶଚୀଙ୍କ ରମଣ
ନ କହି କିଛି ତାହାକୁ ଯାନେ ବସାଇଲେ
ଯହିଁ ଯାଗ ହେଉଥିଲା ସେହିଠାକୁ ଗଲେ
ଅପେକ୍ଷାରେ ଥିଲେ ତହିଁ କମଳ ଆସନ
ଦେଖିଲେ ଇନ୍ଦ୍ର ଆନୀତ ସେ କନ୍ୟା ରତନ

କାନ୍ଦୁଥିଲା ବାଳୀ ସ୍ମରିନିଜ ପିତାମାତା
କହୁଥିଲା ଉଚ୍ଚେ ଡାକି ତେବେ ଏହି କଥା
ବାପା ମାଆ ଭାଇ ସର୍ବେ ଅଛ କେଉଁଠାରେ
ଏ ଲୋକ ଆଣିଛି ଧରି ମୋତେ ବଳକ୍ରାରେ
ଦଳାଃ ଗୋପାଳୁଣୀ ବହୁ ଚିତ୍କାର ଏପରି
ଦେଖି କହିଲେ ତାହାକୁ ନମୁଚୀ ବଇରି
କହିଲେ ବାଳୀ ତୋତେ ମୁଁ ଆଣିଅଛି ଧରି
ହୋଇବୁ ତୁ ଏହି ମହାପୁରୁଷଙ୍କ ନାରୀ
ପଦ୍ମପଲାଶ ଈକ୍ଷଣୀ ତୁ ବର ବର୍ଣ୍ଣିନୀ
ହେବୁ ତୁ ତିନି ଲୋକର ନାରୀ ସୀମାନ୍ତିନୀ
ଏବେ ବରାଙ୍ଗୀରେ ଚିନ୍ତା ଶୋକ ପରିହର
ରହିଁଲା ବ୍ରହ୍ମାଙ୍କୁ ବାଳା ଶୁରି ଇନ୍ଦ୍ରଗୀର
ଅତି ସୁନ୍ଦର ଆବର ସୁକାନ୍ତିରେ ଯୁତ
ବ୍ରହ୍ମାଙ୍କ ଦର୍ଶନେ ବାଳା ହେଲା ସ୍ତମ୍ଭୀଭୂତ
ସେହି ସମୟକୁ କାମ ରହିଁ ରହିଥିଲା
ଅଳପ ଆମଞ୍ଜି ଧନୁ ଶର ସନ୍ଧାନିଲା
ତା ହୃଦେ କାମ ବାସନା ହୋଇଲା ଅଙ୍କୁର
କମଳ ସଦୃଶ ନେତ୍ର ଦେଖି ବ୍ରହ୍ମାଙ୍କର
ଆଜାନୁଲମ୍ବିତ ବାହୁ କଣ୍ଠେ ପଦ୍ମମାଳ
ପୀନବକ୍ଷ ହସ୍ତୀହସ୍ତ ସମ ଉରୁସ୍ଥଳ
ଉନ୍ନତ ଶୋଣିତ ଦହୀ ପରି ଦେହ ଆଭା
ଦେଖି ବ୍ରହ୍ମା କାନ୍ତି ଗୋପାଳୁଣି ହେଲା ଲୋଭା
ନିଯେ ନିଯେ ସେଥିପାଇଁ ଦେଲା ସୀଉକାର
ବେଳଜାଣି କଲା ମାର କର୍ତ୍ତବ୍ୟ ତାହାର
ରହିଲା ମଉନେ ତେବେ ମନ ଥିଲାପରି
ପାଖକୁ ଯିବାକୁ ନିଯେ ହେଲା ସେ ତିଆରି
ପ୍ରଭୁତ୍ୱ ଲଭିବି ବୋଲି ହୃଦେ ଚିନ୍ତାକଲା
ଇଚ୍ଛାକରି ମନେ ମନେ ସମର୍ପିତ ହେଲା
ଚିନ୍ତା ଯେବେ କରୁଥିଲା ସେ ଗୋପସୁନ୍ଦରୀ
ଆନନ୍ଦେ ବ୍ରହ୍ମାଙ୍କୁ ମନେ ବରରୂପେ ବରି
କହିଲେ ଇନ୍ଦ୍ରଙ୍କୁ ତେବେ ଡ଼ାକି ପଦ୍ମଯୋନି
ବିଳମ୍ବ ନକରି ଆସ ତାକୁ ସଙ୍ଗେ ଘେନି
ଯଜ୍ଞ କାର୍ଯ୍ୟରେ ବିଳମ୍ବ ନୁହଇ ଉଚିତ
ଗାୟତ୍ରୀ ବୋଲି ଏହାର ନାମ ହେଉ ଖ୍ୟାତ
ବ୍ରହ୍ମାଙ୍କ ଏହି ବଚନ ଶୁଣି ଲକ୍ଷ୍ମୀପତି
କହିଲେ ତାହାଙ୍କୁ ଯାହା ଶୁଣ ଭୀଷ୍ମ ରଥୀ

ଏହି ଗୋପାଙ୍ଗନା ହୋଇ ମୋଦ୍ୱାରା ଅର୍ପିତ
ଚିରକାଳ ବାସ କରୁ ତୁମ୍ଭର ସହିତ
ମୋର କଥା ମାନି ତୁମ୍ଭେ ଆହେ ପିତାମହ
ଗାୟତ୍ରୀ ବିଧିରେ ଏହି କନ୍ୟା ବିଭାହୁଅ
ନକରି ଏଥିରେ ଆଉ କୌଣସି ବିଗ୍ରହ
ଏକ୍ଷଣି ଏଠାରେ ହୋଇଯାଉ ବିଭାଘର
ବ୍ରହ୍ମାଙ୍କ ସ୍ୱୀକୃତୀ ଜାଣି ତେବେ ଲକ୍ଷ୍ମୀପତି
କନ୍ୟାକୁ ବ୍ରହ୍ମା ବାମାଂଶେ ବସାଇ ଝଟତି
ଗାନ୍ଧର୍ବ ମତେ ବିବାହ ଯେଣୁ ବଢ଼ାଇଲେ
ସେ ଦିନୁ ଗାୟତ୍ରୀ ବ୍ରହ୍ମାସଙ୍ଗେ ଯୋଡ଼ିହେଲେ
ଆନନ୍ଦ ହୋଇଣ ବ୍ରହ୍ମା ନୂଆ ଭାର୍ଯ୍ୟା ପାଇ
ଅଧ୍ୱଜେ ଡ଼ାକି କହିଲେ ପାଖରେ ବସାଇ
ଭାର୍ଯ୍ୟାରୂପେ ଏହାଙ୍କୁ ମୁଁ କରିଛି ଗ୍ରହଣ
ଏହାଙ୍କ ସଙ୍ଗତେ ତୁମ୍ଭେ ଯାଅ ମୋ ସଦନ
ରଖାଇ ଏହାଙ୍କୁ ତହିଁ ବେଗେ ଆସ ଫେରି
ଅଧ୍ୱଜଙ୍କ ସଙ୍ଗେ ଗଲେ ଗାୟତ୍ରୀ ସୁନ୍ଦରୀ
ତେବେ ନବ ବିବାହିତା ପତ୍ନୀ ବ୍ରହ୍ମାଙ୍କର
ମୃଗଚର୍ମ ପରିହିତ ଦଣ୍ଡ ଉଦୁମ୍ବର
ଧରି କରେ ଅଧ୍ୱଜଙ୍କ ସଙ୍ଗତରେ ଗଲେ
ରୋମବାସ ଦେଇ ନିଜ ମୁଖ ଢ଼ାଙ୍କିଥିଲେ
ମୃଗଚର୍ମ ପିନ୍ଧି ଉଦୁମ୍ବର ଦଣ୍ଡଧାରି
ଶୋଭୁଥିଲେ ବ୍ରହ୍ମା ଅଦଭୂତ ତେଜ ଧରି
ପୂର୍ଣ୍ଣ ବେଦବେତ୍ତା ବିପ୍ରଗଣ ସହିତରେ
ରତହେଲେ ତେବେ ଯଜ୍ଞ କର୍ମ ଆରମ୍ଭରେ
ସେ ସମୟେ ଭୃଗୁ ଆଦି ଋତ୍ୱିଜ ମଣ୍ଡଳ
ବେଦ ବିଧିରେ ସମସ୍ତ ଦ୍ରବ୍ୟ କରି ଠୁଳ
ସାଧିରେ ଯଜ୍ଞର କର୍ମ ବେଦ ବିଧିମତେ
ଏ ପୁଷ୍କର କ୍ଷେତ୍ରେ ଶୁଣ ଭୀଷ୍ମ ମହାମତେ
ଶେଷହେଲା ଏଥି ବ୍ରହ୍ମା ଯଜ୍ଞର ବର୍ଣ୍ଣନ
କ୍ଷମାକର ସୁଧୀ ଦୋଷ ଏ ମୋ ନିବେଦନ
ବ୍ରହ୍ମା ବିବାହ ନିମନ୍ତେ ମୁଁ କିବା ସମର୍ଥ
ଗୋପୀନାଥ ନାମେ ତହିଁ ହୋଇଛି ମୁଁ ଖ୍ୟାତ
ଏ ଶାସନ ଦାନ ନଳିନାକ୍ଷ ଦେବଙ୍କର
ତେଣୁ ତାରନାମ-ବୀର ନଳିନାକ୍ଷ ପୁର
ଶଂଖଚକ୍ରଧର ସଦା ରାଜ ମୋ ନୟନେ
ଏତିକିମାତ୍ର ମିନତି ତୁମ୍ଭ ଶ୍ରୀଚରଣେ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ ବ୍ରହ୍ମଦେବକୃତ
ଯଜ୍ଞ ବର୍ଣ୍ଣନୋ-ନାମ ଦଶମୋଽଧ୍ୟାୟ ।

❑

## ଏକାଦଶ ଅଧ୍ୟାୟ

### ନନ୍ଦାଧେନୁ – ବ୍ୟାଘ୍ର ଉପାଖ୍ୟାନ

କହିଲେ ଶାନ୍ତନୁ ସୁତ ଶୁଣ ମହାଯତି
ମୋ ପକ୍ଷରେ ଏହା ଅଟେ କଉତୁକ ଅତି
ସରସ୍ୱତୀ ଠାରେ ନନ୍ଦା ଶବ୍ଦ କାହିଁପାଇଁ
ପ୍ରୟୋଗ ହୋଇଲା ତାହା କହ ଋଷିସାଇଁ
କିଏକଲା କାହିଁ ପାଇଁ ଏପରି ହୋଇଲା
ଘଟଣା କି ପୂର୍ବେ କିଛି ଏପରି ଘଟିଲା
ଯା ଘେନି ନନ୍ଦା ହୋଇଲା ଶ୍ରେଷ୍ଠ ନଦୀଙ୍କରେ
କହିବାହେଉ ସେ କଥା ମୋତେ ସବିସ୍ତାରେ
ଭୀଷ୍ମଙ୍କ ପ୍ରଶ୍ନେ ପୁଲସ୍ତ୍ୟ ବିହିଲେ ଉତ୍ତର
ଅତି ପୂର୍ବର ସେ କଥା ପୁଣି ଚମତ୍କାର
ଯେଉଁ କାରଣରୁ ନନ୍ଦା ନାମ ହେଲା ଖ୍ୟାତ
ନଦୀଙ୍କ ମଧ୍ୟେ ସେ କିପାଁ ହୋଇଲା ବିଖ୍ୟାତ
ସେ କଥା କହିବି ଶୁଣ ଗଙ୍ଗାଙ୍କ ତନୟ
ଶୁଣିଲେ ସବୁ ସଂଦେହ ଭଜିବ ବିଲୟ
ଅତି ପୂର୍ବେ ଥିଲା ଏକ କ୍ଷତ୍ରିୟ ସଂତାନ
ସୁଶୀଳ ସେ ନାମ ତାର ଅଟେ ପ୍ରଭଞ୍ଜନ
ମହା ବଳଶାଳୀ ଅଟେ ସେହି ନରପତି
ମୃଗୟା ନିମନ୍ତେ ଯାଏ ଅରଣ୍ୟକୁ ନିତି
ବହୁ ମୃଗ ମାରି ମାଂସ କରଇ ଆହାର
ନଥାଏ ମାଂସ ଅଭାବ କୁଟମ୍ବକୁ ତାର
ଦିନେ ଏକ ନଦୀତୀରେ ବସି ନରପତି
ଲକ୍ଷ କରୁଥିଲା ଦୃଢ଼େ ମୃଗଙ୍କର ଗତି
ଲତା ଉହାଡ଼ରେ ଲୁଚି ବସିଥିଲା ଯେଣୁ
ପଶୁଏ ତାହାକୁ ଦେଖି ନପାରିଲେ ତେଣୁ
ଦେଖିଲା ନୃପତି ସେହିକାଳେ ଅଳ୍ପଦୂରେ
ସୁନ୍ଦର ଏକ ହରିଣୀ ଲତା ଅଭ୍ୟନ୍ତରେ
ଧୀରେ ଧୀରେ ନରପତି ସେ ଦିଗକୁ ଗଲା
ଅତି ତୀକ୍ଷ୍ଣଶରେ ମୃଗୀ ଅଙ୍ଗ ଭେଦକଲା

ଶରାଘାତ ଲଭି ମୃଗୀ ହୋଇଲା ଚକିତ
କଲବଳେ ସବୁଆଡ଼େ କଲା ଦୃଷ୍ଟିପାତ
ଅଳ୍ପଦୂରେ ଦେଖି ଶସ୍ତ୍ରଧାରୀ ନରପତି
କହିଲା ବଧିଲୁ ମୋତେ କିପାଁ ମୂଢ଼ମତି
ଏ ଅଟେ ତୋହର ଅତି ଦୁଷ୍କର କରମ
ଏହିପରି ଅନ୍ୟାୟକୁ ନ ସହେ ଧରମ
ତଳକୁ ମୁଖକରି ମୁଁ ଶୋଇଥିଲି ସୁଖେ
ସ୍ତନକୁ ଗୁଞ୍ଜିଦେଇ ମୋ ଶିଶୁ ସୁତ ମୁଖେ
ଶରବିଦ୍ଧ କଲୁମୋତେ ତୁ ମାଂସ ଲୋଭରେ
ନିର୍ଭୟ ହେତୁ ମୋ ଲକ୍ଷ ନଥିଲା ତୋଠାରେ
ଲତା ଉହାଡ଼ରେ ମୋରକ୍ଷୁଧିତ ସଂତାନେ
କରାଉଥିଲି ମୁଁ ବୋଧ ତାକୁ କ୍ଷୀରପାନେ
ଏପରିସ୍ଥିତିରେ ଯେବେ ମୃଗ ରହିଥିବ
ତାକୁ ଯେ ମାରିବ ତାର ଅନ୍ୟାୟ ହୋଇବ
ବହୁବାର ଏହିକଥା ଶୁଣାଅଛି ମୋର
ଧର୍ମହାନୀ ହୁଏ କଲେ ଅନ୍ୟଥା ଏହାର
ଅଧର୍ମ ଅଟଇ ତୋର ଏହି ଆଚରଣ
ଅବିଚାରେ ନାଶ ଯେଣୁ କଲୁ ମୋର ପ୍ରାଣ
ନିର୍ଦୋଷୀ ମୁଁ ରହିଥିଲି ଏହି କାନନରେ
ଅତର୍କିତେ ପ୍ରବେଶିଣ ତୁହି ଏହିଠାରେ
ମୋ ଦେହେ ସଂଧାନକଲୁ ବଜ୍ରସମ ବାଣ
ଜାଣୁଛି ଏକ୍ଷଣି ଚାଲିଯିବ ମୋର ପ୍ରାଣ
ତେଣୁ ମୋର ଶାପ ଫଳେ ରାକ୍ଷସ ସ୍ୱଭାବ
ଧରିବୁ ନିଶ୍ଚୟ ତାହା ଅନ୍ୟଥା ନୋହିବ
ଏ ବନ ଚୌଦିଗେ ଅଛି ଯେଉଁ କଣ୍ଟାବାଡ଼
ବ୍ୟାଘ୍ରରୂପେ ତା ମଧ୍ୟରେ ରହ ତୁହି ମୂଢ଼
ଆଗେ ରହି ହରିଣୀର ଶାପ ନୃପ ଶୁଣି
ବ୍ୟଥିତ ଇନ୍ଦ୍ରିୟେ ପୁଣି ହୋଇ ଯୋଡ଼ପାଣି
କହିଲେ ହରିଣୀ ମୋର ନଥିଲା ଏ ଜ୍ଞାନ
ଶିଶୁ ସଂତାନକୁ ଦେଉଥିଲୁ କ୍ଷୀରପାନ
ଜାଣିଥିଲେ ତୋତେ କିପାଁ ଶରେ ଆନ୍ତିମାରି
କ୍ଷମ ଏହି ଦୋଷ ମୋର ଚିତ୍ତେ ଚିନ୍ତାକରି
ଫେରାଇ ନିଅ ହରିଣୀ ଶାପକୁ ତୁମର
ମୋତେ ଦାନକର ମୋର ମନୁଷ୍ୟ ଶରୀର
ମୋ ବିନତି ଶୁଣି ମୋରେ ହୁଅ ତୁ ପ୍ରସନ୍ନ
ଅଜ୍ଞାନଜ ଯାହା ଦୋଷେ ତା ନୁହେ ଗଣନ
ତୁମେ ଦେବା ଶାପ ଯଦି ଅବଶ୍ୟ ଫଳିବ
କହ ତେବେ କିପରି ତା ମୋଚନ ହୋଇବ
କେବେ ମୁଁ ପାଇବି ମୋର ମନୁଷ୍ୟ ଶରୀର
ହରିଣୀ ଗୋ ଦୟା ବହି ପ୍ରକାଶ ତା କର
ଦୁଃଖାର୍ତ୍ତ ନୃପତିଙ୍କର ସେ ବଚନ ଶୁଣି
ଅଳ୍ପ ଶାନ୍ତ ହୋଇ ତେବେ କହିଲା ହରିଣୀ
ଆହେ ନୃପ ଏହି କଥା ମନେ ରଖିଥିବ
ଶହେ ବର୍ଷ ଏ ବନରେ ବ୍ୟାଘ୍ର ରୂପେଥିବ
ନନ୍ଦା ନାମେ ଧେନୁ ଶତ ବର୍ଷ ପୂର୍ତ୍ତିପରେ
ଦୈବବଳେ ପ୍ରବେଶିବ ଆସି ଏ ବନରେ
ତା ସଙ୍ଗତେ ନୃପ ହେବ ତୁମ୍ଭ ସଂଭାଷଣ
ତେବେ ଜାଣିବ ହୋଇବ ଏ ଶାପ ମୋଚନ
ମୃଗୀର ବଚନ ଯେବେ ହୋଇଗଲା ଶେଷ
ବ୍ୟାଘ୍ରରୂପ ହେଲେ ପ୍ରଭଞ୍ଜନ ନରଈଶ
ଅତି ତୀକ୍ଷ୍ଣ ନଖଦନ୍ତ ଅଟେ ସେ ବାଘର
ସେ ସମୟେ ଅଟେ ଯାହା ଆୟୁଧ ତାହାର
ଅତି ବିଶାଳ ସେ ବାଘ ଅତ୍ୟନ୍ତ ଭୀଷଣ
ପ୍ରାଣୀ ଭୟ ଉତ୍ପାଦକ ତାହାର ଗର୍ଜନ
ବାଘ ରୂପେ ସେ ବନରେ ନୃପତି ରହିଲା
ନିତି ପଶୁ ମାରି ମାଂସେ କ୍ଷୁଧା ନିବାରିଲା
ପଶୁ ମାଂସ ଖାଇ ଖାଇ ବିରକ୍ତ ହୋଇଲା
ଦ୍ୱିପଦ ମାସରେ ତେବେ ଲାଳସା ବଢ଼ିଲା
ବ୍ୟାଘ୍ରରୂପେ ରହିଥିଲା ସେ ବନେ ନରେଶ
କ୍ରମେ ଶହେଟି ବର୍ଷର ହୋଇଗଲା ଶେଷ
ମୃଗୀ ଶାପରେ ସେ ହୋଇଥିଲା ଜାତିସ୍ମର
ତେଣୁ ବ୍ୟାଘ୍ର ଏହାକଲା ମନରେ ବିଚାର
କେବେ ପୂର୍ବ ମନୁଷ୍ୟତା ପ୍ରାପ୍ତହେବି ମୁହିଁ
ତେବେ ଆଉ ପାପ କେବେ ମୁଁ କରିବି ନାହିଁ
ଏହାପରେ ପାପ ଯେବେ କରିବି ଆବର
ଅତି କୁତ୍ସିତଯୋନୀରେ ଜନ୍ମ ହେବ ମୋର
ଖୋଜୁଥିଲି ମାଂସ ଯେଣୁ ଶୀକାରି ରୂପରେ
ମନୁଷ୍ୟ ଭୟଦରୂପ ପାଇଲି ଶେଷରେ
ମନୁଷ୍ୟ ସହିତ ମୃଗ ଯଦ୍ୟପି ଦେଖିବି
ତାଙ୍କଠାରେ କେବେ ଆଉ ହିଂସା ନ କରିବି
ସାତ ପୁରୁଷର କୀର୍ତ୍ତି ବୁଡ଼ିଲା ମୋହର
ନିଜ ଦୋଷୁ ଲଭିଲି ଏ ଜନମ ଦୁସ୍ତର

ଭଲକୁଳେ ଜନ୍ମ ହୋଇ ମୁଁ ହେଲି ଏପରି
ଅନ୍ୟ କିଛି ନୁହେଁ ଏହା କାଳର ଚତୁରୀ
ଏ ଗତି ହୋଇଛି ମୋର ହିଁସା ସକାଶରୁ
କେଉଁପରି ମୋକ୍ଷ ଏବେ ହୋଇବି ଏଥିରୁ
ହରିଣୀର ବାଣୀ ସତ୍ୟ କେବେ ଆଉ ହେବ
ଦଇବ ଜାଣଇ ତାହା କେ କହି ପାରିବ
ବ୍ୟାଘ୍ରରୂପୀ ନୃପ ଯେବେ ଏହା ଚିନ୍ତୁଥିଲା
ଶହେବର୍ଷ ସେକାଳକୁ ପୂର୍ଣ୍ଣ ହୋଇଗଲା
ସେ ବନରେ ଘାସ ପାଣି ଥିବାରୁ ପ୍ରଚୁର
ଆଗମନ ବେଳେ ବେଳେ ହୁଏ ଧେନୁଙ୍କର
କ୍ରମେ ଏଥି ଗୋରୁଙ୍କର ହେଲା ଆଗମନ
ଗୋଧୂଳୀରେ ମୁଖରିତ ହେଲା ସେହିବନ
ଗୋକୁଳର ଆଗମନେ ଗଉଡ଼େ ଆସିଲେ
ସେ ବନକୁ ନିରନ୍ତରେ ମୁଖରିତ କଲେ
ରାତ୍ରୀକାଳେ ଗୋପାଳଙ୍କ ଶୁଭେ ବେଣୁଧ୍ୱନୀ
ଶୁଣି ଧନ୍ୟ ହୁଏ ସେହି ଅରଣ୍ୟ ଅବନୀ
ଖଜୁରୀ ସେହି ବନରେ ଥିବାରୁ ପ୍ରଚୁର
ତେଣୁ ତାହା ହୋଇଥାଏ ଗୋପଳଙ୍କଘର
ଗାଈଙ୍କର ମଧ୍ୟେ ଯେହୁ ଅଟଇ ପ୍ରଧାନ
ନନ୍ଦାବୋଲିଣ ଅଟଇ ସେହି ଗାଈ ନାମ
ଗୁଣ ଅନୁରୂପ ବର୍ଣ୍ଣ ଅଟଇ ତାହାର
ତା ପହ୍ନାରୁ ବହୁକ୍ଷୀର ଝରଇ ଆବର
ମାଠିଆ ପରାଏ ପହ୍ନା ଲମ୍ବ ତାର ନାକ
ସମସ୍ତ ଅଙ୍ଗର ଠାଣି ଅଟଇ ଅଧିକ
ପ୍ରଶଂସନୀୟ ଗଠନ ତାହାର ଅଟଇ
ବାହୁନି ଦେବା ନିମନ୍ତେ ଖୁଣ କିଛି ନାହିଁ
ନୀଳବର୍ଣ୍ଣ କଣ୍ଠ ତାର ପାତଳ ତା ଚର୍ମ
ତାହାର ସମସ୍ତ ଅଙ୍ଗ ଅଟେ ଅନୁପମ
କମ୍ବଳ ଶୁଭ ପ୍ରଦାତା ଅଟଇ ତାହାର
ହମ୍ବାରଡ଼ି ଅଟେ ତାର କର୍ଣ୍ଣ ପ୍ରୀତିକର
ଗାଈ ଗୋଠ ଆଗେ ସଦା ଆସିଥାଏ ସେହି
ସୁଖେ ଖାଉଥାଏ ଘାସ କାରେ ଜଣାନାହିଁ
ଯେଣୁ ଅଟେ ସେହି ଧେନୁ ସୁରଭି ବଂଶର
ଅନ୍ୟ ବେଶ ଧରେ ଯେବେ ଇଚ୍ଛାହୁଏ ତାର
ଗୁପ୍ତ ବେଶ ଧରି ତେଣୁ ଘାସ ଚରୁଥାଏ
ତାର ଏହି କଥା କାରେ ଗୋଚର ନଥାଏ

ସେ ବନ ପାଖରେ ନଦୀ ତା ନାମ ସରିତ
ଥିଲା ତା କୂଳରେ ଏକ ଛୋଟ ପରବତ
କନ୍ଦରା ଗୁମ୍ଫାରେ ପୂର୍ଣ୍ଣ ସେହି ଗିରୀବର
ବହୁତ ଜୀବ ଜନ୍ତୁଙ୍କ ଅଟଇ ସେ ଘର
ସେହି ପର୍ବତ ପୂରବ ଉତ୍ତର ଦିଗରେ
ଥାଏ ଏକ ଦୁର୍ଗ ଯାହା ପୂର୍ଣ୍ଣ ସଂକଟରେ
ଦୃଶ୍ୟ ସେ ଗିରିର ଅତି ଭୀଷଣ ଅଟଇ
ଥରେ ଦେଖିଦେଲେ ରୋମ ଟାଙ୍କୁରି ଉଠଇ
ଥାଏ ସଦା ତାହା ଗଜ ସିଂହ ମୃଗେ ପୂର୍ଣ୍ଣ
ଅନ୍ୟ ହିଁସ୍ରଜନ୍ତୁଙ୍କର ମଧ ବାସ ସ୍ଥାନ
ସେ ବନ ଅଟଇ ପୂର୍ଣ୍ଣ ଘଞ୍ଚ ପାଦପରେ
ତେଣୁ ତା ସାନ୍ଦ୍ରତା ଭୀତି ଆଣେ ହୃଦୟରେ
ସହସ୍ର ଶୃଗାଳଙ୍କର ଧ୍ୱନୀରେ ଧ୍ୱନିତ
ହୋଇ ସେ ଦର୍ଶକଗଣେ କରେ ଭୟଭୀତ
ସେ ଦୁର୍ଗରେ ରହେ କରୀ ଅତି ଭୟଙ୍କର
ଅତି ଦୀର୍ଘ ଶୁଷ୍କ ରକ୍ତ ବର୍ଣ୍ଣ ତା ଶରୀର
ରଦନ ଅଟେ ତାହାର ଭୟର ସଦନ
ଦିଶୁଥାଏ ନଖ ତାର କୁଲାର ସମାନ
ଜାଣ ଭୀଷ୍ମ କାମରୂପୀ ଅଟେ ସେହିକରୀ
ଇଚ୍ଛା ଅନୁସାରେ ଭିନ୍ନ ରୂପ ପାରେ ଧରି
ନନ୍ଦା ନାମ ଧେନୁ ଅଟେ ପ୍ରତୀକ ଧର୍ମର
ଗୋପାଳଙ୍କପ୍ରତି ଥାଏ ଅନୁରାଗ ତାର
ସେହି ପର୍ବତେ ଅଛିନ୍ନ ଘାସଥାଏ ଯେତେ
ଜଗି ନନ୍ଦା ରଖିଥାଏ ଗାଈଙ୍କ ନିମନ୍ତେ
ଭଲଚରା ପାଇ ନନ୍ଦା ପୁଷ୍ଟହୋଇଗଲା
ଚରୁ ଚରୁ ଦିନେ ବାଘ ହାବୁଡ଼େ ପଡ଼ିଲା
ନନ୍ଦାକୁ ଦେଖିଲା ବ୍ୟାଘ୍ରରୂପୀ ସେହି କରି
ଠିଆହୁଅ ଠିଆହୁଅ ବୋଲି କରି ହୁରି
ସେହିକ୍ଷଣି ଆସି ତାକୁ କରି ଆକ୍ରମଣ
କହିଲା ତୁ ଆଜି ମୋର ଭକ୍ଷ୍ୟହେଲୁ ଜାଣ
ନିଯୋଆସି ଧେନୁ ତୁହି ହେଲୁ ମୋ ଆହାର
ଏଥିରେ କାହିଁକି ଦୋଷ ହୋଇବ କାହାର
ତାଠାରୁ ଶୁଣି ଏପରି ନିର୍ଦ୍ଦୟ ବଚନ
ନନ୍ଦାର ଦେହେ ହୋଇଲା ରୋମହରଷଣ
ନାଚିଲା ଆଖିରେ ତାର ତା ଶିଶୁ କୁମର
ମଲ୍ଲୀଫୁଲ ପରି ଧଳା ସୁସାର ଆବର

ପୁତ୍ର ବାତ୍ସଲ୍ୟରେ ନନ୍ଦା ହୋଇ ଶୋକାତୁର
ନେତ୍ରରୁ ବୁହାଇ ଦେଲା ଲୁହ ଧାର ଧାର
ପୁତ୍ର ସ୍ନେହରେ ନିରାଶ ଭାବ ହୃଦେ ଧରି
ପୁଣି ପୁତ୍ରକୁ ଦେଖିବା ଆଶା ପରିହରି
କାନ୍ଦୁଥିଲା ସେହି ଧେନୁ ଅତି ଆର୍ତ୍ତଭରେ
କହିଲା ତାହା ଦେଖିଣ ବ୍ୟାଘ୍ର ଏ ପ୍ରକାରେ
ଅତି ଧୀର ହୋଇଥିଲା ସେ ବାଘର ବାଣୀ
ଦୂର ହୋଇଯିବ ଶୋକ ତାପ ଯାହା ଶୁଣି
କହିଲା ଗୋଧେନୁ କିପାଁ କାନ୍ଦୁଛୁ କହତ
ନିଯେ ଆସି ହୋଇଅଛୁ ଏଥି ଉପଗତ
ଦୋଷ କାର ନାହିଁ ଏଥି ଏହା ଦୈବାଧୀନ
କାଳବଶେ ଜାଣ ହୋଇଅଛି ଉତପନ୍ନ
ତେଣୁ ତୁମେ ଭକ୍ଷ ଏହା ବିଚାରି ଚିତ୍ତରେ
କହ କିବା ପ୍ରୟୋଜନ ଅଛି ରୋଦନରେ
ଶେଷ ହୋଇଅଛି ଆଜି ଆୟୁଷ ତୋହର
ବିଧି ବିଧାନରେ ହାତ ଥାଏ କି କାହାର
ନିଜ କଲା କର୍ମଫଳ ନିଶ୍ଚେ ହୁଏ ଭୋଗ
ବିଚାରଗୋ ଧେନୁ ଆଜି ଥିଲା ଏହି ଯୋଗ
ବିଧିଙ୍କ ବିଧାନ ଆଜି ଧେନୁ ତୋ ମରଣ
କାନ୍ଦିବାରେ ତେଣୁ ଆଉ କି ଅଛି କାରଣ
ବନ୍ଦ ହେଲା ନାହିଁ କାନ୍ଦ ତଥାପି ଧେନୁର
ଦେଖି ପଚାରିଲା ପୁଣି ତାକୁ ବ୍ୟାଘ୍ରବର
କହିଲି ବୁଝାଇ ସବୁ ତୁ ଶୁଣିଲୁ ନାହିଁ
କହ ଏବେ କାହିଁପାଇଁ କାନ୍ଦୁଅଛୁ ତୁହି
କୌତୁକ ଲାଗୁଛି ଧେନୁ ଶୋକ ଦେଖିତୋର
ତେଣୁ ପଚାରୁଛି କହ କାରଣତାହାର
ବ୍ୟାଘ୍ରରୂପୀ କରି ମୁଖୁ ଶୁଣି ସେ ବଚନ
ଶୋକ ତେଜି ତେବେ ନନ୍ଦା କହିଲା ଏସନ
କାମରୂପୀ ଅଟତୁମେ ଜାଣଇ ମୁଁ ତାହା
ଶୋକର କାରଣ ଶୁଣ କହୁଛି ମୁଁ ଯାହା
ପ୍ରଥମରେ କ୍ଷମା ମୋତ କରନ୍ତୁ ଆପଣ
ଗ୍ରହଣ କରିଣ ମୋର ସାଷ୍ଟାଙ୍ଗ ପ୍ରଣାମ
କାନ୍ଦୁନାହିଁ ପ୍ରଭୁ ମୁହିଁ ମୋ ଜୀବନ ପାଇଁ
ନିଶ୍ଚେ ମୃତ୍ୟୁ ହେବ ଦିନେ ଜାଣଇ ତା ମୁହିଁ
ଯେ କୌଣସି ଜନ୍ମନେଇ ଭବେ ହେଲେଜାତ
ଲଭିବ ମୃତ୍ୟୁ ଏକଥା ଅଟଇ ନିୟତ
ମୃତ୍ୟୁହେଲେ ପୁଣି ନିଶ୍ଚେ ଜନମ ହୋଇବ
ଜାଣନ୍ତି ସମସ୍ତେ ଏହି କଥା ଅଟେ ଧ୍ରୁବ
ଆହେ ମୃଗପତି ଜନ୍ମ ହୋଇଲେ ମରଇ
ଅପରିହାର୍ଯ୍ୟ ଏ ଅଟେ ସମସ୍ତଙ୍କ ପାଇଁ
ଏହା ବୁଝାଇବା ପାଇଁ କେ ନୁହେ ସମର୍ଥ
ତହିଁକୁ ଚିନ୍ତା କରିବା ଅଟେ ଅବିହିତ
ଦେବତା ସେ ହେଉ ପଛେ ନିଶ୍ଚୟ ମରିବ
ଦେହଧରି ଯଦି ପୃଥିବୀରେ ଜନ୍ମ ହେବ
ସେଥିପାଇଁ ଦୁଃଖମୋର ନହୁଏ ଟିକିଏ
ମାତ୍ର ବିଚାର କରିବା ନୁହେଁ ମୁଁ ଗୋଟିଏ
ସଂତାପ ଯାହା ମୋ ହୃଦୟରେ ଅଛି ରହି
ଯୋଗ୍ୟ ତୁମେ ଯେଣୁ ତାହା କହୁଅଛି ମୁହିଁ
ପ୍ରଥମ ଯୌବନ ଯେବେ ହୋଇଲା ମୋହର
ପ୍ରସବ କଲି ମୁଁ ତେବେ ଗୋଟିଏ କୁମର
ପ୍ରାଣଠାରୁ ବଳି ତାକୁ ସ୍ନେହ ମୁଁ କରଇ
ଏବେ ମଧ ସେ ସନ୍ତାନ ଦୁଧ ଛାଡ଼ିନାହିଁ
ଜାଣ ବ୍ୟାଘ୍ର ସେହି ଅତି ଛୋଟ ବୟସରେ
ଘାସ ମଧ ଧରିନାହିଁ ଏଯାଏଁ ମୁଖରେ
ଗୋପାଳେ ତାହାକୁ ଗୋଠେ ରଖିଛନ୍ତି ବାନ୍ଧି
ଭୋକରେ ମୋ ଅପେକ୍ଷାରେ ଥିବ କାନ୍ଦିକାନ୍ଦି
ଆହେ ବ୍ୟାଘ୍ର ଭାବି ତାହା କରେ ମୁହିଁଶୋକ
ମୁଁ ମଲେ ରହିବ କାହାପାଶେ ସେ ବାଳକ
ସେହି ପୁତ୍ର ସ୍ନେହ ବଶୁ ଭାବୁଅଛି ମୁହିଁ
ତାହାକୁ ଦୁଧ ପିଆଇ ଫେରି ଆସିବଇଁ
ମୁଖେ ଦୁଧ ଦେଇ ତାର ମୁଣ୍ଡ ଚାଟିଦେବି
ଏଠାର ଘଟଣା ସବୁ ତା ଆଗେ କହିବି
ସ୍ନେହୀ ଗାଈପାଶେ ତାକୁ କରି ସମର୍ପଣ
ତୁମ ପାଖକୁ କରିବି ପ୍ରତି-ଆବର୍ତ୍ତନ
ଭକ୍ଷିବ ମୋତେ ତାପରେ ତୁମ ଇଚ୍ଛାମତେ
ଏଥିରେ ସଂଦେହ ମନ ନଧର କିଞ୍ଚିତେ
ନନ୍ଦାଧେନୁ ମୁଖୁ ବ୍ୟାଘ୍ର ସେ ବଚନ ଶୁଣି
କହିଲା ଗୋ ଧେନୁ ମୁହିଁ ସବୁ ଅଛି ଜାଣି
ମାତ୍ରକହେ ପୁଅଏବେ ତୋର କି କରିବ
ତାଦ୍ୱାରା କି ମୃତ୍ୟୁ ତୋର ବାରଣ ହୋଇବ
ମୋ ଦର୍ଶନେ ସବୁପ୍ରାଣୀ ହୁଅନ୍ତି ତଟସ୍ଥ
ତୁ ମାତ୍ର ପୁଅକୁ ଭାବି ରହିଛୁ ଜୀବିତ

କହୁଅଛୁ ପୁଅ ପୁଅ ରହି ମୋ ଆଗରେ
ମୃତ୍ୟୁକାଳେ କହ କେ କି ରକ୍ଷା କରିପାରେ
ପତି ପୁତ୍ର ଦାନ ଧର୍ମ ଗୁରୁ ପିତା ମାତା
ମୃତ୍ୟୁବେଳେ କେହି ହୋଇ ନପାରନ୍ତି ତ୍ରାତା
କହି ପୋଛି ମତେ ତୁହି ଗୋକୁଳକୁ ଯିବୁ
ଗୋପୀଙ୍କେ ପୂର୍ଣ୍ଣ ସେ ସ୍ଥାନ ନୟନେ ଦେଖିବୁ
ଘନ ହୋଇଥିବ ମତ୍ତ ବୃଷଭ ଗର୍ଜନ
ଉତ୍ତମ ବାଛୁରୀ ଗଣେ ଶୋଭିତ ସେ ସ୍ଥାନ
ଦେବଲୋକର ଭୂଷଣ ସେ ସ୍ଥାନ ଅଟଇ
ରହିଅଛି ସୁରଙ୍କର ସେବା ପୂଜାପାଇ
ସେହି ଗୋଲକ ଧେନୁ ତୁ ଯଦ୍ୟପି ଦେଖିବୁ
ସତ ନ ଲାଗଇ ପୁଣି ଫେରସ୍ତ ଆସିବୁ
ଶୁଣ ଧେନୁ ଏବେ ମୋର କହିବା ବଚନ
ତୋ ରକ୍ତପାନ ଚ୍ଛହେଁ ମୋ ପଞ୍ଚଭୂତ ପ୍ରାଣ
ବୈରାଗ୍ୟ ନ ଦିଏ ମୁହିଁ ପ୍ରାଣୀଙ୍କୁ କଥାରେ
ଶୁଣି ସେ ବଚନ ନନ୍ଦା କହେ ଅତି ଧୀରେ
ବତ୍ସା ମୁହିଁ ପ୍ରଥମରେ କରିଛି ଉତ୍ପନ୍ନ
ତେଣୁ ଶୁଣନ୍ତୁ ଆପଣ ମୋହର ବଚନ
ମୋ ସଖୀ, ସୁତ, ବାଳକ, ପାଳକ ଗୋପାଳ
ଗୋପାଙ୍ଗନା ମାତା ପିତା ନାମରେ ଆବର
ଶପଥ କରି କହୁଛି ଘେନାକର ଥରେ
ଆସିବି ମୁଁ ଯାଇ ପୁଣି ଫେରି ନିଶ୍ଚୟରେ
ଯଦି ସତ୍ୟ ଏ ମୋ କଥା କରିବେ ସ୍ୱୀକାର
ତେବେ ମୋତେ ଛାଡ଼ିଦିଅ କହେ ଯୋଡ଼ିକର
ବିପ୍ର ଗୋରୁ ବଧ କଲେ ହୁଅଇ ଯେ ପାପ
ଯେଉଁ ପାପହୁଏ ହତ୍ୟାକଲେ ମାଆ ବାପ
ଜାଣ ସେହି ସବୁ ପାପ ହୋଇବ ମୋହର
ମିଥ୍ୟା ଯେବେ ହୋଇବ ମୋ କହିବାର ଗୀର
ଲୁବ୍ଧକ ଯେ ପାପ ସବୁ କରଇ ଅର୍ଜ୍ଜନ
ମ୍ଳେଛର ଯେତେ ପାତକ ହୁଏ ମନେ ଘେନ
ପୁଣି ଯେ ହତ୍ୟା କରଇ ଗୁପ୍ତେ ଦେଇ ବିଷ
ନ ଫେରିଲେ ସେ ପାପ ମୁଁ ଭୋଗିବି ଅଶ୍ୟ
ଖାଉଥିବା ଧେନୁକୁ ଯେ କରଇ ବାରଣ
ଶୋଇଥିବା ଲୋକର ଯେ ଘେନଇ ପରାଣ
ଯେଉଁ ପାତକ ହୁଅଇ ସେପରି ଲୋକର
ନ ଫେରିଲେ ସେହିପାପ ହୋଇବ ମୋହର
ଯେ ପିତା ମାତା ଜଣକୁ କନ୍ୟାକରି ଦାନ
କପଟ କରିଣ ଆନେ କରନ୍ତି ପ୍ରଦାନ
ଲାଗଇ ଯେଉଁ ପାତକ ସେହି ଲୋକଠାରେ
ନ ଫେରିଲେ ସେହି ପାପ ଲାଗିବ ମୋଠରେ
ବୁଢ଼ା ବଳଦଙ୍କୁ ଯୋଚି ବିଷମ ବାଟରେ
ଯେ ଲୋକ ଭଡ଼ା କଢ଼ାଏ ଅତି ନିର୍ଦ୍ଦୟରେ
କହିବା କଥାକୁ ଯେହୁ ନକରେ ପାଳନ
ଏମାନଙ୍କ ଯେଉଁ ପାପ ହୁଅଇ ଅର୍ଜନ
ନିଶ୍ଚୟ ହୋଇବି ମୁହିଁ ଲିପ୍ତ ସେ ପାପରେ
ନଆସିବ ଯେବେ ଫେରି ତୁମ୍ଭର ପାଶରେ
ଯେ ଘରକୁ ବନ୍ଧୁଆସି ନିରାଶେ ଫେରଇ
ଆହେ ବ୍ୟାଘ୍ର ଯେଉଁପାପ ତାହାର ହୁଅଇ
ସେହି ପାପ ଭୋଗ ନିଶ୍ଚେ ଜାଣ ହେବ ମୋର
ଫେରି ମୁଁ ନଆସେ ଯେବେ ଆହେ ମୃଗେଶ୍ୱର
ବ୍ୟାଘ୍ରରୂପୀ ହାତୀ କରି ବିଶ୍ୱାସ ତ ବାଣୀ
କହିଲା ଶୁଣ ଗୋ ଧେନୁ ଯା ମୁଁ କହେ ପୁଣି
ତୋହର କଥାରେ ପୂର୍ଣ୍ଣ ବିଶ୍ୱାସ ମୁଁ କଲି
କିନ୍ତୁ ତୁ ନଭାବ ମୁର୍ଖେ ଠକିଦେଲି ବୋଲି
କହନ୍ତି କେତେ ଏପରି ଏହା ଯେ କରିବ
ସେଥିରେ ତାହାର କିଛି ପାପ ନ ହୋଇବ
କାମିନୀ ବିଷୟରେ ବା ବିବାହ କାର୍ଯ୍ୟରେ
ଶପଥ ନେଲେ ଅଥବା ଗୋରୁଙ୍କୁ ମୁକ୍ତିରେ
ନ ଲାଗଇ ପାପ ତହିଁ କହନ୍ତି ଅନେକ
ଆଗୋ ଧେନୁ କହୁଅଛି କର ତୁ ବିବେକ
ସମୟ ପ୍ରାଣ ତ୍ୟାଗରହେଲେ ଉପଗତ
ନ କରିବ ଶ୍ରଦ୍ଧାକାରେ ଅନେକଙ୍କ ମତ
ଶୁଣ ଧେନୁ ନାସ୍ତିକଙ୍କ ମତ ଏ ଅଟଇ
ଏପରି ଯେ କହେ ସେହି ପାପ ଅରଜଇ
ଜନ୍ମ ମରଣ ଚକ୍ରରେ ବସି ସେ ନାସ୍ତିକ
ଚିରଦିନ ଭ୍ରମୁଥାଏ କର ତୁ ବିବେକ
କୌତୁହଳେ ହେଉ ମଧ୍ୟ ପରକଥା ଶୁଣି
ମୋହ ପ୍ରାପ୍ତ ଯେ କରାଏ ଅଜ୍ଞାନରେ ପୁଣି
ପାଣ୍ଡିତ୍ୟ ଅଭିମାନରେ କରିଣ ବେଦାର୍ଥ
ପ୍ରଚାର କରଇ ଧେନୁ ଯେହୁ ଭୁଲ ତଥ୍ୟ
ଧେନୁ ଗୋ ଲାଭହୁଅଇ ତାର ଯେଉଁ ଫଳ
ଅସତ୍ୟ କହିବା ଲୋକ ଲଭେ ତା କେବଳ

କହିଲା ନନ୍ଦା ସେ ବ୍ୟାଘ୍ର ବଚନକୁ ଶୁଣି
ତୁମ୍ଭଙ୍କୁ ଠକିବା ବଳ କାର ଅଛି ପୁଣି
ପ୍ରତାରିତ ଯେହୁ କରେ ହେ ବ୍ୟାଘ୍ର ଆନକୁ
ବିଚାର କର ସେ ଠକେ ନିଜର ଆତ୍ମାକୁ
ବ୍ୟାଘ୍ରରୂପୀ ହାତୀ ଶୁଣି ଧେନୁର ବଚନ
କହିଲା ଯାଇ କର ତୋ ପୁତ୍ରକୁ ଦର୍ଶନ
ପୁତ୍ରବତ୍ସଳା ସେ ନନ୍ଦା ବ୍ୟାଘ୍ର ଆଦେଶରେ
ଚଳିଗଲା ଧୀରେ ଧୀରେ ଗୋଠଉଦ୍ଦେଶ୍ୟରେ
ତଥାପି ଶୋକ ତାହାର ସଂଭାଳ ନୋହିଲା
ଝର ଝର ନୟନରୁ ଲୁହ ଝରୁଥିଲା
ଦୁଃଖ ଜଳେ ବୁଡ଼ି ତାର କମ୍ପୁଥିଲା ଦେହ
ଭବିଷ୍ୟତ ଭାବନାରେ ଉଠୁଥିଲା କୋହ
ପହଞ୍ଚିଲା ଯାଇ ନନ୍ଦା ନଦୀର କୂଳରେ
ହେ ଭୀଷ୍ମ ଗାଈଙ୍କ ଗୋଠ ଥିଲା ଯେଉଁଠାରେ
ଖଣ୍ଡଦୂରୁ ଶୁଣି ନିଜ ବତ୍ସାର କ୍ରନ୍ଦନ
ଧାଇଁ ନନ୍ଦା ତା ଆଗରେ ମିଳିଲା ବହନ
ବାଛୁରୀର ବେନି ନେତ୍ରୁ ଲୁହ ବହୁଥିଲା
ଧାଇଁ ଯାଇ ନନ୍ଦା ତାକୁ ଚାଟି ପକାଇଲା
ମାଆକୁ ଦେଖିଣ ବତ୍ସା ସଂକୁଚିତ ହେଲା
ତା ବିଷମଭାବ ଦେଖି ତାକୁ ପଚାରିଲା
ଆଗପରି ହରଷତା ଆଜି ତୋର ନାହିଁ
ଅସୁସ୍ଥକି ମାଗୋ ତୋର ଦେହ ଅଛି ହୋଇ
ଉଦ୍‌ବେଗ ରହିଛି କିପାଁ ଦୃଷ୍ଟିରେ ତୋହର
ଦେହରେ ଭୟ ତୋହର କରିଅଛି ଘର
ନନ୍ଦା ଧେନୁ ଶୁଣି ଶିଶୁ ପୁତ୍ରର ବଚନ
କହିଲା ଏବେ ମୋହର ସ୍ତନ କର ପାନ
ଏହାର କାରଣ ତୁହି ପଚାରିବୁ ଯେବେ
ଅସମର୍ଥ ହେବି ମୁଁ ତା କହିବାକୁ ଏବେ
ପାନକର ଦୁଧ ବାପ ଇଚ୍ଛା ଅନୁସାରେ
କହିବି କାରଣ ତାର ତୋତେ ତଦପରେ
ମୋ ଦର୍ଶନ ତଦପରେ ହେବ ତୋ ଦୁର୍ଲ୍ଲଭ
ପିଇଥାଅ ଦୁଧ ଆଜି ହୋଇଛି ସୁଲଭ
ନମିଳିବ ସ୍ତନ ଆଉ କାଲି ପ୍ରଭାତରେ
ବଞ୍ଚିବୁ ତୁ ବାବୁ କହ କାହାର ସ୍ତନରେ
ତୋତେ ଛାଡ଼ି ବାବୁରେ ମୁଁ ଯିବି ଏହିକ୍ଷଣି
ଶପଥ କରି ଆସିଛି ଫେରିବାକୁ ପୁଣି

କ୍ଷୁଧାତୁର ବାଘ ମୋତେ କରିବ ଭୋଜନ
ନନ୍ଦାଠାରୁ ଶୁଣି ବତ୍ସା କହିଲା ଏସନ
କେଉଁଠାକୁ ଯିବୁ ମୁଁ ଗୋ ସଂଗେ ମୁହିଁ ଯିବି
ଭଲ ତାହା ହେବ ଯେବେ ତୋ ସଙ୍ଗେମରିବି
ସଂଶୟ କିଛି ନ ମଣ ମାତା ଗୋ ଏଥିରେ
ଜୀବନେ ମୃତ ହେବି ମୁଁ ନଥିଲେ ପାଖରେ
ତୁ ନଥିଲେ ଦୁଃଖ ମୋର ଅଧିକ ହୋଇବ
ତୋ ସାଙ୍ଗରେ ମଲେ ମୋର ଧରମ ବଢ଼ିବ
ଖାଇଲେ ବାଘ ମାଆ ଯେ ଗତିହେବ ତୋର
ବାଘ ମୁହଁରେ ମୋ ଗତି ହେବ ସେ ପ୍ରକାର
ମୋ ପକ୍ଷେ ମା ଆଗେ ତାହା ହୋଇବ ଅଧିକ
ମାତୃଭକ୍ତ ବୋଲି କୀର୍ତ୍ତି ଥିବ କାଳଯାକ
ତେଣୁ ମୁଁ ନିଶ୍ଚୟ ଯିବି ତୋହର ସଙ୍ଗତେ
ଏଥିରେ ସଂଶୟ ହୋଇ ନାହିଁ ମା କିଞ୍ଚିତେ
ତା ନୋହିଲେ ମାଆ ଏଠି ତୁହି ରହିଥାଅ
ମୁଁ ଯାଇ ଶପଥ ତୋର ପାଳିବି ନିଶ୍ଚୟ
ସୁତ ଯେବେ ରହେ ଜନନୀରେ ହୀନ ହୋଇ
ଜୀବନେ ମା ତାର କିଛି ପ୍ରୟୋଜନ ନାହିଁ
ମାଆଲୋ ଛାଡ଼ି ତୁ ଯିବୁ ଯେବେ ମୋରସାଥ
ଏ ଘୋର ବନରେ ମୁହିଁ ହୋଇବି ଅନାଥ
କିଏ ଏହି ବଣେ ମୋର ହୋଇବ ରକ୍ଷକ
ମୋର ଏହି କଥା ମାଗୋ କର ତୁ ବିବେକ
ଯେଉଁ ପିଲା ବଞ୍ଚିଥାଏ ଜନନୀ ସ୍ତନରେ
ତା ପକ୍ଷେ କେ ହେବ ଆଉ ମାତାସମାନରେ
ବନ୍ଧୁ ବାନ୍ଧବ କିଏ ସେ ପଚାରିବେ ନାହିଁ
ମାତା ସଦୃଶ ଜଗତେ କେ ହୋଇ ପାରଇ
ମାତା କେବଳ ଅଟଇ ଗତି ସଂତାନର
ଅନ୍ୟ କିଏ ହେବ ଭବେ ମାତା ପରକାର
ଯେତେ ସ୍ନେହ ଯିଏ କରୁ କିଲେଖା ସେଥିରେ
ହେବ କି ସେ ତୁଲ ମାତା ସ୍ନେହସମାନରେ
ଦୁଧଖିଆ ପିଲାଙ୍କର ମାତୃ କୋଳପରି
ଆଉ କାହା କୋଳ କହ ହୋଇବ କି ସରି
ଇହଲୋକ ହେଉ ଅବା ହେଉ ପରଲୋକ
ମାତାଙ୍କଠାରୁ ଦେବତା ନୁହନ୍ତି ଅଧିକ
ଏହି ଧର୍ମ ଅଟେ ପ୍ରଜାପତିଙ୍କ ରଚିତ
ମାଆ ପୁଅ ଏକାସଙ୍ଗେ ରହିବା ଉଚିତ

ଶୁଣି ନନ୍ଦା ଏହିପରି ପୁତ୍ରର ବଚନ
କହିଲା ମୋ ମୃତ୍ୟୁ ଅଟେ ବିଧାତା ରଚନ
ବାପରେ ସେଠାକୁ କେବେ ତୁହି ଯିବୁ ନାହିଁ
ଏହି କଥା ତତେ ମୁହିଁ କହୁଛି ବୁଝାଇ
ମୃତ୍ୟୁର ବିଧାନ ବାବୁ ଏପରି ଅଟଇ
ଯାହାକୁ ଡ଼ାକିବ ସେହି ମାତ୍ର ଯିବ ତହିଁ
ମୃତ୍ୟୁର ପ୍ରତିନିଧିତ୍ୱକେ ନପାରେ କରି
ସ୍ଥିର ଏହି କଥା ବାବୁ ରଖ ହେତୁ କରି
ମୋର କଥାମାନି ବାପା ରହ ଏହିଠାରେ
ତୋ ଆପଦ ନାଶ ହେଉ ଜଳେ କିବାସ୍ଥଳେ
ପ୍ରମାଦ ସର୍ବଭୂତକୁ କରିଦିଏ ନାଶ
ଏଥିରେ ନକର ତିଳେ ସଂଶୟ ପ୍ରକାଶ
ଲୋଭେ ଅଭିଭୂତ ହୋଇ ବିଷମ ସ୍ଥାନରେ
ଥିବା ପଦାର୍ଥକୁ ବାବୁ ନ ଆଣ ମନରେ
ଲୋଭ ସମାନ ଦୁର୍ଗୁଣ ଲୋକ ନାଶ ପାଇଁ
ନାହିଁ ତାହା ଇହପର ଉଭୟ ନାଶଇ
ମୋହିତ ହୁଏ ବାବୁରେ ସେଥିରେ ଯେ ନର
ସେ ବୁଡ଼େ ସାଗରେ ଅବା ବଶେ କରେଘର
ପଣ୍ଡିତହେଲେ ହେଁ ଲୋଭ ବଂଶବର୍ତ୍ତୀ ହୋଇ
ବହୁତ ଅକାର୍ଯ୍ୟ କଥା ସେ କରି ବସଇ
ଲୋଭ, ପ୍ରମାଦ, ଅଧର୍ମ ନାଶର କାରଣ
ଲୋକଙ୍କର ହୋଇଥାଏ ବୋଲି ମନେଘେନ
ଏଣୁ ଲୋଭ ପ୍ରମାଦକୁ ମୂଳରୁ ମାରିବ
ବିଶ୍ୱାସ ମଧ ତା ପ୍ରତି କେବେ ନ ରଖିବ
ଯତନ କରିବା ସଦା ଆତ୍ମରକ୍ଷା ପାଇଁ
କହୁଛି ଏ ନୀତି ବାବୁ ମନେରଖ ତୁହି
ତଦପରେ ନନ୍ଦା ସଙ୍ଗୀ ଗାଇଙ୍କୁ ଡାକିଲା
ବନର ସବୁ ବୃତ୍ତାନ୍ତ ତାଙ୍କୁ ଜଣାଇଲା
ଆବର ପ୍ରାର୍ଥନା କଲା ତାହାଙ୍କୁ ଏପରି
ରଖିବ ମୋ ବାଳକକୁ ତୁମ୍ଭ ପିଲାପରି
ଅନାଥ ବିକଳ ଦୀନ ଏ ମୋର ବାଳକ
ତୁମ୍ଭେ ସମସ୍ତେ ହୋଇବ ତା ପ୍ରତିପାଳକ
ମାତୃ ଶୋକ ସଂତପ୍ତ ଏ ଦୁଧ ଛାଡ଼ିନାହିଁ
ପାଳିବ ଏହାକୁ ସର୍ବେ ହୃଦେ ଦୟାବହି
ନିଜର ବାଳକ ପରି ପାଳନା କରିବ
କଦାପି ପ୍ରାର୍ଥନା ମୋର ପାଶୋରି ନଦେବ

ଶୋକଯୁକ୍ତ ନନ୍ଦାର ଏ ବିନୟ ବଚନ
ଶୁଣି ଅନ୍ୟ ଗାଇ ତାଙ୍କୁ କହିଲେ ଏସନ
ବହୁଲୋକ ସତ୍ୟରକ୍ଷା କରନ୍ତି ତୋପରି
ଏସମୟେ ତୁ ଏପରି କାର୍ଯ୍ୟ କଲାପରି
ସତ୍ୟ ଶପଥରୁ ମହା ଭୟୁ ପାର ହୋଇ
ପୁଣି ପିଲାକୁଛାଡ଼ି ଯାଉଅଛୁ ତୁହି
ଧନ୍ୟ ଧନ୍ୟ ପଦ ତୋର ଥୁଆ ଜଗତରେ
ବାଘ ମୁହେଁ ଗଲେ ସୁତେ ଛାଡ଼ି ଏହିଠାରେ
କିନ୍ତୁ ବ୍ରହ୍ମବାଦୀ ଋଷି ଏହି ବିଷୟରେ
କହିଛନ୍ତି ଯାହା ମନ ଦେଇ ଶୁଣ ଥରେ
ଜଗତରେ ସେହି କଥା ଅଛି ପ୍ରଚଳିତ
କହୁଛୁ ସେ କଥା ନନ୍ଦା କର କର୍ଣ୍ଣଗତ
ସଂକଟରେ ନିଜପ୍ରାଣ ଯଦ୍ୟପି ଜାଣିବ
ତାହାର ରକ୍ଷଣେ ଯେଉଁ ଶପଥ କରିବ
ନରଖିଲେ ତାହା କେବେ ନୁହଇ ପାତକ
କହିଛନ୍ତି ପୂର୍ବେ ଏହା ବଡ଼ ବଡ଼ ଲୋକ
ନିଜ ପ୍ରାଣ ରଖିବାକୁ ମିଛ ଯେବେ କହେ
ମିଥ୍ୟା ରୂପେ ତାହା କେବେ ଗଣନା ନ ହୁଏ
ସେ ସମୟେ ମିଛ ମଧ ସତ୍ୟ ପାରେ ହୋଇ
ସତ୍ୟ ମଧ ମିଛ ହେଲେ ଦୋଷ କିଛି ନାହିଁ
ସେହିପରି ପ୍ରଣୟରେ ପ୍ରେମ ପ୍ରସଙ୍ଗରେ
ଦୋଷ କିଛି ହୁଏ ନାହିଁ ମିଛ କହିବାରେ
ବିବାହରେ ଗାଈ ପ୍ରାଣ ରକ୍ଷଣେ ସେପରି
ମିଛ କହି ବିପ୍ରେ ଦେବ ସଂକଟୁ ଉଦ୍ଧରି
ଏହିପରି ସ୍ଥଳେ ମିଥ୍ୟା ଯଦ୍ୟପି କହିବ
ମହା ପୂଣ୍ୟ ରୂପେ ତାହା ଗଣନା ହୋଇବ
ପର ରକ୍ଷଣେ ଯଦ୍ୟପି ମିଛ କହେ ଲୋକ
କହନ୍ତି ସମସ୍ତେ ତାହା ନୁହଇ ପାତକ
ଶୁଣିଲା ନନ୍ଦା ଗାଈଙ୍କ ଏସନ ବଚନ
କହିଲା ତାପରେ କ୍ଷଣେ ରହିଣ ମଉନ
ପରର ରକ୍ଷଣେ ମିଥ୍ୟା ନୁହଇ ପାତକ
ତୁମ୍ଭମାନଙ୍କ କଥାକୁ ବୁଝିଲି ଏତେକ
ଅନ୍ୟ ପ୍ରାଣରକ୍ଷା ପାଇଁ ମୁଁ ମଧ ସେପରି
କରିବି ତୁମ୍ଭ କଥାର ତାତ୍ପର୍ଯ୍ୟ ଏପରି
କିନ୍ତୁ ନିଜ ପ୍ରାଣ ପାଇଁ ମିଥ୍ୟାର ଆଶ୍ରୟ
ନେବାପାଇଁ କହୁନାହିଁ ମୋହର ହୃଦୟ

ଏହି ଏକ ପ୍ରାଣ ଯାଇ ଗର୍ଭେ ସ୍ଥିତ ହୁଏ
ପାଳନ ମରଣ ସୁଖ ଦୁଃଖ ଭୋଗୁଥାଏ
ଏଣୁ ସର୍ବଦା ସତ୍ୟରେ ଧ୍ୟାନ ଥାଏ ମୋର
ସତ୍ୟ ଅଟଇ କେବଳ ଧର୍ମର ଆଧାର
ସତ୍ୟଯୋଗୁଁ ସିନ୍ଧୁ କୂଳ ନକରେ ଲଂଘନ
ସତ୍ୟପାଇଁ ପୃଥିବୀରେ ଜନ୍ମିଲେ ବାମନ
ସତ୍ୟପାଇଁ ବଳୀ ଦାନ କଲା ଏ ସଂସାର
ସତ୍ୟରକ୍ଷା ପାଇଁ କଲା ପାତାଳରେ ଘର
ଅଘୋର କଷ୍ଟ ସହିଲା ସତ୍ୟେ ନ ଛାଡ଼ିଲା
ପ୍ରାଣପଣ କରି ନିଜ ସତ୍ୟରକ୍ଷା କଲା
ନଗରାଜ ହିମାଳୟ ଶତଶୃଙ୍ଗ ହୋଇ
ସତ୍ୟପାଇଁ ରହିଅଛି ଧରି ଏହି ମହୀ
ଶୁଣିଅଛି ବିନ୍ଧ୍ୟାଚଳ ବଢ଼ିଉଠୁଥିଲା
ସତ୍ୟରକ୍ଷା ପାଇଁ ଆଉ ମୁଣ୍ଡ ନ ଟେକିଲା
ସ୍ୱର୍ଗ ନର୍କ ଅପବର୍ଗ ବୋଲି ଯାହା ଅଛି
ଜାଣ ସତ୍ୟ ପାଇଁ ତାର ପ୍ରତିଷ୍ଠା ହୋଇଛି
ନିଜ ସତ୍ୟ କଥନକୁ ଯେ ରଖି ନ ପାରେ
ତାର ହୋଇ ରହେ ନାହିଁ କିଛି ଏ ସଂସାରେ
ନିଜର କଥାକୁ ଯେହୁ କରଇ ଅନ୍ୟଥା
ସଂସାରେ ସେ ଲାଭକରେ ଅନ୍ୟଥା ସର୍ବଥା
ତାପରେ ନନ୍ଦା ସମସ୍ତ ଗୋପାଳେ ଭେଟିଲା
ଗାଈ ଗୋଠଟାକୁ ଥରେ ପ୍ରଦକ୍ଷିଣ କଲା
ସମସ୍ତ ଦେବଙ୍କୁ ପରେ କଲା ସେ ପ୍ରାର୍ଥନା
ତହିଁ ଥିବା ବୃଷଙ୍କର ଲଭିଲା ଅନୁଜ୍ଞା
ଆଉଥରେ ସମସ୍ତଙ୍କୁ ଅତି ନମ୍ର ହୋଇ
କହିଲା ପିଲାକୁ ରଖ ସର୍ବେ ଦୟାବହି
ପୁତ୍ର ସ୍ନେହେ ବଶୀଭୂତ ନନ୍ଦା ହୋଇଥିଲା
ସମସ୍ତଙ୍କୁ ବାରମ୍ବାର ତା ପାଇଁ କହିଲା
ସୁତ ବିରହରୁ ଜାତ ଶୋକ ପାବକରେ
ସଂତାପିତ ନନ୍ଦା ସମସ୍ତଙ୍କୁ ଏପ୍ରକାରେ
କହି ସୁତେ ଚାହିଁ ଚାହିଁ ହୋଇଲା ଅନ୍ତର
ରାତ୍ରୀ ଆଗମରେ ଚକ୍ରବାକୀ ପରକାର
ଅଥବା ବୃକ୍ଷେ ଯେପରି ଲତା ମାଡ଼ିଥାଏ
ଗଛ ପଡ଼ିଗଲେ ଦୁଃଖେ ଭୂଇଁ ଆଶ୍ରା ନିଏ
ଅଥବା ଅଣ୍ଡାଳି ଅନ୍ଧ ବାଟେ ଚାଲିଥାଏ
ଗୋଡ଼ ଖସିଗଲେ ଥରେ ଥରେ ପଡ଼ିଯାଏ

ସେହିପରି ନନ୍ଦା ପୁତ୍ର ଶୋକେ ଆର୍ତ୍ତ ହୋଇ
ଯାଉଥାଏ ବାଟେ ପଛେ ଥରେ ଥରେ ଚାହିଁ
ମାଂସାସୀ ବାଘ ପୂର୍ବରେ ଯେଉଁଠାରେ ଥିଲା
ନନ୍ଦା ସେହିଠାରେ ଯାଇ ପ୍ରବେଶ ହୋଇଲା
ଜଗିଥିଲା ବାଘ ନନ୍ଦା ଦେଖିଲା ସେଠାରେ
ତାର ତୀକ୍ଷ୍ଣ ନଖ ଦନ୍ତ ଭୟ ବୃଦ୍ଧି କରେ
ତା ମଧ୍ୟେ ନନ୍ଦା ଧେନୁରହେଲା ନେତ୍ରଗତ
ଲାଙ୍ଗଡଟେକି ଧାଇଁଛି ତାର ଶିଶୁ ସୁତ
ଏକା ନିଶ୍ୱାସକେ ଯାଇ ନମାନି କାହାରେ
ଛିଡ଼ା ହେଲା ନନ୍ଦା ଆଉ ବାଘର ମଝିରେ
ମୃତ୍ୟୁରୂପୀ ବାଘ ଆଗେ ପୁତ୍ରକୁ ନିରେଖି
ନନ୍ଦା ହେଲା ମନେ ମନେ ଅତିଶୟ ଦୁଃଖୀ
ଶୋକରେ ବିବର୍ଣ୍ଣ ନନ୍ଦା ସେହି ସମୟରେ
କହିଲା ଏପରି ନମି ବାଘର ପାଦରେ
ସତ୍ୟଧର୍ମ ରକ୍ଷାପାଇଁ ଆହେ ବ୍ୟାଘ୍ରବର
ପ୍ରବେଶ ହୋଇଛି ଆସି ସମ୍ମୁଖେ ତୁମ୍ଭର
ମୋହର ମାଂସରେ ଏବେ ତୃପ୍ତିକର ଲାଭ
ନହେଉ ମୃଗେନ୍ଦ୍ର ତୁମ ତୃପ୍ତିରେ ଅଭାବ
ହେ ମହାତ୍ମା ତୃପ୍ତହେଉ ତୁମ ପଞ୍ଚଭୂତ
ଯଥେଚ୍ଛା କରିଣ ପିଇ ମୋ ଉଷ୍ଣ ଶୋଣିତ
ଜାଣେ ମୋତେ ମାରି ମୋର ମାଉଁସ ଖାଇବ
ତାପରେ ମୋର ଏ ଶିଶୁ ସୁତକୁ ଭକ୍ଷିବ
ନନ୍ଦାଠାରୁ ଶୁଣି ବ୍ୟାଘ୍ର ବଚନ ଏସନ
କହେ ସତ୍ୟାଶ୍ରୟୀ ଧେନୁ ଅଟୁ ତୁହି ଧନ୍ୟ
ଅଗୋ କଲ୍ୟାଣୀ ମୁଁ ତୋତେ କରୁଛି ସ୍ୱାଗତ
ତୋପରି ଧେନୁ ନିମନ୍ତେ ଧନ୍ୟ ଏ ଜଗତ
ଶୁଣ ଧେନୁ ସତ୍ୟଧର୍ମ ଯେକରେ ପାଳନ
ଅଶୁଭ ତାହାର କିଛି ନୁହେ କଦାଚନ
ପୁନରାଗମନ କଥା ମୋ ଆଗରେକହି
ପାଳିଛୁ ଯେ ସତ୍ୟ ତାହା ଦେଖୁଅଛି ମୁହିଁ
କୌତୁକ ମନରେ ମୋର ହୋଇଅଛି ଜାତ
ଯାଇ ପୁଣି କିପରି ତୁ ଆସିଲୁ କହତ
ପରୀକ୍ଷା କରିବା ପାଇଁ ସତ୍ୟକୁ ତୋହର
ପଠାଇଥିଲି ମୁଁ ତୋତେ ସତ୍ୟ ଏ ମୋ ଗୀର
ନୋହିଲେ ବାଘ ହାବୁଡେପଡ଼ି କେଉଁଗାଇ
ଜୀବନଧରି ଯିବାର ଶୁଣିଛୁ କି ତୁହି

କେବଳ ଅନୁସନ୍ଧାନ ନିମନ୍ତେ ସତ୍ୟର
ତୋତେ ଛାଡ଼ିଥିଲି ବୋଲି ଧେନୁ ମନେକର
ଆଜିଠାରୁ ଧେନୁ ତୁ ମୋ ହୋଇଲୁ ଅନୁଜା
ତୋର ଏହି ଶିଶୁ ସୁତ ମୋହର ଭଣଜା
ଆଜି ହେଲା ଏଥୁ ଏକ ସତ୍ୟ ସମାଧାନ
ମୋପରି ପାପୀକୁ କଲୁ ଉପଦେଶ ଦାନ
ପ୍ରତିଷ୍ଠିତ ହୋଇଅଛି ସତ୍ୟରେ ସଂସାର
କେବଳ ଅଟଇ ସତ୍ୟ ଧର୍ମର ଆଧାର
ସତ୍ୟରୁ ଗାଈ ପହ୍ନାରୁ ଝରୁଅଛି ଦୁଧ
ସତ୍ୟଯୋଗୁଁ ପ୍ରତିଷ୍ଠିତ ହୁଅନ୍ତି ବିବୁଧ
ଅଟନ୍ତି ଏହି ଗୋପାଳେ ଭବେ ଭାଗ୍ୟଶାଳୀ
ତୋପରି ଧେନୁକୁ ଯେଣୁ ରଖିଛନ୍ତି ପାଳି
ସତ୍ୟାଶ୍ରୟୀ ଧେନୁ ଦୁଧ ଆଧାର ଯାହାର
କି ଅଛି ଉପମା ହେବ ଭାଗ୍ୟକୁ ତାଙ୍କର
ଶେଷରେ କହିଲା ଏହା ବ୍ୟାଘ୍ରରୂପୀ କରି
କହିବି ସେ ଧର୍ମ ଯଥା ଭବୁ ହେବି ପାରି
ସହସ୍ର ଜୀବ ମାରି ମୁଁ ତାଙ୍କ ମାଂସ ଖାଇ
କେଉଁଗତି ହେବ ମୋର ତାହା ନ ଜାଣଇ
ଦେଖିଲି ଧେନୁକୁ ସତ୍ୟ ଯେ କଲା ପାଳନ
ଯେ ପାପ ମୁଁ କରିଅଛି ତା ଅତି ମହାନ
ଆବର ଦୁଷ୍ଟ ଅଟଇ ଆଚରଣ ମୋର
ସ୍ୱଭାବ ମୋହର ପୁଣି ଅଟେ ଅତିକ୍ରୁର
ନିଦାରୁଣ କର୍ମ ବହୁ କରିଅଛି ମୁହିଁ
କି ଗତି ହୋଇବ ମୋର ଜାଣି ନ ପାରଇ
ପର୍ବତରେ ଚଢ଼ି ଅବା ତଳକୁ ଡେଇଁବ
ଅଥବାଯାଇ ଜଳନ୍ତା ଅଗ୍ନିରେ ଝାସିବ
ଶୋଧନ ହେବ ମୋପାପ କଲେ କେଉଁକର୍ମ
ଧେନୁ ଗୋ ସଂକ୍ଷେପି ତାର କହିଦିଅ ମର୍ମ
ବିସ୍ତାରି କହିବା ପାଇଁ ବେଳ ଆଉ ନାହିଁ
ଶୁଣି ନନ୍ଦା କହେ ବ୍ୟାଘ୍ର ପ୍ରବୋଧନା ଦେଇ
ସତ୍ୟଯୁଗେ ଧର୍ମ ଥିଲା ତପ ଆଚରଣ
ତ୍ରେତା ଯୁଗରେ ପ୍ରଧାନ ଜ୍ଞାନ ଅରଜନ
ଉଦ୍ଧାରର ପନ୍ଥା ଯଜ୍ଞ ହୋଇଲା ଦ୍ୱାପରେ
କଳିଯୁଗେ ଧର୍ମ ମାତ୍ର ରହିଛି ଦାନରେ
କଳିରେ ଦାନରେ ହୁଏ ଆତ୍ମାରେ ମଙ୍ଗଳ
ଅଭୟ ଦାନରେ ମିଳେ ସବୁ ଦାନ ଫଳ
ଅଭୟ ସବୁ ପ୍ରାଣୀଙ୍କୁ କରେ ଯେହୁ ଦାନ
ଦାନୀ ରୂପେ ଲାଭ ତାର ହୁଏ ଶ୍ରେଷ୍ଠସ୍ଥାନ
ଚରାଚରେ ଦାନ କରୁଅଛି ଯେ ଅଭୟ
ପରମବ୍ରହ୍ମ ପଦବୀ ପାଏ ସେ ନିଶ୍ଚୟ
ଅହିଂସା ସମାନ ଧର୍ମ ନାହିଁ ଏ ଲୋକରେ
ଶ୍ରେଷ୍ଠ ତାଅଟଇ ସବୁ ଧର୍ମଙ୍କ ମଧ୍ୟରେ
ଯଥାହାତୀ ପାଦ ଚିହ୍ନେ ଅନ୍ୟ ପ୍ରାଣୀଙ୍କର
ପଦଚିହ୍ନ ଲୁଚିଯାଏ ଆହେ ବ୍ୟାଘ୍ରବର
ଅହିଂସା ଆଗରେ ସବୁ ଧର୍ମ ସେହିପରି
ଅତି ନିଉନ ଅଟନ୍ତି ହୃଦେ ଥାଅଧରି
ଶୁଣ ବ୍ୟାଘ୍ର ଯୋଗରୂପୀ ପାଦପର ଛାଇ
ମନୁଷ୍ୟର ତିନିତାପ ବିନାଶ କରଇ
ଆଧି ଦୈବିକ ଭୌତିକ ପୁଣି ଆଧ୍ୟାତ୍ମିକ
ନାମ ଏ ତିନି ତାପର ଶୁଣ ମୃଗ ଧିପ
ଧରମ ଜ୍ଞାନ ଏ ଦୁଇ ଫୁଲ ସେ ଗଛର
ସ୍ୱର୍ଗ ମୋକ୍ଷ ଏହି ଦୁଇ ଫଳ ଅଟେ ତାର
ତ୍ରିତପରୁ ମନୁଷ୍ୟକୁ ଶାନ୍ତି ଦେବା ପାଇଁ
ସମର୍ଥ ଅଟେ ହେ ବ୍ୟାଘ୍ର ଯୋଗଗଛ ଛାଇ
ପୁଣି ଦୁଃଖ ନ ଭୋଗେ ସେ ଯେ ପାଏ ନିର୍ବାଣ
ଜୀବ ପକ୍ଷେ ଏହା ଶ୍ରେଷ୍ଠ ଶ୍ରେୟ ବୋଲିଜାଣ
ଯା କହିଲି ସଂକ୍ଷେପରେ ତୁମ୍ଭର ଆଗରେ
ହେ ବ୍ୟାଘ୍ର ଏହାକୁ ଯତ୍ନେ ରଖିବ ହୃଦରେ
ତୁମ୍ଭେ ବ୍ୟାଘ୍ର ନିଯେ ଏହା ହୋଇଅଛ ଜ୍ଞାତ
ପଚ୍ଚରିଲ ମାତ୍ର ମୋତେ ହୋଇବାକୁ ଶ୍ରୁତ
ତେବେ ବ୍ୟାଘ୍ରରୂପୀ ହାତୀ କହିଲା ବତାଇ
ମୁହିଁ ବ୍ୟାଘ୍ର ହୋଇଥିଲି ମୃଗୀ ଶାପ ପାଇ
ବ୍ୟାଘ୍ରରୂପେ ବହୁ ପ୍ରାଣୀ ମୁହିଁ ବଧ କଲି
ସେହିପକ୍ଷେ ଧେନୁ ସବୁ ନୀତି ପାଶୋରିଲି
ଆସିବାରୁ ଏବେ ମୁହିଁ ତୁମ୍ଭ ସଂପର୍କରେ
ସବୁ ଧର୍ମ ନୀତି ମୋର ପଡୁଛି ମନରେ
ସତ୍ୟୋପାଳନେ ତୁ ଧେନୁ ଲଭିବୁ ସଦ୍‌ଗତି
ପୁଣି କିଛି ପୁଛିବାକୁ ହେଉଛି ମୋ ମତି
ମୋ ରହିବା ଏଥି ହେଲା ଶହେଟି ବସ୍ତର
ଭାଗ୍ୟେଥିଲେ ମିଳେ ସାଧୁ ଧର୍ମ ସ୍ୱର୍ଗପୁର
ହେ ସୁବ୍ରତେ କହ ତୁମ ନାମ କି ଅଟଇ
ଏତେବେଳେ ହେଲା ତାହା ମୁହିଁ ଜାଣିନାହିଁ

ବ୍ୟାଘ୍ରର ବଚନେ ଧେନୁ ହୋଇଣ ଆନନ୍ଦ
କହିଲେ ମୋ ନାମ ନନ୍ଦା ସ୍ୱାମୀ ମୋର ନନ୍ଦ
ମୋତେ ଖାଇବାକୁ ଅଭିଳାଷ କରିଥିଲ
ତାହାର କାରଣକହ କିପାଁ ନ ଖାଇଲ
ନନ୍ଦା ଏହି ନାମ ଯେବେ କାନରେ ପଡିଲା
ବ୍ୟାଘ୍ର ରୂପ ତେଜି ପ୍ରଭଞ୍ଜନ ଉଭାହେଲା
ମୁକ୍ତ ଶାପ ହୋଇ ତେବେ ନୃପ ପ୍ରଭଞ୍ଜନ
ପୂର୍ବର ବଳ ସ୍ୱରୂପ କଲା ସେ ଧାରଣ
ଏ ମଧ୍ୟରେ ନିଯେ ଧର୍ମ ଧେନୁ ସତ୍ୟ ଜାଣି
ତା ଦର୍ଶନେ ଅବତରି ଆସିଲେ ଅବନୀ
ସେ ଦୁଗ୍ଧ ବତୀକୁ ଧର୍ମ କହିଲେ ଆଦରେ
ଆପ୍ୟାୟିତ ହେଲି ତୋର ସତ୍ୟ କଥନରେ
ଆସିଲି କେବଳ ତୋତେ ଦେଖିବାର ପାଇଁ
ପ୍ରସନ୍ନ ତୋ ପ୍ରତି ଧେନୁ ମୁହିଁ ଅଛି ହୋଇ
ହେ କଲ୍ୟାଣୀ ମାଗ ବର ଯାହା ଇଚ୍ଛା ତୋର
କହିଲା ନନ୍ଦା ସେ କାଳେ ଶୁଣି ଧର୍ମ ଗୀର
ଅନୁଗ୍ରହ ପ୍ରଭୁ ଯେବେ କରିବ ମୋଠାରେ
ପୁତ୍ରସହ ରଖ ମୋତେ ଉତ୍ତମ ଧାମରେ
ଉତ୍ତମ ସେ ତୀର୍ଥ ହେବ ମୁଁ ଯହିଁ ରହିବି
ତହିଁ ଯିବା ଲୋକ ବାଞ୍ଛା ପୂରଣ କରିବି
ସେ ତୀର୍ଥକୁ ଗଲେ ଯାତ୍ରୀ ଧରମ ଲଭିବ
ମୋ ନାମରେ ସେହି ତୀର୍ଥ ନାମିତ ହୋଇବ
ପାଖେ ଏହି ଯେଉଁ ନଦୀ ଦେଖୁଛ ଆପଣ
ଆଜୁ ନନ୍ଦ ସରସ୍ୱତୀ ହେଉ ତାର ନାମ
ତୁମ ବରଦାନ ହେଉ ଏ କାଳ ସ୍ମାରକ
ମୋକ୍ଷ ଲାଭ କରୁ ଏଥି ସ୍ନାନ କଲା ଲୋକ
କହନ୍ତି ପୁଲସ୍ତ୍ୟ ଶୁଣ ଗଙ୍ଗାଙ୍କ ନନ୍ଦନ
ନନ୍ଦା ସେହିକ୍ଷଣି ତହୁଁ ଗଲା ପୁଣ୍ୟଧାମ
ଲଭିଲା ସେ ସତ୍ୟବ୍ରତ ଯୋଗୁଁ ପୁରସ୍କାର
ନିଜ ରାଜ୍ୟେ ଗଲେ ପ୍ରଭଞ୍ଜନ ନରବର
ସରସ୍ୱତୀ ତଟିନୀକୁ ନନ୍ଦା ନାମ ଦେଇ
ରହିଲା ନନ୍ଦା ସେଠାରୁ ସ୍ୱର୍ଗପୁରେ ଯାଇ
ସେହି ଦିନୁ ନନ୍ଦା ସରସ୍ୱତୀ ହେଲା ଖ୍ୟାତ
ଶୁଣିଲ ତା ଯାହା ପୁଛିଥିଲ ଦେବବ୍ରତ
ଶେଷହେଲା ଏକାଦଶ ଅଧ୍ୟାୟ ଏଠାରେ
ସୁଧୀଗଣ ଦୋଷ ଥିଲେ କ୍ଷମାକର ବାରେ
ମାର୍କଣ୍ଡ ନାମରେ ଦ୍ୱିଜ ତାନ୍ତ୍ରିକ ପ୍ରବର
ବିନାୟକ ତାହାଙ୍କର ଏକଇ କୁମର
ଗୋପୀନାଥ ମୋର ଜ୍ୟେଷ୍ଠ ସୁତ ମୁଁ ତାଙ୍କର
ଆଶ୍ରୟ ମୋହର ସଦା ଶରଚ୍ଚପଧର
ରାଜ ମୋ ହୃଦରେ ସଦା ଜାନକୀ ରମଣ
ତୁମ୍ଭ ପାଦାମ୍ବୁଜେ ମୋର ଏହି ନିବେଦନ
ଅଟେ ଅତି ସୁମଧୁର ପ୍ରଭୁ ସେହି ନାମ
ଧ୍ୟାନମୋର ସେହି ପ୍ରଭୁ ସେହି ମୋର ପ୍ରାଣ
ଏତିକି ବିନତି ପ୍ରଭୁ ତବ ଶ୍ରୀପୟରେ
ଅନ୍ତକାଳେ ସେହି ନାମ ରହୁ ମୋ ଚିତ୍ତରେ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ ନନ୍ଦା ଧେନୁ-ବ୍ୟାଘ୍ର
ଉପଖ୍ୟାନ ବର୍ଣ୍ଣନୋ ନାମ
ଏକାଦଶ ଅଧ୍ୟାୟ

□

## ଦ୍ୱାଦଶ ଅଧ୍ୟାୟ

### ବୃତ୍ରବଧ, ଅଗସ୍ତ୍ୟ ଉପାଖ୍ୟାନ ଓ ଦମ ମହାତ୍ମ୍ୟ ବର୍ଣ୍ଣନ

କହିଲେ ପୁଲସ୍ତ୍ୟ ଋଷି ଶୁଣ ଗଙ୍ଗାସୁତ
ହର୍ଷଭରେ କହୁଅଛି ଯେ ପୂତ ଚରିତ
ସତ୍ୟଯୁଗ ଆରମ୍ଭରେ ସମସ୍ତ ଅସୁର
ମଦମତ୍ତ ହୋଇଥିଲେ ପୃଥିବୀ ମଧ୍ୟର
କାଳିକେୟନାମେ ସର୍ବେ ବିଖ୍ୟାତ ଲୋକରେ
ଦାରୁଣପଣ ତାଙ୍କର କିଏ ବର୍ଣ୍ଣପାରେ
ଅଟନ୍ତି ସେମାନେ ବୃତ୍ର ଅସୁର ଆଶ୍ରିତ
ମଦମତ୍ତ ସେହି ସଦା ଯୁଦ୍ଧେ ଥାଏ ରତ
ତାର ଅନୁରୂପ ତାର କାଳ କେୟ ଗଣ
ତେଣୁ ତାଙ୍କୁ ଡରି ରହିଥାନ୍ତି ସୁର ଗଣ
ସମସ୍ତେ ଅସ୍ତ୍ର ଶସ୍ତ୍ରରେ ହୋଇଣ ସଜ୍ଜିତ
ଆକ୍ରମଣ କଲେ ଯାଇ ଦେବ ପୁରୁହୂତ
ଉତ୍ତମ ଦେବତା ଯେତେ ସ୍ୱର୍ଗପୁରେ ଥିଲେ
ଅସୁରଙ୍କ ତ୍ରାସୁ କେହି ରକ୍ଷା ନ ପାଇଲେ
ତେଣୁ ସୁରଗଣ କଲେ ବହୁତ ଯତନ
ଯେପରି ଏ ଦୈତ୍ୟକୁଳ ଲଭିବେ ନିଧନ

ସମସ୍ତେ ଏକାଠି ହୋଇ ଯେତେ ଯୁଦ୍ଧକଲେ
କାଳକେୟଙ୍କୁ ବଳରେ ଜିଣି ନ ପାରିଲେ
ତେଣୁ ସର୍ବେ ମଘବାଙ୍କୁ ଆଗରେ ଚଳାଇ
ଭେଟିଲେ ସେକାଳେ ଯାଇ ସାବିତ୍ରୀଙ୍କପାଇଁ
କୃତାଞ୍ଜଳୀପୁଟେ ଦେବେ ଯେଣୁ ସ୍ତୁତିକଲେ
ସେ ସ୍ତୁତିରେ ପରମେଷ୍ଠି ସଂତୁଷ୍ଟ ହୋଇଲେ
କହିଲେ ଜାଣିଛି ମୁହିଁ ସବୁ ଦେବଗଣ
ଅସୁରଙ୍କ ଯୋଗୁଁ ତୁମେ ପାଉଛ କଷଣ
ତୁମର କାମନା ଅଟେ ଅସୁରଙ୍କ ବଧ
ସେଥିପାଇଁ କହେ ଯାହା ଶୁଣ ହେ ବିବୁଧ
ମୋ କହିବାପରି ଯେବେ ଉପାୟ କରିବ
ମନେରଖ ତେବେ ବୃତ୍ର ଅସୁର ମରିବ
ମହର୍ଷି ଶ୍ରେଷ୍ଠ ଦଧିଚୀ ନାମ ତାହାଙ୍କର
ତାଙ୍କ ପାଶେ ଯାଅ ଏବେ ସମସ୍ତ ଅମର
ଦଧିଚୀ ଋଷି ଅଟନ୍ତି ଋଷିଙ୍କେ ପ୍ରଧାନ
ଯତନେ ସ୍ତବରେ ତୋଷ କର ତାଙ୍କ ମନ
ତୁଷ୍ଟ ହୋଇ ସ୍ତବେ ଯେବେ ଯାଚିବେ ସେ ବର
ମନେରଖିଥିବ ତେବେ କହିବ ଏ ଗୀର
ଆହେ ଋଷିବର ଏହି ତ୍ରିପୁର ହିତରେ
ଯା ମାଗିବୁ ଦିଅ ଦୟା ବହି ହୃଦୟରେ
ଆପଣଙ୍କ ଅସ୍ଥି ଦେବ କରନ୍ତୁ ପ୍ରଦାନ
ଯା ଲାଗି ହୋଇବ ତିନି ପୁରର ରକ୍ଷଣ
ଯେ ହେତୁ ତୁମ୍ଭଙ୍କୁ ଋଷି ବର ଦେଇଥିବେ
ତୁମ କଥାମତେ ସେହିକ୍ଷଣି ପ୍ରାଣଦେବେ
ତାଙ୍କ ମୃତ୍ୟୁ ସମୟକୁ ତୁମ୍ଭେ ଜଗିଥିବ
ସେହି ଋଷିଙ୍କର ହାଡ ଯତନେ ଆଣିବ
ସେ ଅସ୍ଥିରେ ଅସ୍ତ୍ର ଏକ କରିବ ନିର୍ମାଣ
ଅତି ପ୍ରବଳ ସେ ବଜ୍ର ହେବ ତାରନାମ
ବୃତ୍ରାତରେ ସେହି ବଜ୍ର ମହାନ ହୋଇବ
ଅଶନିବୋଲି ତାହାର ଅନ୍ୟନାମ ହେବ
ସେହି ବଜ୍ରାସ୍ତ୍ରରେ ପରେ ବାସବଙ୍କ କରେ
ମହାବଳୀ ବୃତ୍ରାସୁର ଯିବ ଯମପୁରେ
କହିଲି ତୁମ୍ଭଙ୍କୁ ମୁହିଁ ଏ ଯେଉଁ ଉପାୟ
କର ତାହା ସୁରଗଣ ଜୟେ ରଖି ଲୟ
ଦେବଗଣ ଏ ଅନୁଜ୍ଞା ଧାତାଠାରୁ ପାଇ
ନମସ୍କାର କଲେ ତାଙ୍କ ପାଦେ ନମ୍ର ହୋଇ

ଶଚୀଙ୍କ ରମଣେ ସର୍ବେ ଚଳାଇ ଆଗରେ
ପ୍ରବେଶ ହୋଇଲେ ଦଧିଚୀଙ୍କ ଆଶ୍ରମରେ
ସରସ୍ୱତୀ ନଦୀତିରେ ଦଧିଚୀ ଆଶ୍ରମ
ନାନା ଦ୍ରୁମରେ ପୂରିତ ଅତି ମନୋରମ
ପାଦପେ ଅଟନ୍ତି ନାନା ଲତାରେ ବେଷ୍ଟିତ
ସୁବାସିତ କୁସୁମରେ ହୋଇଣ ଶୋଭିତ
ଅଭିରତ ଶୁଭୁଥାଏ ଭ୍ରମର ଗୁଞ୍ଜନ
ଅବା ବୈଦିକ ଋଷିଙ୍କ ସାମବେଦ ଗାନ
ସ୍ୱର୍ଗ ତାଙ୍କୁ ସରି ନୁହେ କୌଣସି ଗୁଣରେ
ଦେଖି ତା ଚକିତ ହେଲେ ସକଳ ଅମରେ
ଦେଖିଲେ ଆଶ୍ରମେ ବସିଥିଲେ ମୁନିବର
ସୂର୍ଯ୍ୟେ ନିନ୍ଦା କରୁଥିଲା ତେଜ ତାହାଙ୍କର
ଶୋଭନ୍ତି ବୈକୁଣ୍ଠପୁରେ ଯଥା ନାରାୟଣ
ତଥା ଆଶ୍ରମରେ ଶୋଭୁଥିଲେ ଋଷିଗଣ
ଦେବଗଣ ତାଙ୍କ ପାଦେ ନମସ୍କାର କଲେ
ପରମେଷ୍ଠି ନିର୍ଦ୍ଦେଶ ଚିତ୍ତେ ଚିନ୍ତାକଲେ
ରହିଲେ ଆଶ୍ରମେ ତାଙ୍କ ପଦେ ଅନୁସରି
ସ୍ତୁତି ବଚନରେ ସଦା ତାଙ୍କୁ ତୋଷ କରି
ସେବାରେ ଦେବତାଙ୍କର ହୋଇଣ ସଂତୁଷ୍ଟ
ଦଧିଚୀ ମହର୍ଷି ପ୍ରକାଶିଲେ ଏହି ଭାଷ
ତୁମ୍ଭର ସେବାରେ ମୁହିଁ ପ୍ରୀତ ଦେବଗଣ
ପଚରେ କର ପ୍ରକାଶ ଆସିବା କାରଣ
ଜଣା ଯାଏ ସର୍ବେ ହୋଇଅଛ ଉତ୍ପୀଡ଼ିତ
ତେଣୁ ତୁମ୍ଭ କାନ୍ତି ହୋଇଅଛି ତିରୋହିତ
ଆହେ ସୁରଗଣ ନୋହି ବ୍ୟାକୁଳ ଅନ୍ତର
କହ ସବୁ ମୋ ଆଗରେ କରିଣ ବିସ୍ତାର
କହିଲେ ତା ଶୁଣି ଦେବେ ହୋଇଯୋଡପାଣି
ପ୍ରୟୋଜନ ତୁମ ଅସ୍ଥି ଆହେ ଋଷିମଣି
ନିର୍ମିତ ହୋଇବ ଏକ ଅସ୍ତ୍ର ସେ ଅସ୍ଥିରେ
ଜାଣନ୍ତୁ ତେବେ ସଂତୋଷ ହେବୁ ସବୁ ସୁରେ
ମହତ କାର୍ଯ୍ୟ ତା ଫଳେ ହୋଇବ ସାଧିତ
ଆମ୍ଭର ସୁଖ ତହିଁରେ ରହିଛି ନିହିତ
କହିଲେ ଦଧିଚୀ ଶୁଣି ଦେବଙ୍କ ବଚନ
କରିବି ତା ତୁମ୍ଭହିତ ହୋଇବ ଯେସନ
ଦେହ ଛାଡି ଏଥି ଯାଉଛି ମୁଁ ପରପାରେ
ଇଚ୍ଛାଅନୁରୂପ ଉପଯୋଗ କର ତାରେ

କହି ଏହା ଋଷି ତ୍ୟାଗ କଲେ କଳେବର
ହେଲେ ଇନ୍ଦ୍ରାଦି ଦେବେ ତା ଦେଖି ହର୍ଷଭର
ଋଷି ଅସ୍ଥି ଧରି ଦେବଗଣ ତହୁଁ ଗଲେ
ତ୍ୱଷ୍ଟାଙ୍କୁ ଅସ୍ତ୍ର ନିର୍ମାଣ ପାଇଁ ସମର୍ପିଲେ
ତ୍ୱଷ୍ଟା ଅଟନ୍ତି ସ୍ୱର୍ଗର ଶ୍ରେଷ୍ଠ କାରିଗର
ମୋ କହିବାରୁ ଜାଣ ତା ଶାନ୍ତନୁକୁମର
ଯେଉଁ ଅସ୍ତ୍ରେ ହେବ ଦେବ କାର୍ଯ୍ୟ ସମାଧାନ
ବତାଇଲେ ଦେବେ ବସି ତ୍ୱଷ୍ଟା ସନ୍ନିଧାନ
ତ୍ୱଷ୍ଟା ଦେବତାଙ୍କଠାରୁ ନିର୍ଦ୍ଦେଶ ପାଇଲେ
ନିର୍ମାଣ କାର୍ଯ୍ୟରେ ଅତି ଯତ୍ନେ ମନଦେଲେ
ଦେଖାଇଲେ ଥିଲା ତାଙ୍କ ଯେତେ ପରାକ୍ରମ
ତାଫଳେ ଗଢିଲେ ବଜ୍ର ଶସ୍ତ୍ରଙ୍କେ ଉତ୍ତମ
ନିଜକୃତି ଦେଖି ତ୍ୱଷ୍ଟା ଅତି ପ୍ରୀତ ହୋଇ
ଇନ୍ଦ୍ରକରେ ଦେଲେ ତାହା ତାଙ୍କୁ ଏହା କହି
ଏହି ଉଗ୍ର ଅସ୍ତ୍ର ଇନ୍ଦ୍ର ଦେଲି ତୁମ୍ଭକରେ
ଶତ୍ରୁଙ୍କୁ କରିବଜୟ ତୁମ୍ଭେ ସହଜରେ
ଶାସନ କର ଦେବଙ୍କ ସହ ସ୍ୱର୍ଗପୁର
ସେ ଶସ୍ତ୍ରକୁଧରି ଇନ୍ଦ୍ର ହେଲେ ହର୍ଷଭର
ରଖିଲେ ତାହାକୁ ନେଇ ଅତି ଯତନରେ
ନିର୍ମିତ ହୋଇଲା ବଜ୍ର ଭୀଷ୍ମ ଏ ବିଧିରେ
ବଜ୍ର ଲଭି ଦେବଗଣେ ହୋଇ ସୁ ପୂଜିତ
ଗଲେ ଇନ୍ଦ୍ରଥିଲା ଯହିଁ ସେ ବୃତ୍ରଦଇତ
ଇନ୍ଦ୍ରଙ୍କର ବଳ ଆଗୁଁ ଥିଲା ଦୈତ୍ୟଜ୍ଞାନ
ତେବେ ହେଲା ବଜ୍ରଧ୍ୱନୀ ତାର କର୍ଣ୍ଣଗତ
ପୃଥିବୀ ପର୍ବତ ଦିଗ ବିଦିଗ ଆକାଶ
ସର୍ବେ ପ୍ରକମ୍ପିତ ହେଲେ ଭୟେ ଲଭି ତ୍ରାସ
ସେ ଅସ୍ତ୍ର ଧ୍ୱନୀ ଶୁଣି ନିଜେ ମଘବାନ
ଅତି ତ୍ରସ୍ତ ହେଲେ ଶୁଣ ଶାନ୍ତନୁ ନନ୍ଦନ
ଭୟେ ଫିଙ୍ଗିଦେଲେ ଅସ୍ତ୍ର ଶଚୀଙ୍କ ରମଣ
ନଭେ ଗଲା ଅସ୍ତ୍ର ଧ୍ୱନୀ କରିଣ ଭୀଷଣ
କାଞ୍ଚନମାଳା ଶୋଭିତ ବୃତ୍ରାସୁର ଗଳା
କାଟିଦେଲା ଭୀଷ୍ମ ସେହି ଅସ୍ତ୍ରେ ଅନର୍ଗଳା
ପ୍ରତୀତହେଲା ମନ୍ଦର ମହାଶୈଳବର
ପଡ଼ିଲା ବା ଧରା ପରେ ତେଜି ବିଷ୍ଣୁକର
ଦୈତ୍ୟହନ୍ତ ପରେ ଇନ୍ଦ୍ର ମହାଭୟପାଇ
ସର ମଧ୍ୟରେ ପ୍ରବେଶ କଲେ ଧାଇଁ ଯାଇ

କରୁ ବଜ୍ର ଗଲା ଜାଣିଲେ ହେଁ ପୁରନ୍ଦର
ଦେଖିନଥିଲେ ସେ ଶତ୍ରୁ ଶିର ଛିଡ଼ିବାର
ତେଣୁ ପ୍ରାଣଭୟେ ଇନ୍ଦ୍ରକରି ପଳାୟନ
ସରସୀ ଆଶ୍ରୟକଲେ ଶାନ୍ତନୁ ନନ୍ଦନ
ବୃତ୍ର ହତ ଜାଣି ଦେବେ ପ୍ରସନ୍ନ ହୋଇଲେ
ମହର୍ଷି ସକଳ ଜାଣି ସ୍ତୁତି ଆରମ୍ଭିଲେ
ଯୁଦ୍ଧୁ ବଞ୍ଚି ରହିଥିଲେ ଯେତେକ ରାକ୍ଷସ
ବୃତ୍ରହତ ଦେଖି ହେଲେ ଅତ୍ୟନ୍ତ ବିରସ
ତ୍ରିଲୋକ ବିଜୟ ଇଚ୍ଛା ଥିଲା ତାହାଙ୍କର
ବୃତ୍ର ହତେ ହେଲେ ତେବେ ଭୟରେ କାତର
ଜଗତରେ ଅଛି କିଏ କାଳକୁ ବଳିବ
ଚିନ୍ତୁଥିଲେ ଯାହା ଆନ କଲା ତା ଦଇବ
ଉବୁରା ଯେତେକ ରକ୍ଷ ସୈନ୍ୟ ରହିଥିଲେ
ଦେବଗଣ ଯାଇ ଶୀଘ୍ର ତାହାଙ୍କୁ ବଧିଲେ
ବାୟୁସମ ବେଗଶାଳୀ ଦୈତ୍ୟଥିଲେ ଯେତେ
ସାଗର ମଧ୍ୟରେ ଲୀନ ହେଲେ ସେ ସମସ୍ତେ
ରତ୍ନ ମୀନ ସମାକୁଳ ସାଗର ମଧ୍ୟରେ
ମନ୍ତ୍ରଣା କଲେ ଏକାଠି ହୋଇଣ ଅସୁରେ
ତାହାଙ୍କ ମଧ୍ୟରେ ଯେତେ ବୁଦ୍ଧିବନ୍ତ ଥିଲେ
ଉଦ୍ଧାର ହେବା ଉପାୟ ବସି ଚିନ୍ତାକଲେ
ଯେଉଁ ଅସୁରେ ଅଟନ୍ତି ବିଶ୍ୱରେ ବିଖ୍ୟାତ
ଦେବଙ୍କ ବଳରେ ହେଲେ ଭୟରେ ସେତ୍ରସ୍ତ
କାଳବଶେ ସେହି ଜ୍ଞାନୀ ଲୋକେ ହେଲେ ବଣା
ନ ଦିଶିଲା ତାଙ୍କୁ ଧର୍ମ ଯୁକତ ମନ୍ତ୍ରଣା
ଧାର୍ମିକ ତପସ୍ୱୀ ଯେତେ ଛନ୍ତି ଜଗତରେ
ପାଞ୍ଚିଲେ ସେମାନେ ତାଙ୍କ ନାଶ ପ୍ରଥମରେ
ଏମାନେଥିଲେ ଧରମ ବଳକର ହେବ
ଧର୍ମ ବୃଦ୍ଧି ହେଲେ ବଳ ସୁରଙ୍କ ବଢ଼ିବ
ତପସ୍ୱୀ ଧର୍ମଜ୍ଞ ଯେତେ ଯେଉଁଠି ଦେଖିବ
ହେ ଅସୁରେ ଆଗ ତାଙ୍କ ବିନାଶ ବିହିବ
ଏହାଙ୍କ ନାଶରେ ନଷ୍ଟ ହୋଇବ ଜଗତ
ଏ ମନ୍ତ୍ରଣା ହେଲା ସ୍ଥିର ଶାନ୍ତନୁଙ୍କ ସ୍ୱତ
ତେଣୁ ସେହି ସବୁ ରକ୍ଷ ହୀନବୁଦ୍ଧି ହୋଇ
ବିନାଶର ହେତୁ ହେଲେ ସିନ୍ଧୁମଧେ ରହି
ଉର୍ମିଳା ରତ୍ନଗରଭା ବରୁଣ ଆଳୟ
ହୋଇଥିଲା ରକ୍ଷଙ୍କର ମହତ ଆଶ୍ରୟ

ସେ ଅସୁର ଗଣ ରହି ସମୁଦ୍ର ମଧ୍ୟରେ
କ୍ଷୟ ତିନିଭୁବନର ବିଚାରି ଚିତ୍ତରେ
ଶୁଣ ଭୀଷ୍ମ ଅତି କ୍ରୋଧ ହୋଇଲେ ଅସୁରେ
ଖୋଜି ଖୋଜି ମୁନିଗଣେ ବଧିଲେ ରାତ୍ରରେ
ପୁଣ୍ୟବନ୍ତ ଋଷି ଯେତେ ଆଶ୍ରମରେ ଥିଲେ
ନିର୍ଦ୍ଦୟ ଅସୁର କରେ ସର୍ବେ ଅସ୍ତହେଲେ
ଦେଖି ତାହା ଦେବଗଣ ହୋଇଲେ କାତର
ମନ୍ତ୍ରଣା ପାଇଁ ଗମିଲେ ଇନ୍ଦ୍ରଙ୍କର ପୁର
ଇନ୍ଦ୍ରଙ୍କୁ ଆଗରେ ରଖି ତେବେ ସୁରଗଣ
ବୈକୁଣ୍ଠକୁ ଗଲେ ବିଷ୍ଣୁ ଦର୍ଶନ କାରଣ
ଅପରାଜିତ ବୈକୁଣ୍ଠ ଅଧିପ ଶ୍ରୀହରି
ଦେଖି ତାଙ୍କୁ ତେବେ ସ୍ତୁତି କଲେ ଏହିପରି
ତୁମେ ପ୍ରଭୁ ଭଗବାନ ହେ ମଧୁସୂଦନ
ଭର୍ତ୍ତା ସବୁ ଜଗତର ଅଟନ୍ତି ଆପଣ
କର୍ତ୍ତା ଅଟନ୍ତି ଆପଣ ସମସ୍ତ ସୃଷ୍ଟିର
ତୁମରି ନିର୍ମିତ ଏହି ବିଶ୍ୱ ଚରାଚର
ଦେବଗଣର ସ୍ତବରେ ହୋଇଣ ସଂତୋଷ
କହିଲେ ଶ୍ରୀ ନାରାୟଣ ମଧୁମୟ ଭାଷ
ଶୁଣ ଦେବଗଣ ଏବେ ମୋହର ବଚନ
ଲୋକ କ୍ଷୟ ନିବାରଣେ ତୁମ୍ଭ ଆଗମନ
ମୋତେ ମଧ୍ୟ ଆଗୁ ତାହା ଜ୍ଞାତ ଅଛି ହୋଇ
ଯା କହିବି ଶୁଣ ସର୍ବେ ରକ୍ଷ ନାଶପାଇଁ
ଛାଡ଼ିଦିଅ ଦୁଃଖ ଯାହା ଅଛି ହୃଦୟରେ
କାଳକେୟ ଦୁଷ୍ଟେ ନାଶ ଯିବେ ନିକଟରେ
ଇନ୍ଦ୍ରକରେ ବୃତ୍ରାସୁର ମରଣ ଦେଖିଲେ
ତାଙ୍କୁ ମାରି ଇନ୍ଦ୍ର ଯାଇ ସରରେ ଲୁଚିଲେ
ବୃତ୍ର ମରନ୍ତେ ଅସୁରେ ସାଗରକୁ ଯାଇ
ଲୁଚିରହିଛନ୍ତି ତାହା ଜାଣି ଅଛି ମୁହିଁ
ରହି ଗ୍ରାହ ସମାକୁଳ ସେହି ଉଦଧିରେ
ନିର୍ଭୟରେ ଋଷିଗଣେ ବଧନ୍ତି ରାତିରେ
ସମୁଦ୍ରରେ ଲୁଚି ରହି ଥିବାରୁ ତାଙ୍କର
କ୍ଷତିକିଛି ନହୁଅଇ ଶୁଣ ସର୍ବ ସୁର
ବୁଦ୍ଧିବାନ ତୁମ୍ଭେ ଅଟେ ସକଳ ଅମରେ
ସାଗର ଶୁଖିଲେ ଧରା ପଡ଼ିବେ ଅସୁରେ
ଯେଉଁରୂପେ ଏ ସାଗର ହୋଇବ ଶୋଷିତ
ସେ କଥା ବିଚାର କର ସର୍ବଦଇବତ

ବିଷ୍ଣୁଙ୍କ ଶ୍ରୀମୁଖ ବାଣୀ ଶୁଣି ବଜ୍ରପାଣି
ଉପାୟ ପାଇଁ ସୁରଙ୍କୁ ସଙ୍ଗତରେ ଘେନି
ବ୍ରହ୍ମଲୋକେ ଯାଇ ସର୍ବେ ହୋଇଣ ପ୍ରବେଶ
ପ୍ରଣତହୋଇ କହିଲେ ବିଷ୍ଣୁଙ୍କ ସନ୍ଦେଶ
ଦେବଙ୍କ ମୁଖରୁ ଶୁଣି ଶ୍ରୀହରି ବଚନ
ପରମେଷ୍ଠି ମନେ ମନେ ହୋଇ ସୁପ୍ରସନ୍ନ
ସମସ୍ତ ଦେବଙ୍କୁ ତେବେ ଘେନି ସଙ୍ଗତରେ
ପ୍ରବେଶ ହୋଇଲେ ଅଗସ୍ତିଙ୍କ ଆଶ୍ରମରେ
ଆଶ୍ରମରେ ଥିଲେ ଋଷି ଅତି ତେଜସ୍କର
ଯଥାରୀତି ମାନ୍ୟକଲେ ତାଙ୍କୁ ସବୁ ସ୍ୱର
ଋଷି ବୃନ୍ଦରେ ଅଗସ୍ତି ହୋଇ ଉପାସିତ
ଜଣାଯାଉଥିଲେ ଅନ୍ୟ ବ୍ରହ୍ମାଙ୍କ ସମେତ
ମୈତ୍ରା ବରୁଣ ଆବର ନାମ ତାହାଙ୍କର
ମହାତ୍ମା ସେ ସବୁଋଷି ମାନଙ୍କର ବର
ତପସ୍ୟା ପ୍ରଚୁର ଧୀର ପଣେ ସେ ଧରିତ୍ରୀ
ତପ ଯଶ କ୍ଷମା ଗୁଣେ ଯଥା ପରମେଷ୍ଠି
କହିଲେ ବିନୟେ ଦେବେ ତାଙ୍କୁ ଯୋଡ଼ିକର
ରକ୍ଷକ ଅଟ ଆପଣ ଏହି ତ୍ରିପୁରର
ନହୁଷ ଥିଲା ସମସ୍ତ ଲୋକର କଣ୍ଟକ
ତୁମ୍ଭେ ତେବେ ହେଲ ମୁନୀ ତାର ନିବାରକ
ବିନ୍ଧ୍ୟାଚଳ ସୂର୍ଯ୍ୟଙ୍କର ପଥ ନିରୋଧିଲା
ପୃଥିବୀର ଏକ ଭାଗ ଅନ୍ଧାରେ ରହିଲା
ପାଖକେ ସର୍ବଦା ଦିନ ରାତି ଅନ୍ୟପଟେ
ଉଭୟ ପଟର ପ୍ରାଣୀ ମଲେ ଛଟପଟେ
ତଥାପି କ୍ରୋଧରେ ବଢ଼ିଥିଲା ବିନ୍ଧ୍ୟାଚଳ
ତୁମ୍ଭର ବଚନ ମାନି ସେ ମହା ଅଚଳ
ମଥା ନତକଲା ତେଣୁ ସଂସାର ବର୍ତ୍ତିଲା
ହେ ଋଷି କୀର୍ତ୍ତି ତୁମର ଅକ୍ଷୟ ହୋଇଲା
ଦେବଗଣେ ତାରିଅଛ ବହୁ ବିପର୍ତ୍ତିରେ
ଏବେ ମଧ୍ୟ ପଡ଼ିଅଛୁ ସୁରେ ସଙ୍କଟରେ
ଉଦ୍ଧାର ଯେବେ ଏଥିରୁ ତୁମ୍ଭେ ନ କରିବ
ଏ ପୃଥିବୀ ସୁରକୁଳ ନିଶ୍ଚେ ଲୋପହେବ
ତୁମ୍ଭେ ଆମ୍ଭର ରକ୍ଷକ ଆହେ ଋଷିବର
ତୁମ୍ଭବିନା ନାହିଁ କେହି ଆଶ୍ରୟ ଆମ୍ଭର
ଶୁଣି ସୁରଙ୍କର ଏହି ବିନୟ ବଚନ
କହିଲେ ମିତ୍ରା ବରୁଣୀ ହୋଇ ସୁପ୍ରସନ୍ନ

କହ ସୁରେ ସିଦ୍ଧିପାଇଁ କେଉଁ ପ୍ରୟୋଜନ
ହୋଇଅଛି ମୋ ଆଶ୍ରମେ ତୁମ୍ଭ ଆଗମନ
ମାଗ ବର ସୁରେ ଯାହା କାମନା ତୁମ୍ଭର
କହିଲେ ତା ଶୁଣି ସୁରେ ହୋଇ ଯୋଡ଼କର
ମାଗିବୁ ଯେ ବର ପ୍ରଭୁ ତା ଅଟେ ଅଦ୍ଭୁତ
ସେହି ବର ଦାନେ ଆଉ କେ ନୁହେଁ ସମର୍ଥ
ଆହେ ଦେବର୍ଷି କରନ୍ତୁ ପାନ ଏ ସାଗର
ତ୍ରିପୁରର ହିତ ହେବ ଫଳରେ ତାହାର
ସମୁଦ୍ର ଶୁଖିଲେ କାଳକେୟ ରକ୍ଷଗଣ
ସୁରଙ୍କ କରେ ଦେବର୍ଷୀ ଲଭିବେ ନିଧନ
ଦେବତାଙ୍କ ନିବେଦନ କରି ସ୍ୱୀକାର
ସେପରି ହେଉ କହିଲେ ଋଷିଙ୍କ ଶେଖର
କରିବି ତୁମ୍ଭର କାର୍ଯ୍ୟ ଆହେ ଦେବଗଣ
ନିହିତ ଚହିଁରେ ଯେଣୁ ଲୋକର କଲ୍ୟାଣ
ଆହେ ଭୀଷ୍ମ ଋଷି ଶ୍ରେଷ୍ଠ କହି ଏହି ରୂପେ
ଦେବଙ୍କ ସହିତ ଗଲେ ସମୁଦ୍ର ସମୀପେ
ଜାଣି ସେହି ବେଳ-ତାଙ୍କୁ ମରି ଚମତ୍କାର
ତା ଦର୍ଶନ ଅଭିଳାଷ ରଖି ହୃଦୟର
ଗଲେ ସିଦ୍ଧ ଋଷିଗଣ ତାହାଙ୍କ ସଙ୍ଗରେ
ଉରଗ ଗନ୍ଧର୍ବ ଯକ୍ଷ କିଂପୁରୁଷେ ନରେ
ସମସ୍ତଙ୍କ ସଙ୍ଗେ ଋଷି ଦେଖିଲେ ସାଗର
ଝମକର ସଂକୁଳ ମହାଭୟଙ୍କର
ବାୟୁ ବିଚଳିତ ଉର୍ମୀ ନଟୀ ପରକାରେ
ନାଚୁଥିଲା ଅବା କର ପ୍ରସାରି ଉର୍ଦ୍ଧ୍ୱରେ
ହଂସରୂପେ ସାଗରର ଫେନ ରାଶି ରାଶି
ଲହରୀ ଘାତେ କୂଳକୁ ଆସୁଥିଲେ ଭାସି
ସମୁଦ୍ରର ଉର୍ମୀ ଦିଶେ ପର୍ବତ ଆକାର
ବାହାରିତ ମଧ୍ୟୁ ବହୁ ଭୀଷଣ ମଗର
ଆସି ବେଳା ଭୂମି ବଟନେ କଲେ ବିଚରଣ
ସେ ଦୃଶ୍ୟ ଲେଖନୀ କରିପାରେ କି ବର୍ଣ୍ଣନ
ବିବିଧ ପକ୍ଷୀରେ ଯୁତ ସାଗରକୁ ଦେଖି
ଭୟେ ସମାଗତ ସର୍ବେ ବୁଜିଦେଲେ ଆଖି
କହିଲେ ଅଗସ୍ତି ତେବେ ସମସ୍ତଙ୍କୁ ଚହିଁ
ପିଇ ଦେବି ସାଗର ମୁଁ ଲୋକହିତ ପାଇଁ
ସାବଧାନ ହୋଇ ରହ ଆହେ ସୁରକୁଳ
ତୁମ୍ଭର ଯା କାର୍ଯ୍ୟ ତାହା କରିବି ଚଞ୍ଚଳ

ଏପରି କହି ଅଗସ୍ତି ଋଷିକୁଳ ରାଣ
କ୍ରୋଧରେ ଥରାଇ ଦେଇ ନିଜ ଅପଘନ
ଚହିଁଥିଲେ ସର୍ବେ ମିତ୍ରା ବରୁଣୀ ସେ କ୍ଷଣି
ଏକା ଚେଳାକେ ପିଇଲେ ସମୁଦ୍ରର ପାଣି
ଶୁଷ୍କ ସମୁଦ୍ରକୁ ଦେଖି ଇନ୍ଦ୍ରାଦି ଦୈବତ
ସହିତ ଅନ୍ୟ ଯେ ଥିଲେ ହୋଇଲେ ଚକିତ
ସର୍ବେମିଶି ଅଗସ୍ତିଙ୍କୁ କରିଣ ଅର୍ଚ୍ଚନ
ପ୍ରକାଶିଲେ ଆନନ୍ଦରେ ଏ ସ୍ତୁତି ବଚନ
ଲୋକ ମଙ୍ଗଳ କାରକ ତୁମ୍ଭେ ଋଷିବର
ଲଭିତୁମ୍ଭ ଅନୁଗ୍ରହ ଧନ୍ୟ ଏ ସଂସାର
ରକ୍ଷକ ଏ ଜଗତର ଅଟନ୍ତି ଆପଣ
ଜଗତର ଉନ୍ନତିର ତୁମ୍ଭେ ହିଁ କାରଣ
ଗନ୍ଧର୍ବଗଣ ଉଚ୍ଚାରି ଜୟ ଜୟ ନାଦ
ସଂଗୀତ ଗାଇ ନାଚିଲେ ବଜାଇ ବାଇଦ
ଦେଖି ତାହା ଦେବଗଣ ଆନନ୍ଦ ହୋଇଲେ
ଷୋଡ଼ଶୋପଚାରେ ଋଷିପାଦେ ପୂଜାକଲେ
ଶୂନ୍ୟେ ରହି ସୁରାଙ୍ଗନା ହରଷ ଅନ୍ତରେ
ଋଷିଙ୍କୁ ପୂଜିଲେ ଦିବ୍ୟ ସୁମନ ବୃଷ୍ଟିରେ
ସମୁଦ୍ରକୁ ଜଳହୀନ କଲେ ଋଷିବର
ଏହିପରି ଭାବେ ଶୁଣ ଶାନ୍ତନୁ କୁମର
ଜଳଶୂନ୍ୟ ସାଗରକୁ ଦେଖି ଦେବଗଣ
ସୁପ୍ରସନ୍ନ ହେଲେ ଶୁଣ ଶାନ୍ତନୁ ନନ୍ଦନ
ବଳେଯୁକ୍ତ ହୋଇ ଦିବ୍ୟ ଅସ୍ତ୍ର କରେ ଧରି
ଲୁଚିଥିବା ଅସୁରଙ୍କୁ ପ୍ରାଣେ ଦେଲେ ମାରି
ଅସ୍ତ୍ରହୀନ ହୋଇଥିଲେ ସେକାଳେ ଅସୁରେ
ତେଣୁ ଅଳ୍ପ ଆୟାସରେ ମଲେ ସୁର କରେ
ପୂର୍ଣ୍ଣ ବଳ ଦେବଙ୍କର ତେବେ ପ୍ରକାଶିଲା
ସିଂହନାଦ ମଧ୍ୟ ଅତି ଭୀଷଣ ହୋଇଲା
ଉତ୍ସାହ ହରାଇ ଦୈତ୍ୟେ ଭୟଭୀତ ହେଲେ
ତେଣୁ ଅନାୟାସେ ସୁର କରେ ପ୍ରାଣଦେଲେ
ଅସୁର ମଧ୍ୟରେ ଥିଲେ ଯେତେ ବଳକର
ଗର୍ଜିକଲେ ଦେବତାଙ୍କ ସଙ୍ଗରେ ସମର
ପଛକୁ ନ ଘୁଞ୍ଚି ତିଳେ ଦେବଙ୍କ ସଙ୍ଗରେ
ବହୁବେଳ ଯାଏଁ ରତ ହୋଇଲେ ଯୁଦ୍ଧରେ
ମୁନିଶାପେ ଆଗୁ ଦୈତ୍ୟେଦଗ୍ଧ ହୋଇଥିଲେ
ପରେ ଦେବତାଙ୍କ ଯୋଗୁଁ ଶକ୍ତିଭ୍ରଷ୍ଟ ହେଲେ

ସୁବର୍ଣ୍ଣେ ଭୂଷିତ ହୋଇ ସୁରଙ୍କର ଶିର
ଗଡ଼ିଲା ଯୁଦ୍ଧ ଭୂଇଁରେ ହୋଇଣ ପ୍ରଚୁର
କୁଣ୍ଡଳ ମଣ୍ଡିତ କେତେ ରାକ୍ଷସଙ୍କ ମୁଣ୍ଡ
ମଣ୍ଡିଦେଲା ସେ କାଳରେ ଯୁଦ୍ଧଭୂମି ଖଣ୍ଡ
ରକତରେ ଯେବେ ମହୀ ଆଚ୍ଛନ୍ନ ହୋଇଲା
ପୁଷ୍ପିତ ପଲାଶ ବୃକ୍ଷ ଶୋଭା ପ୍ରକାଶିଲା
ଯୁଦ୍ଧରେ ନମରି ଯେତେ ରାକ୍ଷସ ରହିଲେ
ତ୍ରସ୍ତ ହୋଇ ସର୍ବେ ଭୂମି ବିଦାରି ପଶିଲେ
ସେମାନେ ଆଶ୍ରୟ କଲେ ଯାଇ ରସାତଳ
ସଂଶୟ ନମଣ ଏଥି ଶାନ୍ତନୁ ଦୁଲାଳ
ଅତ୍ୟନ୍ତ ସଂତୁଷ୍ଟହୋଇ ତା ଶୁଣି ଅମରେ
ମୁଗ୍ଧକଲେ ଅଗସ୍ତ୍ୟଙ୍କୁ ସ୍ତୁତି ବଚନରେ
କହିଲେ ତୁମ୍ଭ ପ୍ରସାଦେ ଆହେ ଋଷିବର
ମହାସୁଖ ଉପୁଜିଲା ସବୁ ଲୋକଙ୍କର
ଏହି କାଳକେୟଙ୍କର ଭୀଷଣ ବିକ୍ରମ
ଲୋପହେଲା ତୁମ୍ଭଲାଗି ହେ ଋଷି ଉତ୍ତମ
ସମାଧାନ ହେଲା ଏବେ କାର୍ଯ୍ୟ ଦେବଙ୍କର
ତ୍ରିପୁରର ଦୁଃଖ ପ୍ରଭୁ ହୋଇଅଛି ଦୂର
ସମୁଦ୍ରକୁ ଏବେ ଋଷି କରନ୍ତୁ ପୂରଣ
ଯେ ଜଳ ପିଇଛ ତାକୁ କର ଉଦ୍‌ଗୀରଣ
ଅଗସ୍ତ୍ୟ ମହର୍ଷି ଶୁଣି ଦେବଙ୍କ ବଚନ
କହିଲେ ମୋ ଗର୍ଭେ ଜଳ ହୋଇଅଛି ଜୀର୍ଣ୍ଣ
ସମୁଦ୍ର ପୂରଣ ପୁଣି ହୋଇବ କିପରି
କହନ୍ତୁ ସକଳ ସୁରେ ହୃଦେ ଚିନ୍ତା କରି
ଦେବତାଙ୍କ ମଧ୍ୟେ ଥିଲେ ଯେତେ ବୁଦ୍ଧିବାନ
ଶୁଣି ଅଗସ୍ତ୍ୟ ଋଷିଙ୍କ ଶ୍ରୀମୁଖ ବଚନ
ଭାବିଭାବି ସର୍ବେ ଯେଣୁ ହେଲେ ନିରୂପାୟ
ବିଷାଦେ ପୂର୍ଣ୍ଣ ହୋଇଲା ସମସ୍ତ ହୃଦୟ
ଦେବଗଣ ଚୁହାଁ ଚୁହିଁ ହୋଇ ପରସ୍ପରେ
ଅଗସ୍ତିଙ୍କ ପାଶେ ପ୍ରବେଶିଲେ ଯୋଡ଼ିକରେ
ସେ ସମୟେ ପ୍ରଜାକୁଳ ହୋଇ ଭୟଭୀତ
ସେହିଠାରେ ମଧ୍ୟ ଆସି ହେଲେ ଉପଗତ
ବିପ୍ରଗଣେ ସହ ବିଷ୍ଣୁ ଦେବଙ୍କ ସଙ୍ଗରେ
ପ୍ରବେଶ ହୋଇଲେ ଯାଇ ବ୍ରହ୍ମାଙ୍କ ପାଶରେ
ବ୍ରହ୍ମାଙ୍କ ସହିତ ସର୍ବେ ବିଚାର ଛିଣ୍ଡାଇ
ଆସିଲେ ପୁରି ଅଗସ୍ତି ଋଷିଥିଲେ ଯହିଁ

ସାଗରର ପୂର୍ତ୍ତି ମାତ୍ର ବିଚାରି ଚିତ୍ତରେ
ପ୍ରାର୍ଥନା କଲେ ଋଷିଙ୍କୁ ସର୍ବେ ସମସ୍ୱରେ
ସମସ୍ତଙ୍କ ଆଗେ ପିତାମହ ରହିଥିଲେ
ଦେବତାଙ୍କ ସେ ସମୟେ ଏପରି କହିଲେ
ଶୁଣହେ ବିବୁଧେ ମୋର କହିବା ବଚନ
ଯଥା ଇଚ୍ଛା ଯାଅ ସର୍ବେ ଛାଡ଼ି ଏହି ସ୍ଥାନ
କାଳବଶେ ପୂର୍ଣ୍ଣ ଯେବେ ହେବ ଏ ସାଗର
ସେହିକାଳେ ଦୁଃଖଯିବ ସର୍ବ ଦେବଙ୍କର
ପୃଥିବୀରେ ଭଗୀରଥ ତେବେ ଜନ୍ମହେବେ
ପୂର୍ବଜ ଉଦ୍ଧାରଲାଗି ତପ ଆଚରିବେ
ତାହାଙ୍କ ତପସ୍ୟା ବଳେ ଗଙ୍ଗାଙ୍କ ପ୍ରବାହ
ସମୁଦ୍ରକୁ ଜଳେପୂର୍ଣ୍ଣ କରିବ ନିଶ୍ଚୟ
କଞ୍ଜଉଦ୍ଭବ ଶେଷରେ ଏହିପରି କହି
ସମସ୍ତଙ୍କୁ ଦେଲେ ଭୀଷ୍ମ ଘରକୁ ପଠାଇ
ଅତି ପ୍ରୀତ ହୋଇ ବ୍ରହ୍ମଯୋନୀ ତଦପରେ
ପ୍ରବେଶ ହୋଇ ଅଗସ୍ତି ଋଷିଙ୍କ ପାଶରେ
କହିଲେ ଦେବଙ୍କ କାର୍ଯ୍ୟ ସାଧିଲ ବହୁତ
ଏ କୀର୍ତ୍ତି ତୁମ୍ଭର ସଦା ହୋଇବ ଘୋଷିତ
ତୁମ୍ଭ ଯୋଗୁଁ ରକ୍ଷକୁଳ ହୋଇଲା ବିନାଶ
ଅମର ହୋଇ ରହିବ ତୁମ୍ଭର ଏ ଯଶ
ଦେବଙ୍କୁ ତାରିଲ ଋଷି ତୁମ୍ଭେ ସଙ୍କଟରୁ
ଅବର୍ଣ୍ଣିତ ସଂତୋଷ ମୁଁ ଲଭିଛି ଏଥିରୁ
ମାଗିନିଅ ଏବେ ଋଷି ମୋହଠାରୁ ବର
ଦେବି ତାହା ଯାହା ଋଷି ତୁମ୍ଭେ ଇଚ୍ଛା କର
ଶୁଣି ବ୍ରହ୍ମାଙ୍କ ମୁଖରୁ ବଚନ ଏସନ
କହିଲେ ଅଗସ୍ତ୍ୟ ତାଙ୍କୁ କରିଣ ପ୍ରଣାମ
ଦେବକାର୍ଯ୍ୟ କଲି ମୁହିଁ ରହି ଏ ସ୍ଥାନରେ
ଏ ମୋର ଆଶ୍ରମ ଶ୍ରେଷ୍ଠ ହେଉ ଜଗତରେ
ଏହାର ନାମ ହୋଇବ ଅଗସ୍ତ୍ୟ ଆଶ୍ରମ
ଯେ ଏଥେ ଆସିବ ସେହି ହେବ ପୂର୍ଣ୍ଣକାମ
ବ୍ରହ୍ମାଙ୍କ ବର ପ୍ରଭାବେ ଶାନ୍ତନୁ ତନୟ
ସେହିଦିନୁ ସେ ସ୍ଥାନେ ହେଲା ଅତି ପୁଣ୍ୟମୟ
ସେହି ଆଶ୍ରମରେ ଭୀଷ୍ମ ଯେତେ ବିପ୍ରଥିଲେ
ସମୁଚିତେ ଆଶ୍ରମର କାର୍ଯ୍ୟ ନିର୍ଭାକଲେ
ସର୍ବେ ସମସ୍ତ ମନ୍ତ୍ରରେ ଯୁକ୍ତଥିଲେ ହୋଇ
ଥାଆନ୍ତି ସକଳ ଜୀବେ ଦୟାଭାବ ବହି

ପ୍ରାଣୀହିଁସା କେବେ କାୟମନ ବଚନରେ
ନ କରନ୍ତି ସେ ଆଶ୍ରମେ ଥାନ୍ତି ଯେତେନରେ
ନୃଶଂସତା ହୋଇ କିଛି ତହିଁ ନ ରହିଲା
ସମସ୍ତଙ୍କ ମୁଖୁ ପ୍ରିୟ ବାଣୀ ବାହାରିଲା
ସେ ସ୍ଥାନେ ହୋଇଲେ ସର୍ବେଅଗ୍ନିହୋତ୍ର ରତ
ନିତ୍ୟ ଅତିଥି ତୋଷଣେ ବଳାଇଲେ ଚିତ୍ତ
ସ୍ୱାଧ୍ୟାୟ ସହିତ ସର୍ବେ କଲେ ନିତ୍ୟସ୍ନାନ
ଦେଖୁଥାନ୍ତି ପରନାରୀ ଜନନୀ ସମାନ
ଦୁହିତା ଭଗିନୀ ବଧୂ ଆଦିଙ୍କୁ ସ୍ନେହରେ
କରନ୍ତି ସଦା ସଂତୁଷ୍ଟ ପ୍ରୀତି ବଚନରେ
ଦେଖନ୍ତି ପରସ୍ତିରୀକୁ ଇଚ୍ଛା ହୀନ ହୋଇ
ସହୁଥାନ୍ତି ତିରସ୍କାର ଉତ୍ତର ନ ଦେଇ
ତିରସ୍କାର ଲଭି କାରେ ନ ହୁଅନ୍ତି କ୍ରୋଧ
ସୁପ୍ରିୟ ବଚନେ ତାଙ୍କୁ କରିଥାନ୍ତି ବୋଧ
ହିଂସାଭାବ ଧରେ ଯେବେ କେହିତାଙ୍କଠାରେ
ହିଁସା ନକରି ପ୍ରବୋଧ ଦିଅନ୍ତି କଥାରେ
ହିଁସାକୁ ହିଁସାରେ କେବେ ନଦିଏ ଉତ୍ତର
ସମସ୍ତେ ମହାତ୍ମା ତହିଁ ଭୀଷ୍ମ ମନେକର
ଇନ୍ଦ୍ରିୟଙ୍କୁ ଜୟ ତହିଁ ସର୍ବେ ଥାନ୍ତି କରି
ନିଅନ୍ତି ସୁଖ ଦୁଃଖକୁ ସମଭାବେ ଧରି
ସର୍ବେ ଏଥି ସମଭାବେ କରି ବିଚରଣ
ସମାଧିରେ ବସି ଇଷ୍ଟ କରନ୍ତି ଚିନ୍ତନ
ସନାତନ ବ୍ରହ୍ମ ଲୋକ ପ୍ରାପ୍ତି ଉଦ୍ଦେଶ୍ୟରେ
ଏ ସ୍ଥାନ ଶ୍ରେଷ୍ଠ ଅଟଇ ଭୀଷ୍ମ ତ୍ରିଲୋକରେ
ଶୁଣ ଭୀଷ୍ମ ତଦୁତ୍ତାରେ କେତେ କାଳପରେ
ନିରସ ହେଲା ସେ ସ୍ଥାନ ବୃଷ୍ଟି ବିହୀନରେ
ବଞ୍ଚିବା କଷ୍ଟ ହୋଇଲା ସବୁ ପ୍ରାଣୀଙ୍କର
କ୍ଷୁଧା ପ୍ରପୀଡ଼ିତ ହେଲା ସକଳ ଅନ୍ତର
ଅନ୍ନହୋଇଲା ସମସ୍ତ ପ୍ରାଣୀଙ୍କ ଅଭାବ
ଭୀଷଣ ହୋଇଲା ସେହି କାଳର ପ୍ରଭାବ
ସମସ୍ତଙ୍କ ହୃଦେ ଜାତ ହେଲା ଏ ବିଚାର
ଏ ସମୟେ ପ୍ରାଣରକ୍ଷା ହେବ କି ପ୍ରକାର
କ୍ଷୁଧା ହେତୁ ସବୁପ୍ରାଣୀ ହତଜ୍ଞାନ ହେଲେ
ଯେ ଯହିଁ ପାଇଲେ ଯାହା ସେ ସ୍ଥାନେ ଖାଇଲେ
କ୍ଷୁଧିତ ସଂତାନ ମୁଖେ ନ ଦେଇ ଆହାର
ନିଜେ ନିଜ ପେଟ ପାଇଁ ହୋଇଲେ ତତ୍ପର

ପର୍ଯ୍ୟଟକ ଋଷି, ବିପ୍ର ସେହି ସମୟରେ
ପଡ଼ିଲେ ଶାନ୍ତନୁ ସୁତ ନୃପତି ନେତ୍ରରେ
ଦେଖି ତାଙ୍କୁ ନରପତି କରି ସତକାର
ବିଷାଦିତ ହୋଇ ଅତି କହିଲେ ଏ ଗୀର
ପ୍ରତିଗ୍ରହ ଅନିନ୍ଦିତ ବୃତ୍ତି ବିପ୍ରଙ୍କର
ଜାଣିଛତ ଏହି କଥା ତୁମ୍ଭେ ଋଷିବର
ତେଣୁ ଆହେ ଋଷି ରଖି ମୋହର ପ୍ରାର୍ଥନା
ଯାହା ମୁଁ କରିବି ଦାନ ତାହା କରଘେନା
ଶ୍ରେଷ୍ଠ ଗ୍ରାମ, ରସ, ରତ୍ନ, ବିରି ସୁନା ଯବ
ଶ୍ରେଷ୍ଠ ଧେନୁ ସହ ଦାନ ମୋହଠାରୁ ନେବ
ମାଂସ କିନ୍ତୁ ନଖାଇବ ଆହେ ବିପ୍ରବର
କହିଲେ ପରେ ଋଷିଏ ଶୁଣି ନୃପଗୀର
ଶୁଣ ନୃପ ମଧୁସମ ଅଟେ ପ୍ରତିଗ୍ରହ
ବିଷସମ କରେ ପରେ ଲୋକଙ୍କୁ ନିଗ୍ରହ
ନରପତି ତୁମ୍ଭେ ଏହା ଜାଣି ଭଲକରି
କିପାଁ ସେ ଦିଗେ ଆମକୁ ଟାଣୁଅଛ ଧରି
ଦଶ ସୁନାରେ ହୁଅଇ ଗୋଟିଏ ମୋହର
ଦଶ ମୋହରରେ ଏକ ଧ୍ୱଜୀ ସଙ୍ଗରେ ସମାନ
ଏକ ବେଶ୍ୟା ଦଶଧ୍ୱଜୀ ସଙ୍ଗରେ ସମାନ
ଏକ ନୃପତିର ମୂଲ୍ୟ ଦଶ ବେଶ୍ୟା ଜାଣ
ଦଶ ସହସ୍ର ସୁନାରେ ପୌଣ୍ଡିକ ଗୋଟିଏ
ଯେ ହୁଏ ଏପରି ସେହି ନୃପପଦ ପାଏ
ତେଣୁ ନୃପଠାରୁ ଦାନ କେବେ ନ ଘେନିବ
ଯେ ନେବ ଅଘୋର ପାପେଭାଗୀ ସେ ହୋଇବ
ଲୋଭେ ଯେଉଁ ବିପ୍ର ନେବ ରଜାଠାରୁ ଦାନ
ତାମିସ୍ର ନାମେ ନରକ ହେବ ତାର ସ୍ଥାନ
ବହୁତ ଯାତନା ଭୋଗି ସେହି ନରକରେ
ରହିବ ସେ ଆହେ ନୃପ ଘେନ ସୁଚିତ୍ତରେ
ତେଣୁ ତୁମ୍ଭ ଦାନ ନୃପ ଅଗ୍ରାହ୍ୟ ଅଟଇ
ଯାଆନ୍ତୁ ଏଠାରୁ ତେଣୁ ଅଧିକ ନ କହି
ବୁଝିଲ ତ ଭଲେ ନୃପ ଆମ କଥା ଘେନ
ଅନ୍ୟକୁ ଡାକି ଏ ଦାନ କରନ୍ତୁ ପ୍ରଦାନ
ଅରଣ୍ୟକୁ ଗଲେ ଋଷିଗଣ କହି ଏହା
ତେବେ ନିଜ ନବରକୁ ଗଲେ ନରନାହା
ନିଜର ମନ୍ତ୍ରୀମାନଙ୍କୁ ପାଶେ ଡକାଇଲେ
ବିଚାରି ସୁବର୍ଣ୍ଣ ସବୁ ଭୂମିରେ ପୋତିଲେ

ଭୂମିତଳେ ସବୁ ପୋତି ଧରି ଉଦୁମ୍ବର
ବନରେ ପଶି ସମସ୍ତେ ଖୋଜିଲେ ଆହାର
ବନରେ ଯେବେ ତାହାଙ୍କୁ ଦେଖିଲେ ବ୍ରାହ୍ମଣ
ଚିହ୍ନିପାରି ଭଲେ ତାଙ୍କୁ ନ କଲେ ଗ୍ରହଣ
ନୋହୁ ଆମ୍ଭେ ଜ୍ଞାନ ହୀନ ବ୍ରାହ୍ମଣେକହିଲେ
ଉତ୍ତମ ବୁଦ୍ଧି ଆମ୍ଭର ଶୁଣିଥାଅ ଭଲେ
କଥା ବୁଝିବାରେ ଆମ୍ଭେ ନୋହୁ ଅସମର୍ଥ
ଜାଣିଛୁ ତୁମ୍ଭ ପାଖରେ ଅଛି ବହୁ ଅର୍ଥ
ଜଗତରେ ଧନ ପ୍ରୀତି ଅଟଇ ଅପାର
ମରିପୁଣି ଜନ୍ମି ପାଏ ତାର ଅଧିକାର
ଅନନ୍ତ ସୁଖରେ ଯାର ଇଚ୍ଛା ରହିଥିବ
ବସ୍ତୁକୁ ଗ୍ରହଣ କଦାପି ସେ ନକରିବ
ଶତଗୁଣ ଧନ ହୁଏ ସହସ୍ର ଗୁଣିତ
ତେଣୁ ତାକୁ ନିଏ ଯେହୁ ଅଟେ ସେ ପାପୀଷ୍ଠ
ପୃଥିବୀରେ ଯେତେ ବିରି ସୁନା ପଶୁସ୍ତିରୀ
ପର୍ଯ୍ୟାପ୍ତ ନୁହେ କାହାର ବୁଝ ହେତୁକରି
ତେଣୁ ସବୁ ବେଳେ ସର୍ବଶୁଭ ଚିନ୍ତାକର
ଜଗତରେ ଏହା ଅଟେ ତାତ୍ପର୍ଯ୍ୟ ଧର୍ମର
ଜଣେ ବସି ଧ୍ୟାନ ତପ ସଂଗ୍ରହ କରଇ
ଅନ୍ୟ କିଏ ଧନ ସଞ୍ଚି ପାଖରେ ରଖଇ
ଉଭୟଙ୍କ ମଧ୍ୟେ ତପ ଯେ କରେ ସଂଗ୍ରହ
ତାହାଠାରେ ବିଶେଷତା ରହିଛି ନିଶ୍ଚୟ
ଧନ ଯେ ସଂଚୟକରେ କଦାପି ତା ଠାରେ
ମହତ୍ୱ ନଥାଏ ଏହା ଖ୍ୟାତ ଏ ଲୋକରେ
ଧନର ସଂଚୟ ଏଣୁ କରିବ ବର୍ଜନ
ଧନ ମାତ୍ର ଅଟେ ଉପଦ୍ରବର କାରଣ
ଧନ ଯୋଗୁଁ ସର୍ବ ନାଶ ହୁଏ ଉପସ୍ଥିତ
ତେଣୁ ବର୍ଜିବ ତାହାକୁ ଯେ ହେବ ପଣ୍ଡିତ
କହ ସଂସାରେ ଏପରି ଲୋକ ଅଛି କିଏ
ସଂଚୟରୁ ଉପଦ୍ରବ ନ ଲଭିଛି ଯିଏ
ପ୍ରତିଗ୍ରହ ନ କରଇ ଯେବଣ ବ୍ରାହ୍ମଣ
ସଂତୋଷେ ତା ବ୍ରହ୍ମତେଜ ହୁଏ ବହୁଗୁଣ
ଅଭାବ ଐଶ୍ୱର୍ଯ୍ୟ ବେନି ଯେବେ ତୁଳାଯିବ
ଐଶ୍ୱର୍ଯ୍ୟଠାରୁ ଅଭାବ ନିଶ୍ଚେ ବଡ଼ ହେବ
ରାଜାଠାରୁ ବିପ୍ର ତେଣୁ ଅଧିକ ଅଟଇ
ତେଣୁ ରାଜାଠାରୁ ବିପ୍ରାଦାନ ନିଏ ନାହିଁ

କହିଲେ କଶ୍ୟପ ଯେଉଁ ବିପ୍ରଠାରେ ଅର୍ଥ
ଥାଏ ତାହା ଜାଣ ଶେଷେ ହୁଅଇ ଅନର୍ଥ
ଐଶ୍ୱର୍ଯ୍ୟରେ ଯେଉଁ ବିପ୍ର ଅନୁରକ୍ତ ଥାଏ
ନିତ୍ୟ ଶ୍ରେୟ ଜାଣ ତାର ନଷ୍ଟ ହୋଇଯାଏ
ଅର୍ଥ ସଂପତ୍ତିର ଲୋଭ ନରକର ଦ୍ୱାର
ସଂପତ୍ତି ଯୋଗରେ ମୋହ ବଢାଇ ଅପାର
ତେଣୁ ଅର୍ଥ ଅଟେ ଅନର୍ଥର ରୂପାନ୍ତର
ଅର୍ଥମୋହ ତେଣୁ ମନୁ ସଦା ପରିହର
ଧର୍ମପାଇଁ ଧନରେ ଯେ ରଖେ ଅଭିଳାଷ
ତାହା ମଧ୍ୟ ଉତ୍ତମରେ ନ ଲଭେ ପ୍ରକାଶ
ଦାନ ଶୀଳ ଯେ ଲୋକର ହୁଅଇ ପ୍ରାପତ
ରହଇ କି କେବେ ତାହା ହୋଇଣ ଶାଶ୍ୱତ
ରାଜଧନ ଯେ ବିପ୍ରର ଅଟଇ ଉପସ୍ଥିତ
ମହର୍ଷିଗଣଙ୍କେ ସେହି ହୁଅଇ ଶୋଚିତ
ଦାନରେ ଯେଉଁ ବିପ୍ରର ରହୁଥାଏ ଲୟ
ତାହାକୁ ଜଣା ନଯାଏ ନରକର ଭୟ
ସବୁବେଳେ ପ୍ରତିଗ୍ରହ କରିବା ବିପ୍ରର
ବ୍ରହ୍ମତେଜ ନଷ୍ଟହୁଏ ସଂଦେହ ନ କର
ପ୍ରତିଗ୍ରହ ଶକ୍ତିଯୁକ୍ତ ଅଟେ ଯେ ବ୍ରାହ୍ମଣ
ଦାନ ଗ୍ରହଣରେ ଯେବେ ନଥାଏ ତା ମନ
ସେପରି ବିପ୍ରଙ୍କୁ ଜାଣ ଯେବେ ଦାନଦେବ
ବିପ୍ର ତେବେ ପ୍ରତିଗ୍ରହ କେବେ ନ କରିବ
ଯେଉଁପରି ପଦ୍ମନାଡ ଜଳମଧ୍ୟେ ଥାଏ
ପଦ୍ମନାଶଗଲେ ମଧ ତ ନାଶ ନ ହୁଏ
ଆଦ୍ୟ ଅନ୍ତେ ସେହିପରି ତୃଷ୍ଣା ଥାଏ ରହି
କେତେବେଳେ ହେଲେ ଦେହ ସଙ୍ଗନଛାଡ଼ଇ
ତୃଷ୍ଣାବୋଲି ଯାର ନାମ ସେ ଅଟେ ଏପରି
ନଯାଏ ମନ୍ଦବୁଦ୍ଧିକୁ କେବେ ତ୍ୟାଗକରି
ଶରୀର ହେଲେ ହେଁ ଜୀର୍ଣ୍ଣ ସେ ଜୀର୍ଣ୍ଣ ନ ହୁଏ
ଦେହକୁ ସମଭାବରେ ଘୋଟି ରହିଥାଏ
ଉଦୁମ୍ବର ଧାରୀ ଯେତେ ବନେ ଯାଇଥିଲେ
ଏହା କହି ବିପ୍ରେ ତାଙ୍କୁ ବନୁ ଖେଉଦିଲେ
ଦୃଢ ବ୍ରତୀଥିଲେ ସଦା ସେ ଋଷି ନିକର
ଅନ୍ୟକାର୍ଯ୍ୟ ନେଇ ତହୁଁ ହେଲେ ସ୍ଥାନାନ୍ତର
ତଦପରେ ଶୁଣ ଭୀଷ୍ମ ସେହି ଋଷିଗଣ
ମଧ୍ୟମ ପୁଷ୍କରେ ଗଲେ କରି ପର୍ଯ୍ୟଟନ

ସୁନସଖଙ୍କୁ ସେମାନେ ଦେଖିଲେ ସେଠାରେ
ତାହାଙ୍କ ସଙ୍ଗରେ ଗଲେ ଅନ୍ୟ ବନାନ୍ତରେ
ଦେଖିଲେ ସରସୀ ତହିଁ କମଳେ ପୂରିତ
ତା କୂଳେ ବସିଲେ ସର୍ବେ ହୋଇ ଅଶକତ
ସେ ସର ଶୋଭାରେସର୍ବେ ମୋହିତ ହୋଇଲେ
ବସି ତହିଁ ନିଜ ଶୁଭ ଗତି ଚିନ୍ତାକଲେ
ତେବେ ସୁନସଖ ହୋଇ କ୍ଷୁଧାରେ ଯୁକତ
ମୁନିଙ୍କ ମୁଖକୁ ଚାହିଁ ପୁଛିଲେ ଏମନ୍ତ
କହନ୍ତୁ ସର୍ବେ କ୍ଷୁଧାର ବାଧା କେଉଁପରି
ତାଙ୍କ ପ୍ରଶ୍ନେ ଋଷିଗଣ କହିଲେ ଏପରି
ଗଦା, ଅଶୀ ଶକ୍ତି ଚକ୍ର ସାୟକର ଘାତ
ହୋଇଲେ ଯେପରି କଷ୍ଟ ହୁଏ ଉପଗତ
କ୍ଷୁଧାର ବେଦନା ଅଟେ ତାହାଠାରୁ ବଡ଼
ଏଥିରେ ସଂଶୟ କିଛି ହୃଦରେ ନଧର
ଶ୍ୱାସ କୁଷ୍ଠ କ୍ଷୟ ଶୂଳ ବାଧା ଯେଉଁପରି
କ୍ଷୁଧା ତୃଷ୍ଣା ବାଧା ଜାଣ ଅଟେ ସେହିପରି
କ୍ଷୁଧା ବାଧା ସଙ୍ଗେ କେହି ନୁହନ୍ତି ସମାନ
କୈବଲ୍ୟର କ୍ଷୁଧା ଜାଣ ଅଟଇ କାରଣ
ଶୁଣ ଭୀଷ୍ମ ପୃଥିବୀରେ ଥାଏ ଯେତେ ଜଳ
ଆକର୍ଷଣ କରେ ରବିରଶ୍ମୀ ସେ ସକଳ
ସେହିପରି ଜଠରାଗ୍ନି ହୋଇ ପ୍ରଜ୍ୱଳିତ
ଶରୀରର ନାଡ଼ୀଗଣେ କରେ ସଂତାପିତ
ତାର ନାମ କ୍ଷୁଧା ସେହି ମହାପୀଡ଼ା ପାଇ
ସମସ୍ତ ଶରୀର ଯାଏ ତେଜହୀନ ହୋଇ
କ୍ଷୁଧାରେ ପୀଡ଼ିତ ହୋଇଥାଏ ଯେଉଁନର
ନପଶେ ଅନ୍ୟର କଥା କାନରେ ତାହାର
ନାକ ଥାଏ କିନ୍ତୁ କିଛି ଆଘ୍ରାଣ ନକରେ
ଆଖି ଥାଏ କିନ୍ତୁ କିଛି ଦେଖି ସେ ନପାରେ
ଶୁଣ ଭୀଷ୍ମ କ୍ଷୁଧାତୁର ହୁଏ ଶକ୍ତିହୀନ
କୌଣସି କଥାରେ ତାର ନଲାଗଇ ମନ
ପୂର୍ବ ଦକ୍ଷିଣ ଉତ୍ତର ପଶ୍ଚିମ ଆବର
ନହୁଏ ଯେ କ୍ଷୁଧାତୁର ତାଜ୍ଞାନ ଗୋଚର
ଅଧ ଊର୍ଦ୍ଧ୍ୱ ସେହିପରି ନ ଜାଣଇ ସେହି
ପଙ୍ଗୁ ଜନା ଅନ୍ଧ କାଲ ଠାରୁ ସେ ବଳଇ
କ୍ଷୁଦା ପ୍ରପୀଡ଼ିତ ହୋଇଥାଏ ଯେଉଁ ନର
ବାରି ସେ ନପାରେ କିଏ ନିଜ କିଏ ପର
ମାତା ପିତା ସୁତ ଭାର୍ଯ୍ୟା ସୋଦର ସୋଦରୀ
କ୍ଷୁଧାତୁର ଯେହୁ କେହି ନୁହନ୍ତି ତାହାରି
ସେମାନଙ୍କୁ ତ୍ୟାଗକରି ଯାଏ କ୍ଷୁଧାତୁର
ନରହେ ତାର ଦେବତା ଗୁରୁଙ୍କ ବିଚାର
ପାଖୁ ତାର ଆସିଲେ ଋଷି ବା ବ୍ରାହ୍ମଣ
ନ କରେ ଚର୍ଚ୍ଚା କ୍ଷୁଧାରେ ଆତୁର ଯା ପ୍ରାଣ
ଅନ୍ନବିହୀନ ଜୀବନ ଏହି ଜଗତରେ
ଅତି କଷ୍ଟପ୍ରଦ ଭୀଷ୍ମ ଭୂତ ଭବିଷ୍ୟରେ
ଅନ୍ନଠାରୁ ବଡ଼ ହୋଇ ଜଗତେ କେ ନାହିଁ
କୌଣସି ପଦାର୍ଥ ତାର ସମାନ ନୁହଇ
ଏକମାତ୍ର ଅନ୍ନଅଟେ ମୂଳ ଜଗତର
ଅନ୍ନର ମହିମା ତେଣୁ ଅଟେ ଆଗୋଚର
ଦେବତା ବ୍ରାହ୍ମଣେ ଯେହୁ ସେବା କରିଥାଏ
ନିତି ଯେହୁ କ୍ଷୁଦାର୍ତ୍ତଙ୍କୁ ଅନ୍ନଦାନ ଦିଏ
ଜ୍ଞାନୀ ଅଜ୍ଞାନୀ ପ୍ରମତ୍ତ କହି ହେଉ ସେହି
ପ୍ରସଙ୍ଗ କ୍ରମେ ଯଦ୍ୟପି ଘରକୁ ଆସଇ
ଅନ୍ନଦାନେ ତାକୁ ଯେବେ କରିବ ସଂତୋଷ
ସବୁଫଳ ମିଳେ ଜାଣ କୁରୁ କୁଳ ଈଶ
ଦାନ ଘେନୁଥିବା ବିପ୍ର ଏହା ଯେବେ କରେ
ହେ ଭୀଷ୍ମ ଧର୍ମରେ ଭାଗୀ ସେ ହୁଏ ବିଧିରେ
ଯମ ଦମ ନିୟମକୁ ତତ୍ତ୍ୱ ଦର୍ଶୀଗଣ
ଅଖଣ୍ଡ ଭାବରେ କରୁଥାଆନ୍ତି ବର୍ଣ୍ଣନ
ସନାତନ ଧର୍ମ ଦମ ଅଟେ ବ୍ରାହ୍ମଣର
ଏ କଥାରେ ହୃଦେ ତିଳେ ସଂଶୟ ନଧର
ଦମ ଅଟଇ ତେଜର ବର୍ଦ୍ଧନ କାରଣ
ପବିତ୍ରତା ଗୁଣେ ଦମ ଅଟଇ ଉତ୍ତମ
ଦମ ହେତୁ ନର ହୁଏ ପାପରୁ ରହିତ
ପାପହୀନ ଗାତ୍ର ହୁଏ ଜ୍ୟୋତିରେ ଦୀପିତ
ଯମ ନିୟମ ମଙ୍ଗଳ ଯା କିଛି ଚାହିଁବ
ଦମଥିଲେ ସବୁଫଳ ନିଶ୍ଚୟ ପାଇବ
ଯଜ୍ଞ ଦାନ ଅପବର୍ଗ ତପସ୍ୟାଚରଣ
ଫଳ ପ୍ରଦାନରେ ଦମ ଅଟଇ କାରଣ
ରହିତ ହୋଇ ଦମରେ ଯେହୁ କରେ ବାସ
ବ୍ୟର୍ଥତା ତା ଜୀବନରେ ଲଭଇ ପ୍ରକାଶ
ଯେଉଁସ୍ଥାନେ ବାସକରେ ଦମଶୀଳ ନର
ଆଶ୍ରମ ସମ ସମ୍ମାନ ବଢେ ସେ ସ୍ଥାନର

ନିଜ ଚରିତ୍ରରେ ଯେହୁ ହୁଅଇ ଯୁକତ
ଇନ୍ଦ୍ରିୟଙ୍କୁ ବଶ୍ୟେ ରଖେ ନିଜ ଇଚ୍ଛାମତ
ଅତ୍ୟନ୍ତ ସରଳ ଅଟେ ସ୍ୱଭାବ ଯାହାର
ଆଶ୍ରମକୁ ଯିବା ପ୍ରୟୋଜନ କିବା ତାର
ସେ ସ୍ଥାନର ଶୁଭ ହୁଏ ଯହିଁ ରହେ ସେହି
କାନନ ହୁଅଇ ପୁତ ତାର ସଙ୍ଗ ପାଇ
କାମ କ୍ରୋଧ ଯୁକ୍ତ ଅଟେ ଯାହାର ସ୍ୱଭାବ
ଏକାନ୍ତେ ଅରଣ୍ୟେ ରହି କି ଫଳ ହୋଇବ
ନ ତୁଟିବ କେବେ ତାର ପ୍ରଭାବ ଦୋଷର
ଅଶୁଦ୍ଧ ହୃଦୟ ଯେଣୁ ଅଟଇ ତାହାର
ଦମଶୀଳ ସେହି କେବେ ହୋଇ ନ ପାରଇ
ଏ କଥାସତ୍ୟ ଅଟେ ହେ କୁରୁକୁଳ ସାଇଁ
ସ୍ୱବଶରେ ପଞ୍ଚେନ୍ଦ୍ରିୟ ରଖେ ଯେଉଁନର
ଘରେ ରହି ତପଫଳ ଲାଭ ହୁଏ ତାର
ଯେହେତୁ ସେ ଇନ୍ଦ୍ରିୟଙ୍କୁ ବଶେ ରଖିଥାଏ
ଘରେ ବସି ତପସ୍ୟାର ଶ୍ରେଷ୍ଠ ଫଳ ପାଏ
ଉତ୍ତମ କର୍ମେ ଯାହାର ପ୍ରବୃତ୍ତି ବଢ଼ିବ
ତପୋବନେ ଯାଇତାର କେଉଁ ଲାଭ ହେବ
ସୁକର୍ମେ କରଇ ଯେହୁ ଜୀବିକା ଅର୍ଜନ
ସଂତୋଷରକ୍ଷା ଯାହାର ଅଟଇ ଧରମ
ନିଜର କର୍ମରେ ସଦା ଯେ ରହଇ ରତ
ଇନ୍ଦ୍ରିୟ ସକଳ ଯାରେ ହୋଇଥାନ୍ତି ଜିତ
ଅତିଥି ସତ୍କାରେ ଯାର ଶ୍ରଦ୍ଧାଥାଏ ରହି
ଘରେଥିଲେ ହେଁ ଧାର୍ମିକ ତାସମ କେ ନାହିଁ
ସଂସାର ଚକ୍ର ରହଇ ତାର ଅଗୋଚର
ଘରେ ରହି ମୋକ୍ଷ ପଦ ଲାଭ ହୁଏ ତାର
ନିଜେ ଅନ୍ନବସ୍ତ୍ର ଲାଭ ବିଚାରି ଚିତ୍ତରେ
ଯେ ରତ ହୁଅଇ ଦାନ ବ୍ରତ ତପସ୍ୟାରେ
ନହୁଏ କଦାପି ତାର ମୋକ୍ଷପଦ ଲାଭ
ସଂସାର ଚକ୍ର ତା ପକ୍ଷେ ହୁଅଇ ସୁଲଭ
ଲୋକଙ୍କର ଅନୁରାଗ ପ୍ରାପ୍ତି କାମନାରେ
ଯେ ଚିତ୍ତ ମୋହିତ କରେ ମୃଦୁ ଭାଷଣରେ
ମୋକ୍ଷ ପଦ ତାହାପାଇଁ ହୁଏ ଅସମ୍ଭବ
ଏହା ଅଟେ ଦୃଢତତ୍ତ୍ୱ ଧର୍ମର ଜାଣିବ
ଇଚ୍ଛାକରେ ଯେହୁ ସଦା ଏକାନ୍ତ ନିବାସ
ଦୃଢ଼ ଅଟଇ ଯାହାର ବ୍ରତ ଉପବାସ

ଇନ୍ଦ୍ରିୟ ବିଷୟେ ଜ୍ଞାନ ନଥାଏ ଯାହାର
ଅଧ୍ୟାତ୍ମ ଚିନ୍ତା ଯୋଗରେ ମତି ଥାଏ ଯାର
ହିଁସା ଯେହୁ କେବେ କାହାଠାରେ କରେନାହିଁ
ସେ କିପାଁ ଚିନ୍ତା କରିବ ମୋକ୍ଷପଦ ପାଇଁ
ଦମଶୀଳ ଲୋକ ସଦା ସୁଖରେ ରହଇ
ନିରନ୍ତର ତାର ସୁଖ ଉନ୍ନତି ଲଭଇ
ସର୍ବେ ସମ ଦେଖେ ମନ ଉନ୍ନତ ଲଭଇ
ମହାପଥେ ରଥେ ଯାତ୍ରା ନହୁଏ ସୁଖର
ନଚତେ ଘୋଡ଼ାରେ ହାତୀ ପିଠିରେ ନଯାଏ
ବିନୀତ ଆତ୍ମା କେବଳ ତା ସଙ୍ଗରେ ଥାଏ
ଯେଉଁ ଅନିଷ୍ଟ କରଇ ଦମହୀନ ନର
ନକରନ୍ତି ସିଂହ, ସାପ ଶତ୍ରୁ ସେ ପ୍ରକାର
ଅମଙ୍ଗଳତାହା ଦ୍ୱାରା ଯେପରି ଘଟଇ
ତାହାପରି ଭୟଙ୍କର ଭବେ କିଛି ନାହିଁ
ଯମକୁ ଯାମ କହିବା ନୁହଇ ଉଚିତ
ଯମ ନାମରେ କେବଳ ଆତ୍ମା ଅଟେ ଖ୍ୟାତ
ଆତ୍ମା ଯାହାର ହୃଦରେ ଯମରୂପେ ଥାଏ
ଯମର କଳ୍ପନା ତହିଁ କେବେ ନ ଯୋଗାଏ
ଯମ ହାତେ ତା ଅନିଷ୍ଟ କିପରି ହୋଇବ
ଯେଉଁ ନରଠାରେ ସଦା ଯମ ଯୁକ୍ତ ଥିବ
ଆତ୍ମସ୍ଥିତ ନର ତେଣୁ ନିଜ ଦୋଷ ପାଇଁ
ସ୍ୱାନ୍ତର ପରୀକ୍ଷା କରେ ଯତ୍ନବାନ ହୋଇ
ପରକୁ ଦୋଷ ଦେଇ ତା କେଉଁକାର୍ଯ୍ୟ ହେବ
ନିଜ ଦୋଷ ନିଯେ ଯଦି ଖୋଜି ନ ପାରିବ
ସ୍ୱଦୋଷ ନଜାଣି ପରେ ଆକ୍ଷେପ ଯେ କରେ
ମୂର୍ଖରୂପେ ଗଣାସେହି ହୁଅଇ ସଂସାରେ
ମନ୍ତ୍ରହୀନ ହେଉ ସେହି ହେଉଁ କ୍ରୀୟାହୀନ
ଜନ୍ମରୁ ସେ ହେଉ ଅବା ଉଚ୍ଚତା ବିହୀନ
ଦମଶୀଳ ଯେବେ ସେହି ସବୁ ଦୋଷ ତାର
ଲୁଚିଯାଏ ଶୁଣ ଆହେ ଶାନ୍ତନୁ କୁମର
ବସ୍ତ୍ର ଯେଉଁପରି ଅଙ୍ଗେ ଆଚ୍ଛାଦିତ ହୋଇ
ଗୋପନୀୟ ଅଙ୍ଗସବୁ ରଖଇ ଲୁଚାଇ
ସେହିପରି ଯାହାଠାରେ ଯମ କରେ ଘର
କୌଣସି ଦୋଷ ପ୍ରକାଶ ନହୁଅଇ ତାର
ଯେତେ ଶାସ୍ତ୍ର କରିଥାଉ ଲୋକ ଅଧ୍ୟୟନ
ନିରର୍ଥକ ସବୁ ଯେବେ ଯମେ ଅଟେ ହୀନ

ଦମଅଟେ ମୂଳ ଭୀଷ୍ମ ସକଳ ଶାସ୍ତ୍ରର
ଆକର୍ଷକ ଅଟେ ପୁଣି ସମସ୍ତ ଧର୍ମର
ଦମଯୁକ୍ତ ନର ଅଟେ ପ୍ରସିଦ୍ଧ ସଂସାରେ
ନହୁଅନ୍ତି କେହି ସମ ତାହାର ସଙ୍ଗରେ
ମୋହିତ ସେ ନୁହେଁ କେବେ ଦ୍ରବ୍ୟ କରିଲାଭ
ବ୍ରତମାନଙ୍କ ମଧ୍ୟରେ ଦମଟି ଦୁର୍ଲଭ
ବେଦତତ୍ତ୍ୱ ଅର୍ଥ ଜାଣେ ଯେଉଁ ଦ୍ୱିଜବର
ହେଉ ବା ଷଡ଼ାଙ୍ଗଯୁକ୍ତ ଅଧ୍ୟୟନ ତାର
ଦମରେ ସେ ବିପ୍ର ଯେବେ ହୋଇଥାଏ ହୀନ
ନିରର୍ଥକ ହୁଏ ତାର ସବୁ ଅଧ୍ୟୟନ
ପୂଜା ପାଏ ନାହିଁ ସେହି କଦାପି ଲୋକରେ
ସମାଦର ରହେ ନାହିଁ ତାର ସମାଜରେ
ବେଦପାଠ କେବେ ତାକୁ ନ କରେ ପବିତ୍ର
ଏକଥା ନିଶ୍ଚୟ ଜାଣ ଶାନ୍ତନୁଙ୍କ ସୁତ
ବେଦାଙ୍ଗ ସହିତ ବେଦ କରି ଅଧ୍ୟୟନ
ଅବା ଭଲେ ପଢ଼ିଥାଉ ସେ ଯୋଗ-ଦର୍ଶନ
ଯୋଗାଭ୍ୟାସ ଅବା ଥାଉ ଅଭ୍ୟାସତାହାର
କରିଥାଉ ଅବା ତୀର୍ଥ ସ୍ନାନ ବହୁବାର
ଦମ ସାଧନାରେ ଯେବେ ହୀନ ଅଟେ ସେହି
ତହିଁରେ ହେ ଭୀଷ୍ମ କିଛି ପ୍ରୟୋଜନ ନାହିଁ
ଧର୍ମ ନାବ ଚଢ଼ି ଯେହୁ ସଂସାରୁ ତରିବ
ଆଗ ସେ ଦମ ମହାତ୍ମ୍ୟ ଉଚିତେ ବୁଝିବ
ଦମର ମହାତ୍ମ୍ୟ ଅଛି ଏହି ଅଧ୍ୟାୟରେ
ବିଜ୍ଞ ଦ୍ୱିଜଗଣ ଏହା ବିଚାର ଚିତ୍ତରେ
ଧର୍ମ ରୂପ ଏ ନାବରେ କରି ଆରୋହଣ
ସଂସାର ସାଗରୁ ପାର ହୁଅ ବିଜ୍ଞଜନ
ସମସ୍ତ ଘୋର କଷ୍ଟରୁ କରିବ ଏ ପାର
କର୍ଣ୍ଣଗତ ଏହା ଯେବେ ହୋଇବ କାହାର
ଏ ଅଧ୍ୟାୟ ବିପ୍ର ଯେବେ ଶୁଣେ ବା ଶୁଣାଏ
ବାଟେ ଭ୍ରମ ନୋହିଁ ସିଧା ବ୍ରହ୍ମଲୋକେ ଯାଏ
ସବୁବେଳେ ବାସକରେ ସେ ବ୍ରହ୍ମଲୋକରେ
କେବେ ଆଉ ନ ପଡ଼ଇ ସଂସାର ଚକ୍ରରେ
ଏ ଦ.ୀ ଅଧ୍ୟାୟ ଅଟେ ସର୍ବସ୍ୱ ଧର୍ମର
ଆଚରଣ କରେ ଯେବେ ଏହାଶୁଣି ନର
ତରଇ ସେ ସଂସାରରୁ ଆୟାସ ନଥାଇ
ସଂଶୟ ବୋଲି ହେ ଭୀଷ୍ମ ଏଥି କିଛିନାହିଁ

ସଂପୂର୍ଣ୍ଣ କର୍ମର ସାର ଅଟେ ଏହିପରି
ଆତ୍ମପ୍ରତିକୂଳ ଯାହା ତେଜିବ ବିଚାରି
ଧାର୍ମିକ ଯେ ହେବ ଏହା ଯତ୍ନେ ଜଗିଥିବ
କର୍ମ ବାକ୍ୟ ମନେ ପର ବୋଧକ ନୋହିବ
ମନ୍ଦବୋଲି ନିଯେ ଯେଉଁ କର୍ମକୁ ଜାଣିବ
ଅନ୍ୟଠାରେ ତା ପ୍ରୟୋଗ କେବେ ନକରିବ
ବିଚାରିବ ମାତା ସମ ପରସ୍ତ୍ରୀ ଦେଖିଲେ
ଦ୍ୱିତୀୟ ଧର୍ମ ରୂପେ ଏ ଗଣାଯାଏ ଭଲେ
ତୃତୀୟ ଧର୍ମ ଦେଖିଲେ ପରର ସଂପତ୍ତି
ମାଟି ସମାନ ଭାବନା ରଖିବ ତା ପ୍ରତି
ପରଧନ ପ୍ରତି ଦୃଷ୍ଟି କଦାପି ନ ଦେବ
ଅଟେ ଧର୍ମର ସାର ହୃଦେ ଧରିନେବ
ସମସ୍ତ ପ୍ରାଣୀଙ୍କୁ ଦେଖେ ଯେହୁ ନିଜ ସମ
ସମସ୍ତ ଦର୍ଶନ ଶାସ୍ତ୍ର ଜାଣ ତା ଅଧୀନ
ନିଜ ଦୁଃଖ ସୁଖ ନିଜେ ଯଥା କରେ ଭୋଗ
ସେପରି କଷ୍ଟଦିଏ ତା ପରେ ହେଲେ ଯୋଗ
ତେଣୁ ଅନ୍ୟକୁ କଦାପି ପୀଡ଼ା ଦେବ ନାହିଁ
ଲୋକଙ୍କୁ କରିବ ସୁଖୀ ଯତ୍ନବାନ ହୋଇ
ବୈଶ୍ୱଦେବ କର୍ମ କରୁଥିବ ସଂପାଦନ
ତାଙ୍କପାଇଁ ଅନ୍ନ ଆଦି କରିବ ରନ୍ଧନ
ପର ଭଲପାଇଁ ନିଜ ଜୀବନ ଧରିବ
ଜାଣ ଭୀଷ୍ମ ଅଟେ ଏହା ସିଦ୍ଧାନ୍ତର ଭାବ
ନିଜ ପେଟପାଇଁ ଯେହୁ ଅନ୍ନ ସିଦ୍ଧକରେ
ମୂଢ଼ ରୂପେ ପରିଚିତ ହୁଏ ସେ ଲୋକରେ
ମୈଥୁନ ଯାହାର ନୋହି ଇନ୍ଦ୍ରିୟ ତୋଷକ
କାରଣ ହୁଅଇ ମାତ୍ର ପୁତ୍ର ଉତ୍ପାଦକ
ଅନ୍ତେ ହୁଅଇ ତାହାର ନିଶ୍ଚେ ସ୍ୱର୍ଗ ଲାଭ
ସମସ୍ତଙ୍କୁ ଏହି ଧର୍ମ ନୁହଇ ସୁଲଭ
ସୁବର୍ଣ୍ଣ ଯେପରି ଅଟେ ଧାତୁଙ୍କେ ଉତ୍ତମ
ସବୁଧର୍ମ ପରେ ତଥା ଏହି ଶ୍ରେଷ୍ଠ ଧର୍ମ
ସମସ୍ତ ପ୍ରାଣୀଙ୍କ ହିତ ଶାସ୍ତ୍ର ଯେ ପଢ଼ଇ
ଅମୃତ ତାହାକୁ ଭୀଷ୍ମ ଅବଶ୍ୟ ମିଳଇ
ଅଟଇ ଏହାସମସ୍ତ ଧର୍ମଙ୍କରେ ସାର
ସୁନସଖଙ୍କୁ କହିଲେ ତୋଷେ ମୁନିବର
ତଦପରେ ସର୍ବେ ସେହି ସର ତୀରେ ବସି
ବିସ୍ତୀର୍ଣ୍ଣ କମଳେ ପୂର୍ଣ୍ଣ ଦେଖି ହେଲେତୋଷି

କାଢିଲେ ସର ମଧ୍ୟରୁ ଉତ୍ତମ ମୃଣାଳ
ରଖି କୂଳେ ତା ପାରୁଶେ ବସି ତତକାଳ
ଉଦକ କ୍ରୀୟା ଆଚରି ପୂତ ସର ଜଳେ
ତଦପରେ ଏକତ୍ରିତ ହୋଇଲେ ସକଳେ
ଅଦୃଶ୍ୟ ହୋଇଲା ଯେବେ ସେକ୍ଷଣି ମୃଣାଳ
ଋଷିଙ୍କୁ ପୁଛିଲେ କିବା କାରଣ ଏହାର
କହିଲେ ମହର୍ଷି ଶୁଣ ମୋର କହିବାର
ବୁଲୁଥାନ୍ତି ବହୁ ଆତ୍ମା ହୋଇ କ୍ଷୁଧାତୁର
ପାପକର୍ମ ହେତୁ କ୍ରୂର ଅଟନ୍ତି ସେମାନେ
ଆହାର ନିମନ୍ତେ ଭ୍ରମୁଥାନ୍ତି ନାନାସ୍ଥାନେ
ମୃଣାଳ ତାହାଙ୍କ ଦ୍ୱାରା ହେଲା ଅପହୃତ
ଏଥିପାଇଁ ଭ୍ରମ କିପାଁ ହୁଏ ତୁମ ଚିତ୍ତ
ଚୋରୀ ପ୍ରସଙ୍ଗରେ ଜଣେ ଆନେ ଶଙ୍କା କରେ
ଚଳି ଆସୁଅଛି ଏହା ଦେଖୁଛ ଲୋକରେ
ଶପଥ କଲେ ସମସ୍ତେ ହୋଇ କୁହା କୁହି
ଶୁଣ ଭୀଷ୍ମ ଏ ବିପ୍ରଙ୍କ ଅଭ୍ୟାସ ଅଟଇ
କହିଲେ ମହର୍ଷି ତୁମେ ଶୁଣ ସୁନସଖ
ନିଯେ ନିଜ ମୃଣାଳର ଚୋର ମନେରଖ
ତାପରେ କହିଲେ ସୁନସଖ ଦ୍ୱିଜେ ଶୁଣ
ମୋ ଦ୍ୱାରା ମୃଣାଳ ସବୁହେଲା ଅନ୍ତର୍ଦ୍ଧାନ
ଧର୍ମ ଶୁଣିବା ଇଚ୍ଛାରେ ଆସିଥିଲି ଏଥି
ମୋର ନାମ ଇନ୍ଦ୍ର ମୁହିଁ ଅଟେ ଶଚୀପତି
ଶୁଣ ସର୍ବ ଋଷି ମୋର କହିବା ବଚନ
ସମସ୍ତେ ଅକ୍ଷୟ ଲୋକ କରିଛ ଅର୍ଜନ
ଦେଖ ଏବେ ଦେବଯାନ ଏଥି ଉପଗତ
ହୋଇଯାଅ ସର୍ବଋଷି ଏ ଯାନରେ ସ୍ଥିତ
ଦେବଲୋକ ପ୍ରାପ୍ତହେବ ତୁମ୍ଭଙ୍କୁ ଏ କ୍ଷଣି
କହିଲେ ତେବେ ଋଷିଏ ତାଙ୍କୁ ଇନ୍ଦ୍ର ଜାଣି
ଯେ କେହି ହେଉ ଯେବେ ସେ ଏସ୍ଥାନେ ଆସିବ
ମଧ୍ୟମ ପୁଷ୍କର କ୍ଷେତ୍ରେ ସ୍ନାନ ଆଚରିବ
ତିନିରାତ୍ରୀ ଉପବାସ କରିବ ଏଠାରେ
ଶଙ୍କା ନ ରହିବ ତାର ଅଭିଷ୍ଟ ସିଦ୍ଧିରେ
କହି ଏହା ଋଷିଗଣ ଇନ୍ଦ୍ରଙ୍କ ସଙ୍ଗରେ
ଗଲେ ଅତି ଆନନ୍ଦରେ ଅମର ନଗରେ
ସ୍ୱର୍ଗ ଗମନରେ ଲୋଭ ନଥିଲା ତାଙ୍କର
ତେଣୁ ଦେବଲୋକେ ଯାଇ ଲଭିଲେ ଆଦର
ନିର୍ଲୋଭ ପଣରୁ ପ୍ରାପ୍ତ ହେଲା ଦେବଲୋକ
ମନେରଖ ଭଲେ ଏହା କୁରୁଙ୍କ ତିଳକ
ଏ ଅଟେ ଶୁଭ ଚରିତ୍ର ଋଷିମାନଙ୍କର
ପ୍ରତ୍ୟେହ ଶୁଣଇ ଅବା ପଢ଼ଇ ଯେ ନର
ସମସ୍ତ ପାପରୁ ସେହି ତରଇ ନିଶ୍ଚୟ
ସ୍ୱର୍ଗଲୋକେ ସ୍ଥାନ ତାର ହୁଅଇ ଅକ୍ଷୟ
ଶେଷହେଲା ଏହିଠାରେ ଅଧ୍ୟାୟ ଦ୍ୱାଦଶ
ପାଠକେ କ୍ଷମାକରି ଗୋପିନାଥ ଦୋଷ
ଜାନକୀହୃଦ ନିବାସ ରାଜ ମୋ ହୃଦରେ
ନିରନ୍ତରଥାଅ ମୋର ନୟନ ପଥରେ
ମୋର ରସନା କରୁ ତିନି ତୁମ ଗୁଣ ଗାନ
ମୋର ହୃଦ ସଦାହେଉ ତୁମ ବାସସ୍ଥାନ
ଅନ୍ତକାଳେ ହୁଅ ତୁମେ ମୋନେତ୍ର ଗୋଚର
ଏତିକି ମାତ୍ର ପ୍ରାର୍ଥନା ତୁମ୍ଭଠାରେ ମୋର

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ
ବୃତ୍ର ବଧ, ଅଗସ୍ତି ତଥା
ଦମ ମହାତ୍ମ୍ୟ ବର୍ଣ୍ଣନୋ ନାମ
ଦ୍ୱାଦଶୋଽଧ୍ୟାୟଃ



## ତ୍ରୟୋଦଶ ଅଧ୍ୟାୟ

### ଇନ୍ଦ୍ର ଶାପରେ ଅଗ୍ନି ମାରୁତଙ୍କ ଜନ୍ମ ବର୍ଣ୍ଣନା

ପୁଲସ୍ତ୍ୟଙ୍କୁ ସବିନୟେ ଗଙ୍ଗାଙ୍କ ତନୟ
କହିଲେ ହେ ଋଷି ତୁମେ ଅଟ ଜ୍ଞାନମୟ
ସୁରଙ୍କେ ପୂଜିତ ତୁମେ ଅଟ ଋଷିବର
ବ୍ରହ୍ମାଙ୍କ ସଦୃଶ ତୁମେ ପୂଜ୍ୟ ଜଗତର
ପଚାରିବି ଯାହା କହ ମୋରେ ଦୟାବହି
ତୁମ୍ଭ ବିନା ତାହା ଆଉ ପାରିବ କେ କହି
ସପ୍ତଲୋକ କଥା ଲେଖା ହୋଇଛି ଶାସ୍ତ୍ରରେ
ଭୂଲୋକ ରହିଛି ଋଷି ସର୍ବ ପ୍ରଥମରେ
ତଦପରେ ଭୂବ ଲୋକ ପରେ ସ୍ୱର୍ଗଲୋକ
ମହାଜନ ତପ ପରେ ଅଛି ସତ୍ୟଲୋକ
ଏହି ସପ୍ତ ଲୋକ ଖ୍ୟାତ ଦେବଲୋକ ରୂପେ
ଏହାଙ୍କ କେ ଅଧିପତି ଚଳଣୀ କି ରୂପେ

ଏ ଲୋକଙ୍କ ଶୁଭ ଆୟୁ ଆରୋଗ୍ୟ କିପରି
ବିପୁଳ ଐଶ୍ୱର୍ଯ୍ୟ କଥା କହନ୍ତୁ ବିସ୍ତାରି
ଭୀଷ୍ମଙ୍କର ଏହି ପ୍ରଶ୍ନ ଶୁଣି ଋଷି ସାଇଁ
କହିଲେ ଶାନ୍ତନୁ ସୁତେ ପାଖରେ ବସାଇ
ଶୁଣ ଭୀଷ୍ମ ଏହା ଅଟେ ଅତି ପୁରାତନ
ସ୍ୱର୍ଗରାଜ୍ୟ ଅଧିପତି ଶ୍ରୀପାକଶାସନ
ମାରୁତ ଅଗ୍ନି ଦୁହିଁଙ୍କୁ ପାଶକୁ ଡକାଇ
ଆଦେଶ ଦେଲେ ପୃଥିବୀ ପୃଷ୍ଠେ ଯିବାପାଇଁ
ଦେବଶତ୍ରୁ ରାକ୍ଷସଙ୍କ ବିନାଶ କାରଣ
ଏ ଆଦେଶ ଦେଇଥିଲେ ଶଚୀଙ୍କ ରମଣ
ଇନ୍ଦ୍ରଙ୍କ ଆଜ୍ଞାରେ ଅଗ୍ନି ଧରାକୁ ଆସିଲେ
ହଜାର ହଜାର ଦୈତ୍ୟେ ପୋଡ଼ି ପକାଇଲେ
ସେ କାଳେ ଯେଉଁ ଅସୁରେ ଥିଲେ ପୃଥିବୀରେ
ଯେଉଁମାନେ ଥିଲେ ଶ୍ରେଷ୍ଠ ତାହାଙ୍କ ମଧ୍ୟରେ
କହେ ତାଙ୍କ ନାମ ଶୁଣ ଶାନ୍ତନୁ ନନ୍ଦନ
କମଳାକ୍ଷ କାଳଦଣ୍ଡ ପୁଣି ବିରୋଚନ
ତାରକ ସଂହ୍ଲାଦ ପରାବସୁ ଆଦିକରି
ବଳରେ ସର୍ବେ ଅଟନ୍ତି ମହାକାଳପରି
ଆଶ୍ରିଥାନ୍ତି ଏ ସମସ୍ତେ ବରୁଣ ଆଳୟ
ବହୁତ ପୂର୍ବରୁ ଜାଣ ଶାନ୍ତନୁ ତନୟ
ଆଶକ୍ତ ଯେଣୁ ଏମାନେ ଥିଲେ ଅତିଶୟ
ମାରୁତ ଅଗ୍ନି ତାହାଙ୍କୁ ବିଚାରିଲେ ହେୟ
ସେହିକାଳୁ ସେହି ଦୁଷ୍ଟ ଦାନବ ନିକର
ବେଳେ ବେଳେ ସମୁଦ୍ରରୁ ହୋଇଣ ବାହାର
ଉରଗ ଦେବତା ନର ସହ ମୁନିଗଣେ
ରତ ହେଲେ ସଦାପୀଡ଼ା ପ୍ରଦାନ କାରଣେ
ପୀଡ଼ା ଦେଇ ଯାଇ ପୁଣି ସମୁଦ୍ର ଭିତରେ
ପଶି ରହିଥାନ୍ତି ଭୀଷ୍ମ ଅତି ନିର୍ଭୟରେ
ସେମାନେ ଅଟନ୍ତି ଭୀଷ୍ମ ଦ୍ୱାଦଶ ଅସୁର
ଅତି ଭୀଷଣ ଦର୍ଶନ ସର୍ବେ ମହାବୀର
ସହସ୍ର ଯୁଗ ପର୍ଯ୍ୟନ୍ତ ଜଳଦୁର୍ଗେ ରହି
ତିନିଜଗତକୁ ପୀଡ଼ା ଦେଲେ କୁରୁସାଇଁ
ସ୍ୱର୍ଗ ନରପତି ଇନ୍ଦ୍ର ସେ କଥା ଜାଣିଲେ
ଅଗ୍ନି ସୁରତଙ୍କୁ ପୁଣି ଭବେ ପଠାଇଲେ
କହିଥିଲେ ଦୁହିଁଙ୍କ ଶଚୀଙ୍କ ରମଣ
ସମୁଦ୍ରକୁ ଯାଇ ଆଗ କରିବ ଶୋଷଣ

ବରୁଣ ଯେଣୁ ଶତ୍ରୁଙ୍କୁ ଦେଉଛି ଆଶ୍ରୟ
ମୋ ବୋଲରେ ପ୍ରଥମରେ ତାକୁ କର କ୍ଷୟ
ଦେବଙ୍କର ଶତ୍ରୁ ରକ୍ଷଗଣ ନାଶ ପାଇଁ
ଏହି ଆଜ୍ଞା ଦେଇଥିଲେ କ୍ରୋଧେ ସୁରସାଇଁ
ସେ ଦୁହେଁ ଇନ୍ଦ୍ରଙ୍କ ମୁଖୁ ଶୁଣି ଏହି ଗୀର
କର ଯୋଡି ତାଙ୍କୁ ତେବେ କିହିଲେ ଉତ୍ତର
ଆହେ ଇନ୍ଦ୍ର ତୁମେ ଅଟ ନୃପ ଦେବଙ୍କର
ବଧିଅଛ ତୁମ୍ଭେ ମୟ-ସମ୍ବର ଅସୁର
ବିନାଶ କରିବ ଯେବେ ସାଗରେ ଏପରି
ଅତି ଅଧର୍ମରେ ଭାଗୀ ହେବ ଶମ୍ବରାରି
ବିନାଶ କରିବ ଯେବେ ଏପରି ସାଗର
ତହିଁଥିବା ଜୀବଯାକ ଯିବେ ଯମପୁର
କୋଟି କୋଟି ଜନ୍ତୁଙ୍କର କ୍ଷୟ ଯେବେ ହେବ
କହ ପ୍ରଭୁ ସେହି ପାପ କାହାକୁ ଲାଗିବ
କହୁଛୁ ତେଣୁ ସେ କଥା ଭାବି ମଘବାନ
ଆନ ଉପାୟ ଯା ଥିବ କର ଉଦ୍ଭାବନ
ଗ୍ରହଣ କରିଣ ପରେ ଆମ୍ଭେ ସେ ଉପାୟ
ସମୁଦ୍ରେ ଥିବା ରକ୍ଷଙ୍କୁ କରିଦେବ କ୍ଷୟ
କହୁଛୁ ତେଣୁ ଶ୍ରବଣ କର ସୁର ଶ୍ରେଷ୍ଠ
ଯୋଜନେ ସମୁଦ୍ରେ କୋଟି ଜୀବ ହେବେନଷ୍ଟ
କେତେ ଯୋଜନ ସମୁଦ୍ର ପରିମାଣ ହୀର୍ନ
କହ କିପରି ବିନାଶ ହେବ ମଘବାନ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଶୁଣି ତାହା ଇନ୍ଦ୍ର ହେଲେ କୋଧେ ଥରହର
ରକ୍ତବର୍ଣ୍ଣ ହେଲା ତାଙ୍କ ସହସ୍ର ନୟନ
ସେ ଦୁହିଁଙ୍କ ଠାରୁ ଶୁଣି ଏପରି ବଚନ
ତାପରେ କ୍ରୋଧେ ମଘବା କହିଲେ ଏ ଗୀର
ଦେବଙ୍କେ ଶ୍ରେଷ୍ଠ ମାରୁତ ପୁଣି ବୈଶ୍ୱାନର
ସୁରଠାରେ ଧର୍ମାଧର୍ମ ଯୁକତ ହୁଅଇ
ଏହିକଥା କାନ ମୋର କେବେ ଶୁଣିନାହିଁ
ଯେଣୁ ତୁମ୍ଭେ ଦୁହେଁ ଶ୍ରେଷ୍ଠ ଅଟ ସୁରଙ୍କରେ
ସଂଭବିଲା ତେଣୁ ଏହି କଥା ତୁମ୍ଭଠାରେ
ତୁମେ ଦୁହେଁ ଏକା ଏହା ଜାଣିଅଛି ମୁହିଁ
ହୋଇଛ ପୁଷ୍ଟ ମୁନିଙ୍କ ଯାଗ ଭାଗ ପାଇ
ମୁନିଙ୍କ ବ୍ରତରେ ତୁମ୍ଭେ ହୋଇଣ ସହାୟ
କରିଅଛ ଆହରଣ ଏ ଜ୍ଞାନ ନିଚୟ

ମୁଁ ଯାହା କହୁଛି ବିଭାବସୁ ଏବେ ଶୁଣ
ତଦପରେ ଯତ୍ନେ ତାକୁ କରିବ ମନନ
ଧର୍ମ ଅର୍ଥ ପୁଣି ଶାସ୍ତ୍ର ବିହୀନ ଯୋନିରେ
ଜାଣ ଏ ଶରୀର ମଧ୍ୟ ସ୍ଥିତ ହୋଇପାରେ
ଏଣୁ ମନୁଷ୍ୟ ଯୋନିରେ ମୁନି ରୂପ ବହି
ମାରୁତଙ୍କ ସହ ତୁମେ ଜନ୍ମହୁଅ ଯାଇ
ମନୁଷ୍ୟ ରୂପରେ ତୁମ୍ଭେ ଥିବ ଭୂମଣ୍ଡଳେ
ଗଣ୍ଡୂଷେ ଶୋଷିଦେବ ଏ ସମୁଦ୍ରଜଳେ
ସେହିଦିନ ଯାଏ ତୁମ୍ଭେ ମନୁଷ୍ୟ ହୋଇବ
ତଦପରେ ପୁଣି ନିଜ ଦେବତ୍ୱ ପାଇବ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ବିହିଲେ ଦୁହିଁଙ୍କୁ ଏହି ଶାପ ମଘବାନ
ଇନ୍ଦ୍ରଙ୍କର ଶାପ ପାଇ ସେ ଦୁଇ ଅମରେ
ନର ରୂପେ ଅବତରିଥିଲେ ପୃଥିବୀରେ
ଦେହ ଧରିଥିଲେ ଏଣୁ ଏହି ଦୁଇ ସୁର
ଜାଣତ କୁମ୍ଭରୁ ଅଟେ ଜନ୍ମ ତାହାଙ୍କର
ମିତ୍ର ବରୁଣ ବୀର୍ଯ୍ୟରେ ବଶିଷ୍ଠ ଆତ୍ମଜ
ତପସ୍ୟାଚରଣ କଲେଭୀଷ୍ମ ମନେ ହେଜ
ସେହିତପ ବଳେ ମହାଋଷି ସେ ହୋଇଲେ
ଅଗସ୍ତ୍ୟ ବୋଲିଣ ନାମ ଜଗତେ ବହିଲେ
ପରମଶ୍ରେଷ୍ଠ ଅଗସ୍ତି ମୁନି ମଣ୍ଡଳରେ
ମୋ ଭାଇ ସେ ଜନ୍ମ ତାଙ୍କ ବଶିଷ୍ଠ ବୀର୍ଯ୍ୟରେ
ଚକିତ ହୋଇଣ ଭୀଷ୍ମ ତା ଶୁଣି କହିଲେ
କିପରି ମିତ୍ର ବରୁଣ ଦୁଇ ପିତା ହେଲେ
କୁମ୍ଭରୁ ପୁଣି ସେ ଦୁହେଁ କିପରି ଜନ୍ମିଲେ
ଦୟାବହି ତାହା ମୋତେ କହ ମୁନିଭଲେ
ଭୀଷ୍ମଙ୍କ ପ୍ରଶ୍ନେ କହିଲେ ଋଷିକୁଳ ଈଶ
ପ୍ରାଚୀନ ସେ କଥା ଏବେ କରିବି ପ୍ରକାଶ
ପୂର୍ବେ ପୁରାଣପୁରୁଷ ପ୍ରଭୁ ଭଗବାନ
କରିବାକୁ କିଛି ଦେବ କାର୍ଯ୍ୟ ସମାଧାନ
ଗନ୍ଧମାର୍ଦ୍ଦନ ଯା ନାମ ସେହି ମହୀଧରେ
ଜନ୍ମିଥିଲେ ଧର୍ମଙ୍କର ତନୟ ରୂପରେ
ଜନ୍ମହୋଇ ପରେ କଲେ ତପ ଆଚରଣ
ଶୁଣ ଭୀଷ୍ମ ଇନ୍ଦ୍ରଙ୍କର ଅଛି ଏହି ଗୁଣ
ତପସ୍ୟା କେ କଲେ ତାଙ୍କ ଦେହସହେନାହିଁ
ଭାବନ୍ତି ସେ ତା ତପସ୍ୟା ଇନ୍ଦ୍ର ପଦ ପାଇଁ
ତେଣୁ ଭୟଭୀତ ହୋଇ ଦେବ ଶଚୀପତି
ତପସ୍ୟା ବିଘ୍ନ କରଣେ ବଳାଇଲେ ମତି
ସୁନ୍ଦରୀ ସ୍ୱର୍ଗଅପ୍‌ସରୀ ତହିଁ ପଠାଇଲେ
ମଦନ ବସନ୍ତ ମଧ୍ୟ ସଙ୍ଗତରେ ଥିଲେ
ନାଚିଲେ ଅପ୍‌ସରା ଅଙ୍ଗ ଭଙ୍ଗୀକୁ ଦେଖାଇ
ବୀଣାଜିଣା ସ୍ୱରେ ଆକର୍ଷଣୀ ଗୀତଗାଇ
ମାଧବ ତାର ପ୍ରଭାବ ତହିଁ ଦେଖାଇଲା
ଅଋତୁରେ ଦ୍ରୁମଲତା କୁସୁମିତ କଲା
ବହିଲା ମଳୟ ଗୀତ ଗାଇଲେ କୋକିଳ
ବଢ଼ିଗଲା ଦେଖି ତାହା କନ୍ଦର୍ପର ବଳ
ପଞ୍ଚଶର କଲା ତେବେ କନ୍ଦର୍ପ ସଂଧାନ
ତଥାପି ତପସ୍ୱୀଙ୍କର ନଭାଙ୍ଗିଲା ଧ୍ୟାନ
ଗୀତବାଦ୍ୟ ନାଚସବୁ ଗଲା ବୃଥାହୋଇ
ସେହି ତପସ୍ୱୀଙ୍କୁ ଜିଣି ନ ପାରିଲେ କେହି
ହାରିଯାଇ ସର୍ବେ ଅତି ବିଷାଦିତ ହେଲେ
ଜାଣି ମନେ ମନେ ଋଷି ବହୁତ ହସିଲେ
ତଦପରେ ଶୁଣ ଭୀଷ୍ମ ଯେପରି ହୋଇଲା
ନାରାୟଣ ଉରୁଦେଶୁ ନାରୀଏ ଜନ୍ମିଲା
ଅତିସୁନ୍ଦରୀ ସେ ନାରୀ ତାହାପରି କେହି
ମନେରଖ ଭୀଷ୍ମ ତିନିପୁରେ ମଧ୍ୟ ନାହିଁ
ଗ୍ଟହିଁଲେ ସେ ତିନିପୁର ହୋଇବେ ମୋହିତ
ନିଜ ରୂପ ଲାବଣ୍ୟରେ ଶାନ୍ତନୁଙ୍କ ସୁତ
ଲୋକୋତ୍ତର ସଉନ୍ଦର୍ଯ୍ୟ ଦେଖି ସେ ବାମାର
ମୋହଜାତ ହେଲା ତାକୁ ଦେଖି ସୁରଙ୍କର
କନ୍ଦର୍ପ ବସନ୍ତ ତାକୁ କରି ଦରଶନ
ବିମୋହିତ ହେଲେ ଶୁଣ ଶାନ୍ତନୁ ନନ୍ଦନ
କାମ ମଧୁ ଅପ୍‌ସରାଙ୍କୁ ତେବେ ନରାୟଣ
ପାଶକୁ ଡାକି କହିଲେ ଏପରି ବଚନ
ଉରୁରୁ ଜାତ ହୋଇଲା ଏହି ଯେଉଁ ନାରୀ
ଉର୍ବଶୀ ନାମ ଏହାର ଥାଅ ହେତୁକରି
ପ୍ରସିଦ୍ଧ ହେବ ଲୋକରେ ଏ ସେହି ନାମରେ
କହିଥିଲେ ଭୀଷ୍ମ ହରି ଏହା ଶ୍ରୀମୁଖରେ
ତାକୁ ଦେଖି ପ୍ରଭାକର କାମେ ହୋଇ ଘାରି
ଉର୍ବଶୀକୁ ପାଶେ ଡାକି କହିଲେ ଏପରି
ତୋଠାରେ ରମଣଇଚ୍ଛା ହୋଇଛି ମୋହର
ସେ କଥାରେ ରାଜିହୋଇ କହେ ନାରୀବର
ତୁମ୍ଭର ଇଚ୍ଛା ଯଦ୍ୟପି ହେଲା ରମଣରେ
କରିବି ପୂରଣ କିଛି ନଭାବ ମନରେ

ଯାଉଥିଲା ପଦ୍ମନେତ୍ରୀ ସୂର୍ଯ୍ୟଙ୍କ ପାଶରେ
ବରୁଣ ଦେବତା ତାକୁ ଦେଖିଲେ ବାଟରେ
ରୂପେ ମୋହି ହୋଇ ତାକୁ କରି ସଂବୋଧନ
କହିଲେ ମୋ ପାଶେ ଆସ ଯୁବତୀ ରତନ
ଉର୍ବଶୀ କହିଲା ତେବେ ବରୁଣେ ଏପରି
ସବିତା ଦେବଙ୍କୁ ଆଗୁଁ ମୁଁ ନେଇଛି ବରି
ତେଣୁ କହୁଛି ଶୁଣନ୍ତୁ ମୋଦେ ସୁରବର
ମୋହର ପତି ଅଟନ୍ତି ପ୍ରଭୁ ପ୍ରଭାକର
କହିଲେ ବରୁଣ ଶୁଣି ସୁନ୍ଦରୀର ବାଣୀ
ମୋଠି ରଖି ଚିତ୍ତ ଚଳିଯାଅ ତୁ ତରୁଣୀ
ସେହିପରି ହେଉ କହି ସେ ନବ ନବୀନା
ଚଳିଯାନ୍ତେ ମିତ୍ର ହୋଇ ଅତି କୋପମନା
ଦେଲେ ଶାପ ନରଲୋକେ ଯାଇ ଏହିକ୍ଷଣି
ସେ ସୋମ ସୁତା ସୁତ ହୁଅ ହେ ଚରୁଇକ୍ଷଣୀ
ମିଥ୍ୟା ଧର୍ମ ଆଚରଣ ଯେଣୁ ଅଟେ ତୋର
ଏବେ ଯାଇ ତହିଁ ତାଙ୍କ ପାଦସେବା କର
ବାଟେ ଯାଉ ବାଳୀ ଯେଣୁ ସଂପାଡିତ ହେଲା
ମିତ୍ର-ବରୁଣଙ୍କଠାରୁ ବଞ୍ଚିତା ହୋଇଲା
ବାଳାପାଇଁ ଦୁହେଁ ଅତି ଆତୁରରେ ଥିଲେ
ଦୁହେଁ ଏକ ସମୟରେ ବୀର୍ଯ୍ୟପାତ କଲେ
ଜଳକୁମ୍ଭ ଥିଲା-ଦେଖି ସେ ଦୁଇ ଅମର
ପକାଇଲେ ତହିଁ ବୀର୍ଯ୍ୟ ଶାନ୍ତନୁ କୁମର
ସେ କୁମ୍ଭରୁ ଜାତହେଲେ ଯେ ଦୁଇ ସଂତାନ
ଜଗତର ଶ୍ରେଷ୍ଠ ଋଷି ସେହି ଦୁଇ ଜଣ
ନିମି ନାମେ ତେବେ ଥିଲେ ଜଣେ ମହୀପତି
ସ୍ତ୍ରୀସଙ୍ଗେ ଦ୍ୟୁତ କ୍ରୀଡ଼ାରେ ଅତି ତାଙ୍କ ମତି
ଏ ମଧ୍ୟରେ ବ୍ରହ୍ମାପୁତ୍ର ମହର୍ଷି ବଶିଷ୍ଠ
କାଳବଳେ ତହିଁଭୀଷ୍ମ ହେଲେ ଉପଗତ
ନାରୀସଙ୍ଗେ ନୃପ ଯେଣୁ କ୍ରୀଡ଼ାରତ ଥିଲେ
ଉପଯୁକ୍ତ ସତକାର ଋଷିଙ୍କୁ ନକଲେ
ପୂଜା ନପାଇ ନୃପତି ଠାରୁ ମୁନିବର
ଶାପ ଦେଲେ ଶୁଣ ଭୀଷ୍ମ ହୋଇ କ୍ରୋଧଭର
ନୃପକୁ ଶଂପି କହିଲେ ବ୍ରହ୍ମାଙ୍କ ତନୟ
ମୋଶାପ ଫଳେ ତୁ ନୃପ ଦେହ ହୀନ ହୁଅ
ତାହା ଶୁଣି ନୃପ ମଧ୍ୟ ଅତି କ୍ରୋଧ ହେଲା
ବଶିଷ୍ଠ ମୁନିଙ୍କୁ ସେହିପରି ଶାପ ଦେଲା ।

ଶାପ ଫଳେ ବେନି ଜଣେ ଅଦେହ ହୋଇଲେ
ତେଜୋମୟ ରୂପେ ପିତାମହ ପାଶେ ଗଲେ
କହିଲେ ଉଭୟେ ତାଙ୍କୁ ଶାପର କାରଣ
ଶାପ ନାଶ ପାଇଁ ମଧ୍ୟ କଲେ ନିବେଦନ
ପିତାମହ ଉଭୟଙ୍କ ବଚନ ଶୁଣିଲେ
ତାପରେ ହେ ଭୀଷ୍ମ ଏହି ଆଦେଶ ବିହିଲେ
ଠାବ ଦେଲେ ନିମି ନୃପତିଙ୍କୁ ନୟନରେ
ଖ୍ୟାତ ସେ ଲୋକ ବିଶ୍ରାମେ ନିମେଷ ରୂପରେ
ପୂର୍ବୁ ଥିବା ଜଳକୁମ୍ଭ ମଧ୍ୟରେ ବଶିଷ୍ଠ
ତେଜୋରୂପେ ଆହେଭୀଷ୍ମ ହୋଇଲେ ପ୍ରବିଷ୍ଟ
ସେ କୁମ୍ଭରୁ ତଦପରେ ସୁତ ଜନ୍ମହେଲା
ଜନମରୁ ଚତୁର୍ବାହୁ ସେହୁ ହୋଇଥିଲା
ହାତେ ଥିଲା କମଣ୍ଡଳୁ ପଇତା କାନ୍ଧରେ
ନିନ୍ଦା କରୁଥିଲା ଦିନକରେ ସେ କାନ୍ତିରେ
ଶାନ୍ତିର ପ୍ରତୀକ ଥିଲା ସ୍ୱରୂପ ତାଙ୍କର
ଋଷିଶ୍ରେଷ୍ଠ ଅଗସ୍ତ୍ୟ ସେ ଭୀଷ୍ମ ମନେକର
ମଳୟ ପର୍ବତେ ବୈଖାନସ ବିଧାନରେ
ଦୁଷ୍କର ତପସ୍ୟା କଲା ବିପ୍ରଙ୍କ ମଧରେ
ତଦପରେ ଶୁଣ ଭୀଷ୍ମ କେତେ କାଳ ଗଲା
ତାରକାସୁର ଉତ୍ପାତ ଜଗତେ ବ୍ୟାପିଲା
ଜଗତର ଉତ୍ପୀଡ଼ନ ମହର୍ଷି ଜାଣିଲେ
ଏକ ଗଣ୍ଡୁଷରେ ସମୁଦ୍ରକୁ ପାନ କଲେ
ସଂତୁଷ୍ଟ ହୋଇଣ ତେବେ ବ୍ରହ୍ମା ହରିହର
ଆସିଲେ ତାହାଙ୍କ ପାଶେ ଦେବାପାଇଁ ବର
କହିଲେ ହେ ଋଷି ତୁମ୍ଭ ଇଚ୍ଛା ଯାହା ହେବ
ସେହି ବର ତୁମ୍ଭେ ଆମ୍ଭଠାରୁ ମାଗି ନେବ
ଶୁଣି ଅଗସ୍ତ୍ୟ ମହର୍ଷି ବାଣୀ ଦେବଙ୍କର
କହିଲେ ହେ ପ୍ରଭୁ ଯେବେ ଦେବ ମୋତେ ବର
ତେବେ କହେ ବୈମାନିକ ରୂପରେ ରହିବି
ପଚିଶି କୋଟିରେ ବ୍ରହ୍ମା ହଜାରେ ଦେଖିବି
ଦକ୍ଷିଣାକ ସେ ଉଦୟ ହେଲେ ମୋ ବିମାନ
ଯେଉଁମାନେ ତେବେ ତାକୁ କରିବେ ଦର୍ଶନ
ଭକ୍ତିଭରେ ପୂଜା ଯେବେ କରିବେ ବିଧିରେ
ଅଧିପତି ସେ ହୋଇବେ ସପତ ଲୋକରେ
ପୁଷ୍କର ତୀର୍ଥରେ ଗାନକଲେ ମୋର ନାମ
ପରମ ପୁଣ୍ୟରେ ତାହା ହୋଇବ ଗଣନ

ଯେ କେହି ନାମକୁ ମୋର ଯଦ୍ୟପି ଆଶ୍ରିବ
ସମସ୍ତ ପାପ ତାହାର ଖଣ୍ଡନ ହୋଇବ
ପିଣ୍ଡଦାନ କରିବ ଯେ ପୁଷ୍କର ତୀର୍ଥରେ
ତା ପିତୃଗଣ ରହିବେ ଦେବଙ୍କ ଲୋକରେ
ମୁହି ଥିବା ଯାଏଁ ସ୍ୱର୍ଗେ ରହିବେ ସେମାନେ
ଏହି ବର ମାଗେ ପ୍ରଭୁ ଦିଅ ତୋଷମନେ
ଅଗସ୍ତିଙ୍କ ବାକ୍ୟ ଶୁଣି ବ୍ରହ୍ମା ବିଷ୍ଣୁହର
ତଥାସ୍ତୁ କହିଣ ଗଲେ ନଜ ନିଜ ପୁର
ତଦପରେ ସବୁ ସୁରେ ସ୍ୱର୍ଗପୁରେ ଗଲେ
ତପ୍ରେ ଭୀଷ୍ମଙ୍କୁ ଏହା ପୁଲସ୍ତ୍ୟ କହିଲେ
ଅଗସ୍ତ୍ୟଙ୍କୁ ପ୍ରତିଦିନ ଅର୍ଘ୍ୟ ଯେ ଦିଅଇ
ମହାପୁଣ୍ୟବନ୍ତ ଭବେ ସେ ଜନ ଅଟଇ
ପ୍ରତ୍ୟହ ସ୍ମରଣ କଲେ ଅଗସ୍ତ୍ୟଙ୍କ ନାମ
ସମସ୍ତ ସାଧନା ତାର ହୁଅଇ ଉତ୍ତମ
ଅଗସ୍ତ୍ୟ ଋଷିଙ୍କୁ ଅର୍ଘ ଯେ ବିପ୍ର ନ ଦିଏ
ବିଶ୍ୱେ ବ୍ରାହ୍ମଣ ରୂପରେ ଗଣନା ସେ ନୁହେଁ
ତ୍ରୟୋଦଶ ଅଧ୍ୟା ଏଥି ହେଲା ସମାପନ
କହେ ଗୋପିନାଥ କ୍ଷମା କର ସୁଧୀଜନ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ ଇନ୍ଦ୍ରଶାପେ
ଅଗ୍ନି ମାରୁତ ଜନ୍ମ ବର୍ଣ୍ଣନୋ ନାମ
ତ୍ରୟୋଦଶୋଽଧ୍ୟାୟଃ

❑

## ଚତୁର୍ଦ୍ଦଶ ଅଧ୍ୟାୟ

### ବାମନବତାର ବର୍ଣ୍ଣନ

ପ୍ରଶ୍ନକଲେ ପୁଲସ୍ତ୍ୟଙ୍କୁ ଶାନ୍ତନୁ ନନ୍ଦନ
କହନ୍ତୁ ହେ ମୁନୀଶ୍ରେଷ୍ଠ ହୋଇ ସୁପ୍ରସନ୍ନ
କି କାରଣ ଥିଲା ବିଷ୍ଣୁ ବାମନ ହୋଇଲେ
କି କଲା ବଳୀ ତାହାକୁ ପାତଳେ ଚପିଲେ
ପୁଲସ୍ତ୍ୟ ମହର୍ଷି ପ୍ରଶ୍ନ ଶୁଣି ଭୀଷ୍ମଙ୍କର
କହିଲେ ପ୍ରଶ୍ନ ତୁମର ଅତ୍ୟନ୍ତ ସୁନ୍ଦର
କହିବି ସେ କଥା ଶୁଣ ହୋଇ ସାବଧାନ
ଅତି ପବିତ୍ର ତା ପୁଣି ଅତ୍ୟନ୍ତ ପ୍ରାଚୀନ
ପୂର୍ବ ପଦ ନ୍ୟାସ କଲେ ଶ୍ରୀହରି କିପରି
କହିଛି ତାହା ହେ ଭୀଷ୍ମ ଶୁଣ ଭଲକରି

ସତ୍ୟଯୁଗେ ଦେବକାର୍ଯ୍ୟ ସମାଧାନ ପାଇଁ
ଯଜ୍ଞ ପର୍ବତରେ ପହଞ୍ଚିଲେ ରମାସାଇଁ
ପଥରରେ ଦୁର୍ଗ କରି ରହି ତା ମଧ୍ୟର
ତପସ୍ୟା ରଚିଲେ ଯାହା ଭବେ ତା ଦୁଷ୍କର
କାରଣ ତାହାର ଶୁଣ ଭୀଷ୍ମ ମହାବଳୀ
ହୋଇଥିଲେ ରକ୍ଷେ ତେବେ ମହାବଳଶାଳୀ
ତିନିପୁର ଅଧିକାର କରିଥିଲେ ବଳେ
ତାହାଙ୍କୁ ଜିଣନ୍ତା କେହି ନଥିଲା ସେ କାଳେ
ଖେଉଦିଲେ ସ୍ୱର୍ଗପୁରୁ ଇନ୍ଦ୍ର ଆଦି ସୁରେ
ଭୋଗ ମଧ ଯଜ୍ଞ ଭାଗ କଲେ ସେ ଅସୁରେ
ଅସୁରଙ୍କୁ ବଳେ ଦେବେ ସମାନ ନୋହିଲେ
ତେଣୁ ରକ୍ଷେ ବଳେ ସ୍ୱର୍ଗପୁର ଭୋଗକଲେ
ଅସୁରମାନଙ୍କ ରାଜା ତା ନାମ ବାଷ୍କଳ
ଆହେ ଭୀଷ୍ମ ବଳ ତାର ଅଟଇ ଅତୁଳ
ତ୍ରିପୁର ରହିଲା ଯେଣୁ ବଶରେ ତାହାର
ଭୟହୀନ ହୋଇ ଦର୍ପ ବଢ଼ିଗଲା ତାର
ତ୍ରିପୁରର ଏହି ଦଶା ବାସବ ଦେଖିଲେ
ଜୀବନ ରକ୍ଷଣେ ସ୍ୱର୍ଗପୁର ତେଜି ଗଲେ
ସେ କାଳ ଦୁଃଖ ତାଙ୍କର ନ ହୋଇବ କହି
ସେ ଦୁଃଖରେ କ୍ଷୁଧା ତୃଷା ଭୁଲିଗଲେ ସେହି
ବାଷ୍କଳ ରକ୍ଷ କିପରି ହୋଇବ ନିଧନ
ସେ ଉପାୟ ଚିନ୍ତାକଲେ ବସି ରାତିଦିନ
ବର ଲାଭ ଆଶା ଇନ୍ଦ୍ର ରଖି ମାନସରେ
ଗଲେ ବ୍ରହ୍ମଲୋକେ ଦେବଗଣଙ୍କ ସଙ୍ଗରେ
ବ୍ରହ୍ମାଙ୍କ ଶରଣ ବିନା ନାହିଁ ଆଉ ଗତି
ଏହା ଦୃଢକଲେ ହୃଦେ ଶଚୀଦେବୀପତି
ବ୍ରହ୍ମଲୋକେ ଦେବେ ଯାଇ ହୋଇଲେ ପ୍ରବେଶ
ତାପରେ ଯା ହେଲା ଶୁଣ ଶାନ୍ତନୁଙ୍କ ଶିଷ୍ୟ
ବ୍ରହ୍ମଲୋକେ ଯାଇ କଲେ ବ୍ରହ୍ମାଙ୍କ ଦର୍ଶନ
ତାଙ୍କ ପଦ ପ୍ରାନ୍ତେ ଲୋଟିଗଲେ ଦେବଗଣ
ବ୍ରହ୍ମାଙ୍କ ପ୍ରଶ୍ନରେ ସୁରେ ଅତି ଆର୍ତ୍ତଭରେ
କହିଲେ ବ୍ରହ୍ମାଙ୍କୁ ଅତି ଦୁଃଖେ ଯୋଡ଼ିକରେ
ତିନିପୁର ଦୁଃଖ କହି କହିଲେ ଆବର
ଭୋଗନ୍ତି ଯେ କଷ୍ଟ ସୁର ସହ ପୁରନ୍ଦର
ତେବେ କରଯୋଡ଼ି ଜଣାଇଲେ ପୁରୁହୁତ
ହେ ପ୍ରଭୋ ଦେବଙ୍କ କଷ୍ଟ ଅଟେ ଅକଥିତ

ତୁମ୍ଭଠାରୁ ବର ପାଇ ବାଷ୍କଳ ଅସୁର
ହୋଇଅଛି ଭୟପ୍ରଦ ସର୍ବ ଲୋକଙ୍କର
ଦୈତ୍ୟଗଣଙ୍କୁ ସେ ଦୁଷ୍ଟ କରିଣ ସଂଗ୍ରହ
ଲୋକପୀଡା ଦାନେ ରତ ଅଛି ଅହରହ
କରନ୍ତୁ ଏକ୍ଷଣି ତାହା ଯା ହେବ ବିହିତ
ଆହେ ପିତାମହ ତୁମେ ସର୍ବଲୋକ ତାତ
ଜଗତ ଲଭିବ ଶାନ୍ତି ହେ ପ୍ରଭୁ ଯେପରି
ଉପାୟ କହନ୍ତୁ ଭଲଭାବେ ଚିନ୍ତାକରି
ଶୌତ ସ୍ମାର୍ତ୍ତ କ୍ରୀୟା ଯାହା ଜଗତରେ ଥିଲା
ଅସୁରଙ୍କ ଉପଦ୍ରବେ ସବୁ ନଷ୍ଟ ହେଲା
ଦ୍ୱିପରେ ଦିନ ବିଶ୍ୱ ବୀର୍ଯ୍ୟହାନୀ ହୋଇ
ଅତିଶୟ ଭବ ଦୁଃଖେ ପଡିଅଛି ରହି
ଦେବଗଣ ମୁଖୁଁ ଶୁଣି ଏସନ ବଚନ
ବିଚାରି କ୍ଷଣେ କହିଲେ କମଳ ଆସନ
ବଷ୍କଳ ଅସୁରେ ମୁହିଁ ଜାଣେ ଭଲକରି
ବରପାଇ ଗର୍ବଭରେ ହୋଇଛି ଏପରି
ଉଦ୍ଦଣ୍ଡ ହୋଇଛି ଅତି ପାଇ ମୋର ବର
ଚୂର୍ଣ୍ଣହେବ ଗର୍ବ ମନେ ସଂଶୟ ନଧର
କହି ଏହା ପିତାମହ ବସିଲେ ଧ୍ୟାନରେ
ବୈକୁଣ୍ଠପତି ଶ୍ରୀହରି ଧ୍ୟାୟି ହୃଦୟରେ
ବିଚାରିଲେ ପିତାମହ ଅସୁର ମରଣ
ହେବ ତେବେ ବିଚାରିବେ ଯେବେ ନାରାୟଣ
ପ୍ରାଣବାୟୁ ରୁନ୍ଧି ତତ୍ତ୍ୱମୟ ଭାବଧରି
ପିତାମହ ଧ୍ୟାନ କଲେ ହୃଦରେ ଶ୍ରୀହରି
ସମାଧିରେ ଧ୍ୟାନସ୍ଥିତ ବ୍ରହ୍ମା ଭାବ ଜାଣି
ଚତୁର୍ଭୁଜରୂପେ ବିଜେ କଲେ ଚକ୍ରପାଣି
କହିଲେ ହେ ବ୍ରହ୍ମା ଏବେ ଭଗ୍ନକରି ଧ୍ୟାନ
କହିଦିଅ ମୋତେ ତୁମ୍ଭ ଚିନ୍ତାର କାରଣ
ପଡ଼ିଅଛି ପ୍ରୟୋଜନ କି ଅବା ତୁମ୍ଭର
ଆସିଛି ମୁଁ ମୋ ଆଗରେ ତାହା ବ୍ୟକ୍ତକର
କହିଲେ ବିଧାତା ଶୁଣି ଶ୍ରୀମୁଖ ବଚନ
ଧନ୍ୟ ମୁଁ ହୋଇଲି ଲଭି ତୁମ୍ଭ ଦରଶନ
ତୁମର ମୋ ପ୍ରତି ପ୍ରଭୁ ଏହି ଅନୁଗ୍ରହ
ଭାବି ଆନନ୍ଦରେ ଫୁଲି ଉଠୁଛି ମୋ ଦେହ
ଆପଣଙ୍କ ଚିନ୍ତା ଯାହା ବିଶ୍ୱହିତ ପାଇଁ
ଭଲେ ଜାଣେ ତାହା ଅନ୍ୟକାହା ପାଖେ ନାହିଁ
ହେ ପ୍ରଭୁ ବିଚାରି ତୁମ୍ଭେ ଜଗତ କଲ୍ୟାଣ
ଜାଣେ ମୁହିଁ କରିଅଛି ମୋତେ ଉତପନ୍ନ
ବିଶ୍ୱ କର୍ମ ସଂପାଦନ ଉଦ୍ଦେଶ୍ୟ ତାହାର
ତ୍ରିପୁର ଜାଣଇ ଏହା ଆହେ ଲକ୍ଷ୍ମୀବର
ଏ ପରମ ତତ୍ତ୍ୱ ଏଥି ରହିଛି ନିହିତ
ସଂଶୟନାହିଁ ଏଥିରେ ଆହେ ଲକ୍ଷ୍ମୀକାନ୍ତ
ବିଶ୍ୱର ପାଳନା କାର୍ଯ୍ୟ ଅଟଇ ତୁମ୍ଭର
ସଂହାର କରିବେ ଶେଷେ ଏହାକୁ ଶଙ୍କର
ଶୁଣ ପ୍ରଭୁ ଜଗତର ସ୍ଥିତି ଏହିପରି
ତିନିପୁରେ ଏହା ଜ୍ଞାତ ହୋଇଛି ସବୁରି
ଶୁଣ ପ୍ରଭୁ ଏବେ ଦୁଷ୍ଟ ବାସ୍କଳ ଅସୁର
କାଢିନେଇଅଛି ଇନ୍ଦ୍ରଙ୍କର ଅଧିକାର
ତା ଲାଗି ତ୍ରିପୁର ହୋଇ ରହିଛି ତାପିତ
ହୋଇଛନ୍ତି ଚରାଚର ଶୋକେ ବିମୋହିତ
ହେ କେଶବ ମନ୍ତ୍ର ଦାନ କର ତହିଁ ପାଇଁ
ତ୍ରିପୁର ରକ୍ଷଣେ ତାହା ବିନା ଗତି ନାହିଁ
କହିଲେ ଶ୍ରୀହରି ଶୁଣି ବ୍ରହ୍ମଙ୍କ ବଚନ
ଏ ସବୁର ହେତୁ ଅଟେ ତୁମ୍ଭ ବର ଦାନ
ତୁମ୍ଭ ବର ପ୍ରଭାବରେ ଏକ୍ଷଣି ତାହାର
ବଧ ହୋଇ ନପାରିବ ଆହେ ବେଦବର
ତେଣୁ ଏ ସ୍ଥାନରେ କରି ବୁଦ୍ଧିର ପ୍ରୟୋଗ
ସଂଘଟିତ କରାହେବ ତା ବନ୍ଧନ ଯୋଗ
ତେଣୁ ମୁହିଁ ବାମନର ସ୍ୱରୂପ ଧରିବି
ଦାନବ କୁଳକୁ ତେବେ ବିନାଶ କରିବି
ହେ ଇନ୍ଦ୍ର ମୋର ସଙ୍ଗତେ ତୁମେ ରହିଥିବ
ମୋପାଇଁ ତାଠାରୁ ବର ଯତଞ୍ଚ କରିବ
କହିବ ତୁମେ-ତୁମକୁ ଯାଚିଲେ ସେ ବର
ଏ ବାମନେ ତିନିପଦ ଭୂମି ଦାନକର
ତୁମର କଥାକୁ ସେହି ପକାଇ ନ ଦେବ
ପ୍ରାଣ ମାଗିଲେ ମଧ ସେ ନାହିଁ ନ ବୋଲିବ
ତାର ଦାନ ତିନିପାଦ ଭୂମି ମୁହିଁ ନେବି
ଯା ଫଳରେ ତାକୁ ମୁହିଁ ଆବଦ୍ଧ କରିବି
ତାକୁ ତହୁଁ ହଟାଇ ମୁଁ ଯାଗର ଯୋଗରେ
ସ୍ଥାପନା କରିବି ବ୍ରହ୍ମା ତାକୁ ପାତାଳରେ
ସହସ୍ରେ ଦିବ୍ୟ ବରଷ ସେହି ପାତାଳରେ
ରହିବି ବ୍ରହ୍ମା ମୁଁ ବଳୀ ବାମନ ରୂପରେ

ବିଷ୍ଣୁଙ୍କ ମୁଖରୁ ଶୁଣି ଏସନ ବଚନ
ବ୍ରହ୍ମାସହ ଦେବେ ଗଲେ ଆପଣା ସଦନ
ତପରେ ବାମନ ରୂପେ-ପ୍ରଭୁ ଭଗବାନ
ଭୂତଳେ ଅବତରିଲେ ଶୁଣ କୁରୁଗଣ
ପୂର୍ବ ସିଦ୍ଧାନ୍ତକୁ ଧ୍ୟାୟି ସୁରକୁଳ ସାଇଁ
ବ୍ରାହ୍ମଣ ଘରେ ଧରାରେ ଜନ୍ମ ହେଲେ ଯାଇ
ବାମନ ରୂପରେ ବିଷ୍ଣୁ ଯେବେ ଜନ୍ମହେଲେ
ଦାନବ ସମସ୍ତେ ଦୃଷ୍ଟଶକ୍ତି ହରାଇଲେ
ପ୍ରଭୁଙ୍କ ଜନମ ଜାଣି ତଟିନୀ ସକଳ
ପ୍ରବାହିତ ହେଲେ ଧରି ସୁନିର୍ମଳ ଜଳ
ମଳୟ ପବନ ତେବେ ହୋଇ ପ୍ରବାହିତ
ସୁବାସରେ ହରିନେଲା ସମସ୍ତଙ୍କ ଚିତ୍ତ
ବାମନ ରୂପରେ ହରି କଶ୍ୟପଙ୍କ ଘରେ
ଜନମ ହୋଇଲେ ଭୀଷ୍ମ ରଖିବ ମନରେ
ମହର୍ଷି କଶ୍ୟପ ଧ୍ୟାନ ବଳେତା ଜାଣିଲେ
ପୁତ୍ର ଜନ୍ମ ହେତୁ ଅତି ଆନନ୍ଦ ହୋଇଲେ
ଶୁଣ ଭୀଷ୍ମ ଜନ୍ମ ଯେବେ ହେଲେ ଜନାର୍ଦ୍ଦନ
ଆନନ୍ଦରେ ପୂର୍ଣ୍ଣହେଲା ତ୍ରିଲୋକର ମନ
ଅକସ୍ମାତେ ହୃଦୟରେ ଉତ୍ସାହ ଆସିଲା
ପାଇଥିବା ଦୁଃଖ କଷ୍ଟ ତେବେ ଦୂର ହେଲା
ଆଶ୍ଚର୍ଯ୍ୟ ନମଣ ଏଥି ଭୀଷ୍ମ ମହାରଥୀ
ଯେଣୁ ଶ୍ରୀହରିଙ୍କ ଲୀଳା ଅଦ୍ଭୁତ ସର୍ବାର୍ଥୀ
ଯେଉଁ ବିଷ୍ଣୁ ଲାଭ ପାଇଁ ସୃଷ୍ଟି ବ୍ରହ୍ମାଙ୍କର
ଜାଣ ଭୀଷ୍ମ ଅଟନ୍ତି ସେ ସାକ୍ଷାତେ ଈଶ୍ୱର
ତଥାପି ଦେବଙ୍କ କାର୍ଯ୍ୟ କରିବା କାରଣ
ବାମନ ରୂପେ ଜନ୍ମିଲେ ପ୍ରଭୁ ନାରାୟଣ
ସେହି ବ୍ରହ୍ମା ସେହି ବିଷ୍ଣୁ ସେ ମହେଶ୍ୱର
ହେ ଭୀଷ୍ମ ଏଥିରେ ମନେ ସଂଦେହ ନକର
ଅଟନ୍ତି ସେ ସବୁ ବେଦ ସ୍ୱର୍ଗ ପୁଣି ଯାଗ
ଦେବକାର୍ଯ୍ୟ ନିରନ୍ତରେ କରନ୍ତି ସେ ଆଗ
ଭାବି ଏହା ଦେବଗଣ ହୋଇଲେ ସଂତୋଷ
ତାପରେ ଯା ହେଲା ଶୁଣ ଭୀଷ୍ମ ବୀରଈଶ
ବାମନ ବିଷ୍ଣୁ ତାପରେ ଇନ୍ଦ୍ରଙ୍କ ସଙ୍ଗରେ
ଚଳିଗଲେ ଦାନବେନ୍ଦ୍ର ବାଷ୍କଳର ଘରେ
ଦୂରରୁ ଦେଖିଲେ ଦୁହେଁ ଦାନବର ପୁର
ଅବା ସେ ଭଣ୍ଡାର ତିନିଲୋକ ଐଶ୍ୱର୍ଯ୍ୟର

ସମସ୍ତ ପ୍ରକାର ରତ୍ନେ ହୋଇଣ ଆବୃତ
ମୋହୁଥିଲା ସେ ନଗରୀ ଦର୍ଶକଙ୍କ ଚିତ୍ତ
ଚୂର୍ଣ୍ଣେ ଧବଳିତ ଘର ଯେତେ ସେ ନଗରେ
କୈଳାସ ମଧ୍ୟ ସମାନ ନୁହେଁ ଉଚ୍ଚତାରେ
ସେ ନଗରେ ରାଜପଥ ବହୁତ ପଶସ୍ତ
ବହୁ ଶୃଙ୍ଗାଟକେ ନଗ୍ର ଦିଶେ ସୁଶୋଭିତ
ରାଜପଥରୁ ବାହାରି ଶାଖା ପଥରାଶି
ବିଭିନ୍ନ ଗଳି ମଧ୍ୟକୁ ଯାଉଥିଲେ ପଶି
ସେ ନଗ୍ର ନିର୍ମାଣ କାର୍ଯ୍ୟ ଅତି ମନୋହର
ଜଗତେ ଦୁର୍ଲଭ ଅଟେ ନଗ୍ର ସେ ପ୍ରକାର
ଯୁଦ୍ଧରେ ଉନ୍ମତ୍ତ ରକ୍ଷେ ସେହିପୁରେ ଥିଲେ
ପ୍ରଥମରେ ସ୍ୱର୍ଗନୃପ ଇନ୍ଦ୍ରଙ୍କୁ ଦେଖିଲେ
ଦେଖି ତାହା ଦୈତ୍ୟଗଣ ଆଶ୍ଚର୍ଯ୍ୟ ହୋଇଲେ
ଅତି ତୁରିତେ ବାଷ୍କଳ ସମୀପେ ମିଳିଲେ
କହିଲେ ହେ ପ୍ରଭୁ ଏହା ଅତି ଚମତ୍କାର
ଆସନ୍ତି ତବ ଦର୍ଶନେ ଶଚୀଙ୍କର ବର
ଆସୁଛନ୍ତି ଦେବରାଜ ସଙ୍ଗେ ନାହିଁ କେହି
ବାମନ ବ୍ରାହ୍ମଣ ଜଣେ ପଛେ ଅଛି ଧାଇଁ
କହନ୍ତୁ ଏକାଳେ କିବା କର୍ତ୍ତବ୍ୟ ଆମ୍ଭର
ପାଳିବୁ ଆଦେଶ ଆହେ ଅସୁର ଈଶ୍ୱର
ଅସୁରଙ୍କ ମୁଖୁ ଶୁଣି ଏସନ ବଚନ
କହିଲା ଅଳପ ହସି ଅସୁର ରାଜନ
ସମସ୍ତ ଅସୁର ତୁମ୍ଭେ ଏକାଠି ହୋଇବ
ବାସବଙ୍କୁ ନେଇ ମୋର ପାଶକୁ ଆସିବ
ଆଗତ ଅତିଥି ରୂପେ ଯଦି ସୁରେଶ୍ୱର
ତାହାଙ୍କୁ ପୂଜା କରିବା ଉଚିତ ଆମ୍ଭର
କହୁଥିଲା ଏହିପରି ଭୀଷ୍ମ ରକ୍ଷ ନାଥ
ମାବନ ସହ ବାସବ ହେଲେ ନେତ୍ରଗତ
ଦାନବେନ୍ଦ୍ର ବସିଥିଲା ଦୁହିଙ୍କୁ ଦେଖିଲା
ପ୍ରେମମୟ ଦୃଷ୍ଟି ଘେନି ତାଙ୍କୁ ନିରେକ୍ଷିଲା
ନିଜେ ଭାଗ୍ୟବାନ ଭାବି ରାକ୍ଷସ ଈଶ୍ୱର ।
ବସି ନିଜ ମନେ ମନେ କଲା ଏ ବିଚାର
ପ୍ରାଣିପାତ କରିବି ମୁଁ ଅତି ଭକ୍ତି ଭରେ
ସଂତୋଷକରିଣ ମଧୁ ମୟ ବଚନରେ
ଭାବିଲା ଏ ତ୍ରିଲୋକରେ ଆଉ ମୋହପରି
ଭାଗ୍ୟବାନ ଥିବ କିଏ ନପାରେ ବିଚାରି

ଶ୍ରୀମନ୍ତ ଦେବଙ୍କ ନାଥ ନିଯେ ମଘବାନ
ଯାହାର ଅତିଥି ରୂପେ କଲେ ଆଗମନ
ଦିଅନ୍ତି ଦର୍ଶନ ଆସି ପୁରକୁ ମୋହର
ମଣେ ତେଣୁ ଅତି ଉଚ୍ଚ ଭାଗ୍ୟ ଅଟେ ମୋର
ଅର୍ଥୀରୂପେ ଯେବେ କହି ଆସିବ ମୋ ପାଶେ
ଚାହିଁଲେ ସେ ତାକୁ ପ୍ରାଣ ସମର୍ପିବି ତୋଷେ
ଅର୍ଥୀର କାମନା ପୂର୍ଣ୍ଣ କରିବି ନିଶ୍ଚୟ
ଏ କଥାରେ କେବେହେଲେ ନାହିଟି ସଂଶୟ
ସେ ଯେବେ ତ୍ରିଲୋକଭୂତି କାମନା କରିବ
ଦେବି ମୁଁ ତା ନିଷ୍ଟେ ତାକୁ ଅନ୍ୟଥା ନୋହିବ
ଏପରି ବିଚାରକରି ରାକ୍ଷସ ଈଶ୍ୱର
ବସିବା ଆସନୁ ଉଠି ଆସିଲା ସତ୍ୱର
ସମ୍ମୁଖକୁ ଆସି ବହୁ ସନମାନ କଲା
ଆଦରେ ପୋଟାଳି ନେଇ କୋଳେବସାଇଲା
ମେଘ ବାହନଙ୍କୁ ଗାଢ଼େ କରି ଆଲିଙ୍ଗନ
ଉଚିତ ଅଭିନନ୍ଦନ କଲା ସେ ପ୍ରଦାନ
ଧରି କର ନବରକୁ ଡ଼ାକି ନେଇ ଗଲା
ଉପଯୁକ୍ତ ଆସନରେ ତାଙ୍କୁ ବସାଇଲା
ସ୍ୱାଗତ କରି ଦୁହିଁଙ୍କୁ କଲା ଆପ୍ୟାୟିତ
ସମୁଚିତେ ପୂଜାକରି ଶାନ୍ତନୁଙ୍କ ସୁତ
କହିଲା ତାପରେ ହର୍ଷେ ରାକ୍ଷସ ଈଶ୍ୱର
ସଫଳ ହୋଇଲା ଆଜି ଜନମ ମୋହର
ଜୀବନରେ ମୋର ଯେତେ ମନୋରଥ ଥିଲା
ବିଚାରୁଛି ସବୁ ଆଜି ସଂପୂର୍ଣ୍ଣ ହୋଇଲା
କାରଣ ଆପଣ ନିଯେ ଦେବଙ୍କ ରାଜନ
ଯେଣୁ ଘରକୁ ମୋହର କଲେ ଆଗମନ
ଆହେ ଦେବରାଜ ଆଜ ଆଗମ ତୁମ୍ଭର
କରି ଦେଇଅଛ ମୋତେ ରାକ୍ଷସ ଈଶ୍ୱର
ପ୍ରସିଦ୍ଧ ହୋଇଛି ମୁହିଁ ଏହି ପଦବୀରେ
ନିଯେ ଯେଣୁ ଦେବରାଜ ଆଗତ ମୋ ପୁରେ
ଭାଗ୍ୟ ମୋର ଅଟେ ଆଜି ତୁମ୍ଭ ଦରଶନ
ସଂଶୟ ନମଣ ଏଥି ହେ ପାକଶାସନ
ମୋ ଭାଗ୍ୟ ବର୍ଣ୍ଣନା ପାଇଁ ଭାଷା ଆଉ ନାହିଁ
ପୁଣ୍ୟବାନ ରୂପେ ଆଜୁ ଗଣାହେଲି ମୁହିଁ
ଶୁଣି ଶଚୀପତି ଅତି ଆନନ୍ଦ ହୋଇଲେ
ବାଷ୍କଳେ ଚାହିଁ ଏପରି ବାଣୀ ପ୍ରକାଶିଲେ

ହେ ଦାନବ ଶ୍ରେଷ୍ଠ ତୁମେ ଅତ୍ୟନ୍ତ ଉଦାର
ଏତେ ଦିନେ ଏ ବିଶ୍ୱାସ ହୋଇଛି ମୋହର
ଦାନବଙ୍କ ମଧ୍ୟେ ତୁମେ ସବୁମନ୍ତେ ବଡ଼
ଏହା ମୋ ହୃଦୟେ ଆଜି ହୋଇଅଛି ଦୃଢ଼
ତୁମ୍ଭର ଦର୍ଶନ ପରେ ବୁଝିଅଛି ମୁହିଁ
ମନ୍ଦ ହୋଇ ତୁମଠାରେ କଥା କିଛି ନାହିଁ
ଅର୍ଥାର୍ଥୀ ହୋଇ ଯେ କେହି ତୁମକୁ ଦେଖିଲେ
ତା ଇଚ୍ଛା ପୂରଣ ତୁମେ କରିଥାଅ ଭଲେ
ଲୋକଙ୍କ ମୁଖରୁ ଏହା ଶୁଣିଥିଲି ମୁହିଁ
ଦର୍ଶନୁ ଜାଣିଲି ମିଥ୍ୟା ଏଥି କିଛି ନାହିଁ
ଯାଚକ ନିମନ୍ତେ ତୁମେ କଳପ ପାଦପ
ଦେଖିବା ମାତ୍ରେ ଯାଚକ ଲଭେ ସଂକଳପ
ଆପଣଙ୍କଠାରୁ ବଳି ଦାତା ଏ ସଂସାରେ
ଆଉ କିଏ ଅଛି ଏହା ନ ଆସେ ମନରେ
ତେଜରେ ନିଊନ ହେବେ ତୁମକୁ ଭାସ୍କର
ତାଙ୍କ ପରି ଅଟେ ମଧ ପ୍ରଭାବ ତୁମ୍ଭର
ଗାମ୍ଭୀର୍ଯ୍ୟ ଗୁଣେ ସାଗର ହୋଇବ ନିଊନ
ବସ୍କଳ ଏ ମୋ କଥାରେ ସଂଶୟ ନମଣ
ତୁମକୁ ଦେଖି ମୁଁ ଏହା ମନରେ ବିଚାରେ
ତୁମକୁ ସମାନ ହେବେ ହରି ଐଶ୍ୱର୍ଯ୍ୟରେ
ଯାଚଞ୍ଚା କରିବି କିଛି କରିଛି କାମନା
ପୂରଣ ହେବ କି ନାହିଁ କହ ମହାମନା
ଯେ ବାମନ ରହିଛନ୍ତି ମୋହର ସଙ୍ଗରେ
ଭୂମି ତିନି ପାଦ ତାଙ୍କୁ ଦେବ ସୁଚିତ୍ତରେ
କଶ୍ୟପ କୁଳରେ ଅଟେ ଜନ୍ମ ଏହାଙ୍କର
ବ୍ରହ୍ମା ବଂଶେ ଜାତ ଯେଣୁ ହେ ରାକ୍ଷସେଶ୍ୱର
କହିବାକୁ ଆସିଛନ୍ତି ମୁହିଁ ତାଙ୍କ ପାଇଁ
ଉଚିତେ ବିଚାର କର ରକ୍ଷକୁଳ ସାଇଁ
ଭାବୁଛ ଯଦି କାରଣ କି ଅଟେ ଏହାର
ତେବେ କହୁଅଛି ଶୁଣ ରକ୍ଷକୁଳେଶ୍ୱର
ଯାଗଅଗ୍ନି ରଖିବାକୁ ନାହିଁ ମୋର ସ୍ଥାନ
ଯେଣୁ ତ୍ରିପୁର ହୋଇଛି ତୁମ୍ଭର ଅଧୀନ
ତେଣୁ ପୂରଣ କରନ୍ତୁ ଯାଚଞ୍ଚ ମୋହର
ଘେନି ମୋର ନିବେଦନ ରାକ୍ଷସ ଈଶ୍ୱର
ନିର୍ଦ୍ଧନ ହୋଇଛି ମୁହିଁ ନାହିଁ ମୋର ସ୍ଥାନ
ସ୍ଥାପନ ନିମନ୍ତେ ମୋର ଯାଗ ହୁତାଶନ

ଦାନ ଦେବା ପାଇଁ ଇଛା ନାହିଁ ଆଉ ମୋର
ତିନିପୁରେ ଯେଣୁ କିଛି ନୁହଇ ମୋହର
ହେ ରାକ୍ଷସେଶ୍ୱର ତୁମେ ଅତି ଦୀପ୍ତି ବନ୍ତ
ବୀରପଣେ ଅଟ ପୁଣି ତିନିପୁରେ ଖ୍ୟାତ
ମୋ ଯାଚଞ୍ଚ ଯେବେ ତୁମ ମତିକୁ ଆସିବ
ବାମନଙ୍କୁ ତେବେ ତିନିପାଦ ଭୂମି ଦେବ
ଇନ୍ଦ୍ରଙ୍କ ବାଣୀ ବାଷ୍କଳ କରିଣ ଶ୍ରବଣ
କହିଲା ହେ ଭୀଷ୍ମ ଅତି କୋମଳେ ବଚନ
ହେ ଦେବେନ୍ଦ୍ର କରୁଛି ମୁଁ ତୁମକୁ ସ୍ୱାଗତ
ଲଭିବ ଶୁଭ ତା ପାଇଁ ନହୁଅ ଭାବିତ
ସ୍ୱଧ୍ୟାତ୍ମ୍ୟ ଆପଣ ପୁଣି ସର୍ବ ପରାୟଣ
ଏଥିରେ ସଂଶୟ ମନେ ନଧର ଆପଣ
ଲଜ୍ଜା ହୁଏ ମୋର କିନ୍ତୁ ଶୁଣି ତୁମ୍ଭ ବାଣୀ
ବିପ୍ର ପାଇଁ ତିନିପାଦ ଭୂମି ଦାନ ଶୁଣି
ଏହି ବିପ୍ର ପାଇଁ ଯେବେ କରିବ ପ୍ରାର୍ଥନା
ବହୁ ଗ୍ରାମ ଦାନ ଦେବି ଆହେ ମହାମନା
ଚାହିଁବ ଯଦ୍ୟପି ଦେବି ସ୍ୱର୍ଗପୁର ଦାନ
ତୁମ୍ଭଙ୍କୁ ଏଥିରେ କିଛି ସଂଦେହ ନମଣ
ତାପରେ ଚାହିଁବ ଯେତେ ଜମି ଘୋଡ଼ା ହାତୀ
ଧନ ସଙ୍ଗେ ଦେବି ନାରୀ ଅତି ରୂପବତୀ
ଶୁଣ ଭୀଷ୍ମ ସେହିଠାରେ ଭୃଗୁଙ୍କର ସୁତ
ଦୈତ୍ୟ ପୁରୋହିତ ଶୁକ୍ର ଥିଲେ ଉପସ୍ଥିତ
କହିଲେ ରାକ୍ଷସେଶ୍ୱରେ କରି ସମ୍ବୋଧନ
ଅଷ୍ଟ ଆଇଶ୍ୱର୍ଯ୍ୟ ଅଟେ ତୁମ୍ଭର ଅଧୀନ
ତଥାପି ତୁମ୍ଭର ତାହା ନୋହିଛି ଗୋଚର
ଉଚିତ ବା ଅନୁଚିତ କିଏ କି ପ୍ରକାର
ହେ ରାଜା ସମୟ ଜ୍ଞାନ ତୁମଠାରେ ନାହିଁ
ତୁମ ବ୍ୟବହାରୁ ଏହା ଜାଣୁଅଛି ମୁହିଁ
କାହାକୁ କେଉଁ ସମୟେ କରିବ କି ଦାନ
ରାକ୍ଷସରାଜ ତୁମ୍ଭର ନାହିଁ ସେହି ଜ୍ଞାନ
କହେ ତେଣୁ ମନ୍ତ୍ରୀସଙ୍ଗେ କରିଣ ମନ୍ତ୍ରଣା
ଯୁକ୍ତ ଅଯୁକ୍ତ ଏଥିରେ କର ବିଚାରଣା
ଇନ୍ଦ୍ର ଆଦି ସୁରଗଣେ ଜିଣିଛ ସମରେ
ତ୍ରିଲୋକ କରିଛ ଜୟ ବଳ ବିକ୍ରମରେ
ତିନିଲୋକର ବିଭବ ପ୍ରାପ୍ତ ଅଛ ହୋଇ
ବଚନ ଦେଇ ସାରିଛି ଦାନ ଦେବା ପାଇଁ

ପୂର୍ଣ୍ଣ ଯଦ୍ୟପି ହୋଇବ ତୁମ୍ଭ ଏ ବଚନ
ବନ୍ଧନ ଯୋଗ ନିଶ୍ଚୟ ହେବ ମନେ ଘେନ
ବାମନ ରୂପେ ଯାହାଙ୍କୁ ଦେଖୁଛ ଆଗରେ
ସେ ବୈକୁଣ୍ଠ ବାସୀ ବିଷ୍ଣୁ ବିଚାର ମନରେ
ତୁମେ ତାଙ୍କୁ ଦାନ ଦେବା ନୁହଇ ଉଚିତ
ଯେଣୁ ସେ ତୁମ ପିତାଙ୍କୁ କରିଛନ୍ତି ହତ
ତୁମ ମାତାଙ୍କର ମଧ୍ୟ ଏ ବଧ କାରକ
ଏ ତୁମ୍ଭ ଆତ୍ମୀୟଙ୍କର ପରାଣ ଘାତକ
ତୁମ୍ଭର ବଂଶ ଉଚ୍ଛେଦ ଏହାଙ୍କ କାମନା
ଭଲଭାବେ କଥାମୋର କର ବିଚାରଣା
ଭୂତ ଭବିଷ୍ୟରେ ଏହି ବୈକୁଣ୍ଠ ଈଶ୍ୱର
ବାଧକ ଅଟନ୍ତି ନୃପ ରାକ୍ଷସ କୁଳର
ଧର୍ମ ନ୍ୟାୟ ସଦା ତାଙ୍କ କାମନା ଅଟଇ
ତାକୁ ଛାଡ଼ି ଅନ୍ୟଚିନ୍ତା ତାଙ୍କଠାରେ ନାହିଁ
ଇନ୍ଦ୍ରାଦି ଦେବଗଣଙ୍କ ଏହି ହିତ କାରୀ
ମାୟାଗୁଣେ ତାଙ୍କୁ କେହି ନହୋଇବେ ସରି
ନିଜ ମାୟାରେ ଦାନବେ କରିବେ ମୋହିତ
କଥାରେ ମୋର ସଂଶୟ ନମଣ କିଞ୍ଚିତ
ସମୟ ଆସିଲେ ତାଙ୍କ ରୂପ ପ୍ରକାଶିବ
ଆଉ କି କହିବ-ତୁମେ ବିଚାର କରିବ
ଏ ସମୟେ ଦୈତ୍ୟପତି ମୋର ଏହି ମତ
ବାମନଙ୍କୁ ଦେବା କିଛି ନୁହଇ ଉଚିତ
ତିନିପାଦ ଭୂମି କଥା ଛାଡ଼ ଦୈତ୍ୟେଶ୍ୱର
ପାଦେ ମଧ୍ୟ ଦେଲେ ହେବ ବିନାଶ ତୁମ୍ଭର
ଦାନ ଯେବେ ଦେବ ତେବେ ଆହେ ରକ୍ଷଈଶ
ଦେଖିବ ତା ଅବିଳମ୍ବେ ହୋଇବ ଅବଶ୍ୟ
ନମଣ ଏଥି ସଂଶୟ ରକ୍ଷକ ଈଶ୍ୱର
ସତ୍ୟ ସତ୍ୟ ସତ୍ୟ ଅଟେ ଏହିକଥା ମୋର
ରକ୍ଷରାଜ ଆଚାର୍ଯ୍ୟଙ୍କ ବଚନ ଶୁଣିଲା
ଅଳ୍ପ ଚିନ୍ତା କରି ପୁଣି ତାହାଙ୍କୁ କହିଲା
ଆହେ ଗୁରୁ ପ୍ରତିଜ୍ଞା ମୁଁ କଲି ଧର୍ମ ପାଇଁ
ଏବେ କିପରି କହ ମୁଁ କରିଦେବି ନାହିଁ
ହେବ ତାହା ସନାତନ ଧର୍ମର ବିରୋଧ
ସତ୍‌ପୁରୁଷପକ୍ଷେ ମଧ୍ୟ ଅଟେ ଅପରାଧ
କର୍ତ୍ତବ୍ୟ ଅଟଇ ଏହା ଉତ୍ତମ ଲୋକର
ନିଯେ କହିବା ବଚନ ଭଲେ ପାଳିବାର

ବିଷ୍ଣୁ ଯେବେ ଆସିଛନ୍ତି ବାମନ ରୂପରେ
ମୋହଠାରୁ ଭୂମି ଦାନ ନେବା କାମନାରେ
ସଂସାରରେ ଭାଗ୍ୟଶାଳୀ ମୋପରି କେ ହେବ
ସ୍ୱୟଂ ବୈକୁଣ୍ଠ ପତିଙ୍କୁ ଭୂମିଦାନ ଦେବ
ହେ ଗୁରୁ ମୋଠାରୁ ବିଷ୍ଣୁ ନେଇଯେବେ ଦାନ
ଦେବତାଙ୍କ ପାଇଁ ତାହା କରିବେ ପ୍ରଦାନ
ତେବେମଧ୍ୟ ତାହା ମୋର ମଙ୍ଗଳ ହୋଇବ
ଦେବଙ୍କର ଧନ୍ୟବାଦ ମୋତେ ପ୍ରାପ୍ତହେବ
ଯୁଗ ଯୁଗ ଧରି ଋଷ ଗଣ କରି ଧ୍ୟାନ
ନ ପାରନ୍ତି ପାଇ ଯାର ଚରଣ ଦର୍ଶନ
ବିପ୍ରଗଣ ଯାହାଙ୍କର ପ୍ରାପ୍ତି କାମନାରେ
ଜପ କରୁଥାନ୍ତି ଯାର ନାମ ନିରନ୍ତରେ
ସେହି ପ୍ରଭୁ ନିଯେ ଯେବେ ବିଯେ ମୋ ମନ୍ଦିରେ
ଦେଖିବି ତାଙ୍କୁ ତାଗଣା ହେବ ସୌଭାଗ୍ୟରେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଶୁକ୍ରାଚାର୍ଯ୍ୟ ଶୁଣି ରକ୍ଷରାଜର ଏ ଗୀର
ଅତି ଲଜ୍ଜାଭରେ ତେବେ ପୋତିଦେଲେ ମଥା
ଅଭିମାନ ଭରେ ଆଉ ନକହିଲେ କଥା
ବାଷ୍କଳ କହିଲା ତେବେ ବାମନଙ୍କୁ ଚାହିଁ
କହିଛି ମୁଁ ଯେଉଁ ଭୂମି ଦାନ ଦେବା ପାଇଁ
ଅବଶ୍ୟ ମୁଁ ଦେବି ତାହା ଆହେ ଦ୍ୱିଜବର
କିନ୍ତୁ ଏ ଦାନ ଦେବାକୁ ଲଜ୍ଜା ହୁଏ ମୋର
ଶୁଣି ଦୈତ୍ୟଙ୍କୁ କହିଲେ ତେବେ ବଜ୍ରଧର
ସତ ତୁମ କଥା ଆହେ ରାକ୍ଷସ ଈଶ୍ୱର
ଯା ହେବାର ଥିଲା ହେଲା କିପାଇଁ ବିଷାଦ
ଦିଅ ଏବେ ବାମନଙ୍କୁ ଭୂମି ତିନିପାଦ
ବାମନଙ୍କ ଇଚ୍ଛା ମଧ୍ୟ ଅଟଇ ସେପରି
ତେଣୁ ମୋର ନିବେଦନ ହେଲା ଏହିପରି
ମୋର କଥା ଶୁଣ ଏବେ ଆହେ ଦନୁସୁତ
ଯା ମାଗିଲି ବାମନେ ତା କରାଅ ପ୍ରାପତ
ଆବଶ୍ୟକ ନାହିଁ କିଛି ତାଠାରୁ ଅଧିକ
ଯା କହିଛ ଦିଅ ତାହା ଦନୁଜ ନାୟକ
କହେ ବାଷ୍କଳ ତା ଶୁଣି ଆହେ ପୁରନ୍ଦର
ଏ ଭୂମିରେ ଇଚ୍ଛାମତେ ରହ କରି ଘର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଶେଷହେଲା ଯେତେବେଳେ ଇନ୍ଦ୍ରଙ୍କ ବଚନ

ବାଷ୍କଳ ତେବେ ବାମନେ ପାଖକୁ ଡାକିଲା
ଦର୍ଭଯୁକ୍ତ ପାଣି ପାତ୍ରୀ ହାତରେ ଧଇଲା
କହିଲା ବୈକୁଣ୍ଠପତି ହରି ପ୍ରୀତି ପାଇଁ
ସନ୍ତୋଷେ ଏ ଭୂମିଦାନ କରୁଅଛି ମୁହିଁ
ଏପରି ସଂକଳ୍ପ କରି ଦାନବ ଈଶ୍ୱର
ବାମନଙ୍କ କରେ ଉତ୍ସର୍ଗିଲା ଜଳଧାର
ଏ ସଂକଳ୍ପ ଯେବେ ଭୀଷ୍ମ ଶେଷ ହେଲା ତାର
ବାମନ ଧଇଲେ ତେବେ ସ୍ୱରୂପ ନିଜର
ଦେବହିତ କାମନାରେ ରୂପ ତାହାଙ୍କର
ଆକ୍ରାନ୍ତ କଲା ଜଗତ ଆହେ କୁରୁବୀର
ଯଜ୍ଞ ପର୍ବତକୁ ତେବେ ଶ୍ରୀହରି ଚଳିଲେ
ଉପରକୁ ମୁକ କରି ତହିଁ ଠିଆ ହେଲେ
ବାମ ପାଦରେ ଅସୁର ରାଜ୍ୟ ପୂର୍ଣ୍ଣ ହେଲା
ଆଶ୍ଚର୍ଯ୍ୟ ନମଣ ଏଥି ଶାନ୍ତନୁଙ୍କ ବଳା
ଯେତେଦୂର ସୂର୍ଯ୍ୟକର ହୋଇଛି ପ୍ରସାର
ସେ ବାମ ପାଦକୁ ମଧ ନହେଲା ସୁମାର
ଦ୍ୱିତୀୟ ପାଦରେ ଧ୍ରୁବଲୋକ ହେଲା ପୂର୍ଣ୍ଣ
ନକର ସଂଦେହ ଏଥି ଶାନ୍ତନୁ ନନ୍ଦନ
ତୃତୀୟ ପାଦରେ ତାଙ୍କ ଅଦ୍ଭୁତ କରମ
ବ୍ରହ୍ମାଣ୍ଡକୁ ଆହେ ଭୀଷ୍ମ କଲା ତା ତାଡନ
ବ୍ରହ୍ମାଣ୍ଡ ରହିଲା ବୁଢ଼ା ଆଙ୍ଗୁଠି ମଧ୍ୟରେ
ଅଣ୍ଡା ପରାୟେ କ୍ଷରିତ ହୋଇଣ ଜଳରେ
ସେହି ଜଳେ ତିନିଲୋକ ହୋଇଲା ପ୍ଳାବିତ
ନିଃସଂଶୟ ଏହା ଜାଣ ଶାନ୍ତନୁଙ୍କସୁତ
ବାଷ୍କଳକୁ ଡ଼ାକି ତେବେ କହିଲେ ବାମନ
ମୋର ଏ ପାଦକୁ ପୂର୍ଣ୍ଣ କରନ୍ତୁ ରାଜନ
ସେ କାଳେ ବାଷ୍କଳ ମୁଖ କରି ଅବନତ
ବାମନଙ୍କ ସମ୍ମୁଖରେ ହୋଇଥିଲା ସ୍ଥିତ
ଉତ୍ତର ତାହାର ମୁଖେ କିଛି ନ ସ୍ଫୁରିଲା
ସେ ସ୍ଥିତି ଶୁକ୍ରାଚାର୍ଯ୍ୟଙ୍କ ଦୃଷ୍ଟିରେ ପଡ଼ିଲା
ଅସୁର ଆଚାର୍ଯ୍ୟ ତେବେ କହିଲେ ଏ ଗୀର
ମନଦେଇ ଶୁଣ ଏବେ ରାକ୍ଷସ ଈଶ୍ୱର
ସ୍ୱାଭାବିକ ଏହି ଦାନ କହୁଥିଲି ମୁହିଁ
ପ୍ରଭୁ ବର୍ତ୍ତମାନ ଯାହା ଦେଖୁଅଛି ରହି
ତୁମ୍ଭ ଏ ରୂପକୁ ଯେଣୁ ଦାନ ସେହି ଦେଲା
ମୋ ଯଜମାନ ଶକ୍ତିର ଗୌରବ ବଢ଼ିଲା

ନୂତନ ଭୂମି ଗଢ଼ିବା ସାମର୍ଥ୍ୟ ତାହାର
ନାହିଁ ବୋଲି ଜାଣି ଅଛ ତୁମ୍ଭେ ବିଶ୍ୱମ୍ଭର
ସେହିଶକ୍ତି ଯଦି ପ୍ରଭୁ ତାହାର ଥାଆନ୍ତା
ନୂଆ ଗଢ଼ା ଭୂମି ଦାନ ତୁମ୍ଭଙ୍କୁ ଦିଅନ୍ତା
ତୁମ୍ଭ ତୃତୀୟ ପାଦେ ସେ ହୁଅନ୍ତା ସମାନ
କିନ୍ତୁ ସେ ଶକ୍ତି ତାହାର ନାହିଁ ଭଗବାନ
ଯେତେଧରା ଥିଲା ପ୍ରଭୁ ତାର ଅଧୀକାରେ
ସେ ସମସ୍ତ ନିବେଦିଛି ତବ ପଦାବ୍ଜରେ
ଶୁଣି ବାସ୍କଳ କହିଲା ତେବେ ଯୋଡ଼ିକର
ସୃଜିତ ଯେତେକ ଭୂମି ଅଟଇ ତୁମ୍ଭର
ନ ଲୁଚାଇ କିଛି ସବୁ କରିଛି ଅର୍ପଣ
ପ୍ରଭୁ ତବ ପଦପ୍ରାନ୍ତେ ସବୁ ଅଟେ ନ୍ୟୁନ
ତୁମ୍ଭର ସ୍ୱରୂପ ପ୍ରଭୁ ଅଟଇ ଅପାର
ସୃଷ୍ଟି ଶକ୍ତି ପ୍ରଭୁ କିଛି ନାହିଁତ ମୋହର
ପ୍ରଭୁ ତବ ଇଚ୍ଛା ଶକ୍ତି କରଇ ସର୍ଜନା
ତାର ସେ ଭକ୍ତିରେ ହରି ହେଲେ ପ୍ରୀତମନା
ସତ୍ୟବକ୍ତାରୂପେ ଦୈତ୍ୟେ ହୃଦୟରେ ଧରି
କହିଲେ ଅତି ଆଦରେ ତାହାକୁ ଶ୍ରୀହରି
କହିଲେ ଶୁଣନ୍ତୁ ଏବେ ଦାନବ ପ୍ରଧାନ
କହ ତୁମ କେଉଁଇଚ୍ଛା କରିବି ପୂରଣ
ସଂକଳ୍ପ କରି ମୋତେ ଯେ ଜଳ ଅଛ ଦେଇ
ମୋ ହାତରେ ଏବେ ମଧ ତାହା ଅଛି ରହି
ଉଭୟେ ଯୋଗ୍ୟ ଯାଚକ ଦାତା ସ୍ୱରୂପରେ
ଯା ଇଚ୍ଛା ତାହା ପ୍ରକାଶକର ମୋ ଆଗରେ
ତୁମେ ଦେବା ଦାନ ତୁମେ ଯଦ୍ୟପି ଚାହିଁବ
ସଂଦେହ ନକର ତାହା ନିଶ୍ଚୟ ପାଇବ
ଦାନବ ପତିର ଇଚ୍ଛା ଜାଣିଣ ଶ୍ରୀହରି
କହିଥିଲେ ଏହି କଥା ସେ କାଳକୁ ହେରି
ବାସ୍କଳ ଶ୍ରୀହରି ମୁଖୁ ଶୁଣି ଏ ବଚନ
କହିଲା ସଂତୁଷ୍ଟ ଯେବେ କମଳାରମଣ
ଶକ୍ତିମନ୍ତ କର ମୋତେ ତୁମଶକ୍ତି ଦେଇ
ଶେଷ ତୁମ୍ଭକରେ ମୃତ୍ୟୁ ହେଉ ଭାବଗ୍ରାହୀ
ଶ୍ୱେତଦ୍ୱୀପ ନାମେ ପ୍ରଭୁ ଅଛି ଯେଉଁସ୍ଥାନ
ଜଗତରେ ସେହିସ୍ଥାନ ଅଟଇ ଉତ୍ତମ
ତପସ୍ୱୀଙ୍କ ମଧ ତାହା ଅଟଇ ଦୁର୍ଲଭ
ହେ ପ୍ରଭୁ ମୋପାଇଁ ତାହା କରାଅ ସୁଲଭ

କହିଲେ ଶ୍ରୀହରି ତେବେ ଶୁଣି ତାର ବାଣୀ
ଯୁଗାନ୍ତର ଯାଏ ତହିଁ ରହ ଦୈତ୍ୟମଣି
ଯେବେ ମୁଁ ବରାହରୂପେ ହୋଇ ଅବତାର
ଉଦ୍ଧାର କରିବି ଏହି ଧରଣୀର ଭାର
ସେତେବେଳେ ତୁମେ ମୋର ଆଗକୁ ଆସିବ
ମୋର କରେ ମରି ବୈକୁଣ୍ଠପୁରେ ଯିବ
ଚତୁର୍ଦ୍ଦଶ ଅଧ୍ୟା ହେଲା ଏଥି ସମାପନ
ଶୁଣିଲେ ପୁଲସ୍ତ୍ୟଠାରୁ ଶାନ୍ତନୁ ନନ୍ଦନ
ରଘୁକୁଳ ଚନ୍ଦ୍ର ହୃଦେ ରାଜ ନିରନ୍ତରେ
ଶୟନରେ ସ୍ୱପନରେ ଅବା ଜାଗ୍ରତରେ
ତୁମ ନାମ ତାର ଧ୍ୟାନେ ରହୁନିରନ୍ତର
ପ୍ରଭୁ ଗୋପୀନାଥର ଏ ଆଶ ପୂର୍ଣ୍ଣକର

ଇତି ଶ୍ରୀ ପଦ୍ମ ପୁରାଣେ
ସୃଷ୍ଟିଖଣ୍ଡେ ପୁଲସ୍ତ୍ୟ ଭୀଷ୍ମ
ସଂବାଦେ ବାମନାବତାର ବର୍ଣ୍ଣନୋ
ନାଭ ଚତୁର୍ଦ୍ଦଶ ଅଧ୍ୟାୟଃ

□

## ପଞ୍ଚଦଶ ଅଧ୍ୟାୟ

### ପୁଷ୍କରତୀର୍ଥ ନିର୍ମାଣ ବର୍ଣ୍ଣନା

ଶାନ୍ତନୁ କୁମରଙ୍କର ପ୍ରଶ୍ନର ଉତ୍ତର
ଦେଇ ଏହା କହିଥିଲେ ଋଷି କୁଳବର
କହିବି ତାହା ଅଟେ ଯା ଅତି ପୁରାତନ
ଇତିହାସ ରୂପେ ତାହା ହୁଅଇ ଗଣନ
ଅଯୋଧ୍ୟାର ନୃପ ଦଶରଥଙ୍କ ନନ୍ଦନ
ପୁଷ୍କର ତୀର୍ଥକୁ କଲେ କିପରି ନିର୍ମାଣ
ଅତି ହର୍ଷ ହେବ ତୁମ୍ଭେ ଶୁଣି ସେ ଚରିତ
ଯେଣୁ ଏହି ତୀର୍ଥ ଅଟେ ବିଶ୍ୱେ ପ୍ରତିଷ୍ଠିତ
ପୂର୍ବେ ଭାର୍ଯ୍ୟା ସୀତା ଭାଇ ଲକ୍ଷ୍ମଣ ସଙ୍ଗରେ
ଶ୍ରୀରାମ୍ ଗଲେ ମହର୍ଷି ଅତ୍ରୀ ଆଶ୍ରମରେ
ଚିତ୍ରକୂଟେ ମହର୍ଷିଙ୍କ ରମ୍ୟ ସେ ଆଶ୍ରମ
ପୂତ ପଣେ ଚିତ୍ରକୂଟେ କେ ନୁହଇ ସମ
ଯାଇ ସେ ପୁଣ୍ୟ ଆଶ୍ରମେ କୌଶଲ୍ୟା ତନୟ
ଅତ୍ରୀ ଋଷିଙ୍କୁ ପୁଛିଲେ ହୋଇଣ ବିନୟ
ପୁଷ୍କର ତୀର୍ଥ କେ ଅଟେ କହ ମୁନିବର
କେଉଁ କେଉଁ ତୀର୍ଥ ଏଥି ଅଛନ୍ତି ଆବର

ପୁଣ୍ୟମୟ କେଉଁ କ୍ଷେତ୍ର ଅଟେ ତା ମଧ୍ୟରେ
ନଘଟେ ବନ୍ଧୁ ବିୟୋଗ କାହାର ସ୍ନାନରେ
କେଉଁ ତୀର୍ଥେ ଗଲେ ବନ୍ଧୁ ବିୟୋଗ କଷଣ
ଦୂର ହୋଇଯାଏ କହ ଋଷିକୁଳରାଣ
ସୁବ୍ରତୀ ସୁଶୀଳ ବିଜ୍ଞ ତୁମେ ମୁନିଶ୍ୱର
କୃପାବହି ଦିଅନ୍ତୁ ମୋ ପ୍ରଶ୍ନର ଉତ୍ତର
ଘୋର କଷ୍ଟପ୍ରଦ ପ୍ରଭୁ ବନ ବାସ ମୋର
ତ୍ରିଦିବ ପ୍ରୟାଣ ରାଜା ଦଶରଥଙ୍କର
ଭରତ ଶତ୍ରୁଘ୍ନ ଦୁଇ ଭାଇଙ୍କ ବିୟୋଗ
ଏହି ତିନି କାରଣରୁ ଆହେ ମହାଭାଗ
ରହିଅଛି ମୁହିଁ ଅତି ପରିଚିତି ହୋଇ
ଶାନ୍ତିଦାନ କର ତେଣୁ ଋଷି ଏହା କହି
ଶ୍ରୀରାମଙ୍କ ମୁଖୁ ଶୁଣି ବଚନ ଏସନ
ବହୁତ ସମୟ ଧ୍ୟାନେ ବସି ତପୋଧନ
ଉଠି ଧ୍ୟାନରୁ ଶ୍ରୀରାମେ କହିଥିଲେ ଯାହା
କହିବି ମୁଁ ତାହା ବସି ଶୁଣ କୁରୁନାହା
କହିଲେ ମହର୍ଷି ଶୁଣି ରଘୁକୁଳ ବର
ପ୍ରଶ୍ନ ତୁମ୍ଭର ଅଟଇ ଅତି ଚମତ୍କାର
ଅଟତୁମ୍ଭେ ରଘୁବଂଶ ବର୍ଦ୍ଧନ କାରଣ
ପୁଷ୍କର ତୀର୍ଥ ପ୍ରସଙ୍ଗ ସାବଧାନେ ଶୁଣ
ମୋର ପିତା ପଦ୍ମଯୋନୀ ଏ ତୀର୍ଥ ଉତ୍ତମ
ପୁଷ୍କର ନାମରେ କରି ଅଛନ୍ତି ନିର୍ମାଣ
ମର୍ଯ୍ୟାଦା ଯଜ୍ଞ ନାମରେ ଛନ୍ତି ଦୁଇ ଗିରି
ନାମେ ଗୁଣେ ଅନ୍ୟ ଗିରି ନୁହେ ତାଙ୍କପରି
ଏହି ବେନି ପର୍ବତର ମଧ୍ୟ ପ୍ରଦେଶରେ
ଛନ୍ତି କୁଣ୍ଡ ତିନି ଖ୍ୟାତ ହୋଇ ଜଗତରେ
ତିନି କୁଣ୍ଡ ନାମ ଜ୍ୟେଷ୍ଠ ମଧ୍ୟମ କନିଷ୍ଠ
ପୂର୍ଣ୍ଣକାମ ହୁଏ ତହିଁ ଯେ ହୁଏ ପ୍ରବିଷ୍ଟ
ଦର୍ଶନ କର ଶ୍ରୀରାମ ଯାଇ ତୀର୍ଥବର
ପିତା ଦଶରଥେ ତହିଁ ପିଣ୍ଡ ଦାନକର
ତପସ୍ୟା କରିବ ତହିଁ ପିଣ୍ଡଦାନ ପରେ
ନିଶ୍ଚୟ ପାଇବ ଯାହା ଭାବିବ ହୃଦରେ
ସବୁ ତୀର୍ଥଙ୍କର ଏହି ଅଟଇ ପ୍ରସିଦ୍ଧ
ସଂପୂର୍ଣ୍ଣ କ୍ଷେତ୍ର ରୂପରେ ସେ ହୋଇଛି ସିଦ୍ଧ
କୁଣ୍ଡ ଏକ ଅବିୟୋଗୀ ସୁରସାତା ନାମ
ବନ୍ଧୁ ବିୟୋଗ ନ ଘଟେ ଜଳେ ତହିଁ ସ୍ନାନ

ଆହେ ରାମଚନ୍ଦ୍ର ରଘୁବଂଶର ତିଳକ
ତହିଁ ସ୍ନାନେ ଦାନେ ତରି ଯାନ୍ତି ପିତୃଲୋକ
ଶୁଣି ତାହା ଦଶରଥ ସୁତ ତହିଁଗଲେ
ପିତୃଗଣ ଉଦ୍ଦେଶ୍ୟରେ ପିଣ୍ଡଦାନ କଲେ
ତର୍ପଣେ ଦେବ ପିତୃଙ୍କୁ କରିଣ ସଂତୋଷ
ପୂଜା ସ୍ନାନ କଲେ ତୀର୍ଥବରେ ଲଭିତୋଷ
ଦେଖିଲେ ଶ୍ରୀରାମ ତେବେ ମାର୍କଣ୍ଡେୟ ମୁନି
ଆସିଥିଲେ ସ୍ନାନ ପାଇଁ ଶିଷ୍ୟେ ସଙ୍ଗେ ଘେନି
ଦେଖି ତାଙ୍କୁ ରାମ ଅତି ଆନନ୍ଦିତ ହେଲେ
ସମ୍ମୁଖକୁ ଯାଇ ତାଙ୍କୁ ପ୍ରଣିପାତ କଲେ
ସମାଦର କଲେ ବୁଦ୍ଧିବନ୍ତ ସୀତାପତି
ଦେଖି ପ୍ରମୁଦିତ ହେଲେ ମାର୍କଣ୍ଡେୟ ଯତି
ତାପରେ ପୁଛିଲେ ତାଙ୍କୁ ଜାନକୀରମଣ
ଅବିୟୋଗୀ କୂପ କିଏ କହନ୍ତୁ ଆପଣ
କେଉଁଦିଗେ ଅଛି ତାହା କହନ୍ତୁ ବିଚାରି
ଦୟାବହି ମୋରେ ଆହେ ଶ୍ରେଷ୍ଠ ତପଚାରୀ
ମୁହିଁ ପ୍ରଭୁ ଅଟେ ଦଶରଥଙ୍କ ତନୟ
ରାମ ନାମେ ଲୋକେ ମୁହିଁ ଦିଏ ପରିଚୟ
ମୁନିଶ୍ରେଷ୍ଠ ଅତ୍ରୀଙ୍କର ଆଦେଶ ପାଇଲି
କୂପ ଅନ୍ୱେଷଣେ ପ୍ରଭୁ ଏଠାକୁ ଆସିଲି
ସେ ସୌଭାଗ୍ୟ କୂପ ପ୍ରଭୁ କରିବି ଦର୍ଶନ
ଏହି ଇଚ୍ଛା ନେଇ କରିଅଛି ଆଗମନ
କିନ୍ତୁ ହେ ପ୍ରଭୁ ମୁଁ ପାଉ ନାହିଁ ତାର ଠାବ
ଦେଖାଇ ଦିଅନ୍ତୁ ରଖି ମୋରେ ଦୟାଭାବ
ତା ପାଶରେ ଅନ୍ୟ ଦୁଇ କୂପ ଅଛି ରହି
ତାହାମଧ୍ୟ ଅତ୍ରୀ ମୁନି ମତେ ଛନ୍ତି କହି
ଏ କୂପ ତିନୋଟି କାହିଁଅଛି ମୁନୀବର
କହି କୃତାର୍ଥ କରନ୍ତୁ ଜୀବନକୁ ମୋର
ଏ ସବୁ ପ୍ରଶ୍ନ ରାମଙ୍କ ଶ୍ରୀମୁଖରୁ ଶୁଣି
ପ୍ରୀତିରେ ଦେଲେ ଉତ୍ତର ମାର୍କଣ୍ଡେୟ ମୁନି
କହିଲେ ଆହେ ଶ୍ରୀରାମ ରଘୁକୁଳ ବର
ଅତି ଉତ୍ତମ ଅଟଇ ଏ ପ୍ରଶ୍ନ ତୁମ୍ଭର
କହୁଛି ଏଥିରୁ ତୁମ୍ଭେ ହୋଇବ କଲ୍ୟାଣ
ଜଣେ ସୁକୃତୀରେ ତୁମ୍ଭେ ଖ୍ୟାତ ହେ ସୁଜନ
ଜାଣିଛି ପୁଣି ଆସିଛ ତୀର୍ଥ ଯାତ୍ରାପାଇଁ
ଆଜ ମୋ ସଙ୍ଗେ ବିବଦେ ଆଉ କାର୍ଯ୍ୟନାହିଁ

ଦେଖାଇବି ସେ କୂପ ମୁଁ ଦଶରଥସୁତ
ଅବିଯୋଗୀ ନାମେ ଯାହା ଅଟଇ ବିଖ୍ୟାତ
ତହିଁ ସ୍ନାନେ ଅବିଯୋଗ ହୋଇବ ପ୍ରାପତ
ସଂଶୟ ନମଣ ଏଥି ଦଶରଥ ସୁତ
ଆସି ମୋ ସଙ୍ଗେ ସେ କୂପଦେଖନ୍ତୁ ସାଦରେ
ସଭାଇଭାର୍ଯ୍ୟା ଶ୍ରୀରାମ ଶୁଣି ଗଲେ ଖରେ
ସେ କୂପ ମହିମା ଭୀଷ୍ମ ଅଟଇ ଅଦ୍ଭୁତ
ବନ୍ଧୁ ସେ ଜୀବିତ ହେଉ ଅବା ହେଉ ମୃତ
ତହିଁ ସ୍ନାନକଲେ ତାଙ୍କ ବିଯୋଗ ନୋହିବ
ସର୍ବ ସଙ୍ଗତରେ ନିଶ୍ଚେ ସଂଯୋଗ ଘଟିବ
ମାର୍କଣ୍ଡେୟଠାରୁ ଶୁଣି ବଚନ ଏସନ
ଲକ୍ଷ୍ମଣଙ୍କ ଜ୍ୟେଷ୍ଠ କଲେ ପିତାଙ୍କୁ ସ୍ମରଣ
ପରେ ଭରତ ଶତ୍ରୁଘ୍ନ ଦୁହିଁଙ୍କୁ ସ୍ମରିଲେ
ଅଯୋଧ୍ୟା ନିବାସୀ ଯେତେ ମନମଧ୍ୟେ ଥିଲେ
ସମସ୍ତଙ୍କୁ ବସି ତହିଁ ରାମ କଲେ ଧ୍ୟାନ
ଶୁଣ ମୋହଠାରୁ ଏହା ଶାନ୍ତନୁ ନନ୍ଦନ
ଧ୍ୟାନ କରୁଥିଲେ ରବି ହେଲେ ଅସ୍ତଗତ
ସନ୍ଧ୍ୟା ଜାଣି ରାମ ଧ୍ୟାନୁ ଉଠିଲେ ତୁରିତ
ମୁନିଙ୍କ ସଙ୍ଗତେ ବସି ରାମ ମହାମନା
ସୁମନରେ କଲେ ତେବେ ସନ୍ଧ୍ୟା ଉପାସନା
ସେ ଦିନ ରାତିରେ ଭାଇ ଭାର୍ଯ୍ୟା ସଙ୍ଗତରେ
ଶୟନକଲେ ହେ ଭୀଷ୍ମ ତହିଁ ହର୍ଷଭରେ
ସେ ରାତ୍ରିର ଶେଷ ଯାମ ଯେବେ ପ୍ରବେଶିଲା
ଅଦ୍ଭୁତ ସେ ସ୍ୱପ୍ନ ଯାହା ରାମେ ଦୃଶ୍ୟ ହେଲା
ଦେଖିଲେ ଶ୍ରୀରାମ ନିଜ ପିତାଙ୍କୁ ଆଗରେ
ତାଙ୍କ ତିନିରାଣୀ ମଧ୍ୟ ଥିଲେ ସଙ୍ଗତରେ
ଅଯୋଧ୍ୟା ରାଜ ନବରେ ସର୍ବେ ଥିଲେ ରହି
ବନ୍ଧୁ ବାନ୍ଧବ ସହିତ ସମବେତ ହୋଇ
ହେଉଥିଲା ତହିଁ ଶୁଭ ବିବାହ ଉତ୍ସବ
ବେଢ଼ିଥିଲେ ଋଷିଗଣ ମୋଦେ ବହିଭାବ
ଲକ୍ଷ୍ମଣ ଜାନକୀ ମଧ୍ୟ ସେହି ସମୟରେ
ସେହି ସ୍ୱପ୍ନ ଦେଖି ଉଠି ବସିଲେ ସ୍ନେହରେ
ତଦପରେ ପ୍ରବେଶିଲା ଆସି ସୁ ପ୍ରଭାତ
କହିଲେ ମୁନିଙ୍କୁ ରାମ ସେ ସ୍ୱପ୍ନ ବୃତାନ୍ତ
ମୁନିଏ କହିଲେ ରାମ ନହୁଅ ଚକିତ
ଏ କ୍ଷେତ୍ରରେ ଏହି ସ୍ୱପ୍ନ ଅଟଇ ବିହିତ

ତାପରେ କହିଲେ ରାମ ସ୍ୱପ୍ନ ଅଟେ ସତ
ପିତୃଗଣେ ପିଣ୍ଡଦାନ କରନ୍ତୁ ତୁରିତ
ଯେତେ ମୃତ ସ୍ୱପ୍ନେ ରାମ କରିଛ ଦର୍ଶନ
ବିଚାରିଣ ସମସ୍ତଙ୍କୁ ଦେବ ପିଣ୍ଡଦାନ
ତାହା ଶୁଣି ସେହିକ୍ଷଣି ଜାନକୀ ରମଣ
ବିଯୋଗ କୂପ ଉଦକେ କଲେ ଯାଇ ସ୍ନାନ
ସେ ବନରେ ଭୀଷ୍ମ ଯେତେ ମୁନୀ ରହିଥିଲେ
ସମସ୍ତଙ୍କୁ ସୀତା ପତି ଆମନ୍ତ୍ରଣ କଲେ
ମଧ୍ୟାହ୍ନ ସୂର୍ଯ୍ୟ ଯେତେକାଳେ ନମ୍ରତା ଭଜିଲା
ପ୍ରଚଣ୍ଡ ରବିଙ୍କ ତାପ ଯେବେ ଉଣା ହେଲା
ନିମନ୍ତ୍ରିତ ଋଷିଗଣ ସମୟ ବିଚାରି
ଆସି ଭେଟିଲେ ଶ୍ରୀରାମ ଶରଚାପଧାରୀ
ସମାଗତ ମୁନୀଗଣେ ଦେଖି ସୀତାପତି
ନିକଟକୁ ଡ଼ାକି ନେଲେ ସମାଦରେ ଅତି
ମୁନିଙ୍କର ସମାଗମ ଜାନକୀ ଦେଖିଲେ
ପତି ପାଶୁ ଯାଇ ଅଳ୍ପ ଦୂରରେ ବସିଲେ
ନେତ୍ର ତାଙ୍କ ଦିଶୁଥିଲା ବିସ୍ମୟ ଚକିତ
ଆନନ୍ଦରେ ଥିଲା ପୁଣି ସଜ ପଦ୍ମବତ
ଚିନ୍ତାଯୁକ୍ତଥିଲା ମୁଖ ଦେହ କମ୍ପୁଥିଲା
ଶ୍ରାଦ୍ଧ ବ୍ରାହ୍ମଣଙ୍କ ଦୃଷ୍ଟି ତା ପ୍ରତି ନଥିଲା
ସ୍ମୃତି ସିଦ୍ଧ ବିଧାନରେ କୌଶଲ୍ୟା ନନ୍ଦନ
ଭୋଜନେ ସନ୍ତୁଷ୍ଟ କଲେ ସମସ୍ତ ବ୍ରାହ୍ମଣ
ବୈଦିକ ବିଧିରେ ସବୁ କ୍ରୀୟା କଲେ ଶେଷ
ପ୍ରାଚୀନ ବିଧି ବିଧାନ ନ ଛାଡ଼ିଣ ଲେଶ
ସାରିଲେ ଶ୍ରଦ୍ଧାରେ ଶ୍ରାଦ୍ଧ ବେଦ ବିଧି ମତେ
କେଉଁଠାରେ ଭୁଲ କିଛି ନକରି କିଞ୍ଚିତେ
ବିଧି ଅନୁରୂପ ମଧ୍ୟ ବୈଶ୍ୱଦେବ କରି
ବିଶ୍ୱ ଦେବଙ୍କୁ ପୂଜିଲେ ହୃଦେ ହର୍ଷଭରି
ଆମନ୍ତ୍ରିତ ବିପ୍ରଙ୍କର ଭୋଜନ ଶେଷରେ
କଲେ ପିଣ୍ଡ ଦାନ ରାମ କ୍ରମ ଅନୁସାରେ
ଶକ୍ତି ଅନୁସାରେ କରି ଦକ୍ଷିଣା ପ୍ରଦାନ
ବିପ୍ରଙ୍କୁ ବିଦାୟ ଦେଲେ ରଘୁକୁଳ ରାଣ
ବିପ୍ରଙ୍କ ବିଦାୟ ପରେ ରଘୁକୁଳ ପତି
ସୀତାଙ୍କ ସମୀପେ ଗଲେ ହୃଦେ ବହି ପ୍ରୀତି
କହିଲେ ହେ ସୁଶୋଭିନୀ କହିବ କାରଣ
କାହିଁ ପାଇଁ ଏଥି ତୁମ୍ଭ ହେଲା ଆଗମନ

ଅଲଗା ହୋଇଣ କିପାଁ ଏଠାକୁ ଆସିଲ
ଏକାକିନୀ ଏ ସ୍ଥାନରେ କାହିଁକି ବସିଲ
କହ ତା କାରଣ ପ୍ରିୟେ ତତ୍ୱ ସହିତରେ
ଶୁଣିବାକୁ ତୁମ୍ଭମୁଖୁ ମୁଁ ଅଛି ଆତୁରେ
କହିବାରେ ତୁମେ ଯେତେ ବିଳମ୍ବ କରିବ
ମୋରେହୃଦେ ଆତୁରତା ସେତିକି ବଢ଼ିବ
ତୁମ୍ଭର ଏ ରୀତି ଦେଖି ଭାବୁଅଛି ମୁହିଁ
ନିଶ୍ଚୟ କାରଣ କିଛି ଏଥି ଅଛି ରହି
ସେ କାରଣ ମୋ ପାଖରେ ନକର ଗୋପନ
ଆଗୋ ସୁହାସିନୀ ଶୁଣି ଏ ମୋର କଥନ
ପଚାରୁଛି ରାଣଦେଇ ମୋର ଲକ୍ଷ୍ମଣର
ନ ଲୁଚାଇ କିଛି ସବୁ କର ଗୋ ପ୍ରଚାର
ସ୍ୱାମୀଙ୍କ ଠାରୁ ଜାନକୀ ଶୁଣି ଏହିପରି
ବସିଲେ ହେ ଭୀଷ୍ମ ମୌନେ ମଥା ନତ କରି
ସେହିକାଳେ ସୀତାଙ୍କର ଦେଲା ଅଶ୍ରୁପାତ
ତାପରେ କହିଲେ ଶୁଣ ଆହେ ପ୍ରାଣକାନ୍ତ
ଦେଖିଲି ଆଶ୍ଚର୍ଯ୍ୟ ଯାହା ଆଜି ଏ ସ୍ଥାନରେ
ପ୍ରକାଶିବି ଏକ୍ଷଣି ତା ତୁମ୍ଭର ଆଗରେ
ଧ୍ୟାନେ ଯେତେବେଳେ ପ୍ରଭୁ ତୁମ୍ଭେ ବସିଥିଲ
ପ୍ରବେଶିଲେ ଏଥି ମୋ ଶ୍ୱଶୁର ମହୀପାଳ
ତାଙ୍କ ସଙ୍ଗେ ଥିଲେ ତାଙ୍କପରି ଦୁଇଜଣ
ସମସ୍ତଙ୍କ ଦେହେ ଥିଲା ସମାନ ଭୂଷଣ
ଆସିଲେ ସେ ତିନିଜଣ ବ୍ରାହ୍ମଣ ବେଶରେ
ଦେଖିଅଛି ଆହେ ନାଥ ଏହା ସ୍ୱନେତ୍ରରେ
ତାହାଙ୍କ ଦର୍ଶନେ ମୋର ଲଜ୍ଜାହେଲା ଘୋର
ତେଣୁ ଆସି ଆଶ୍ରିଲି ଏ ସ୍ଥାନ ରଘୁବର
ଜାଣେ ଏହା ଦୋଷ ମୋର ସଂଗ ଦେଲିଛାଡ଼ି
ଏଣୁ କର କ୍ଷମା କହେ ପଦପ୍ରାନ୍ତେ ପଡ଼ି
ଦେଖିଲି ସେ ବ୍ରାହ୍ମଣଙ୍କୁ ଆପଣ ଡ଼ାକିଲେ
ବିଧିରେ ଆସନ ଦେଇ ଭୁକ୍ତ କରାଇଲେ
ତପ୍ସରେ ସାରିଲେ ଶ୍ରାଦ୍ଧ ବିଧି ଅନୁସାରେ
ଏଠିବସି ଦେଖିଲି ମୁଁ ଏହା ସ୍ୱଚକ୍ଷୁରେ
ସୀତାଙ୍କ ମୁଖରୁ ରାମ ପାଇ ଏ ସଂଦେଶ
ଆନନ୍ଦେ ପ୍ରସନ୍ନ ଅତି ହେଲେ ମୁନିଈଶ
ପ୍ରିୟ ଭାଷିଣୀ ସୀତାଙ୍କୁ କୋଳରେ ବସାଇ
ଆଲିଙ୍ଗନ କଲେ ଗାଢ଼େ ରଘୁକୁଳ ସାଇଁ

ତପ୍ସରେ ରାମ ଲକ୍ଷ୍ମଣ ସାରି ଆଚମନ
ଯିବା ଜାଣି ଆରମ୍ଭିଲେ ଜାନକୀ ଭୋଜନ
ଜାନକୀ ଲକ୍ଷ୍ମଣ ସଙ୍ଗେ ଶ୍ରୀରାମ ଏପରି
ହେ ଭୀଷ୍ମ ଯାପନା କଲେ୍ ତହିଁ ସେ ଶର୍ବରୀ
ରାତ୍ରି ଶେଷ ହେଲା ଯେବେ ଅରୁଣ ଉଇଁଲା
ପଛେ ପଛେ ରବିଙ୍କର ତେଜ ପ୍ରକାଶିଲା
ଦେଖି ତାହା ସେ ତିନିହେଁ ଶୟନ ତେଜିଲେ
ବିଧିମତେ ନିତ୍ୟକର୍ମ ତହିଁ ଶେଷକଲେ
ତଦପରେ ସେହି ତୀର୍ଥ ଝାଡ଼ିବା ବିଚାରେ
ଗଲେ ପଶ୍ଚିମକୁ ଜ୍ୟେଷ୍ଠପୁଷ୍କର କ୍ଷେତ୍ରରେ
ଆହେ ଦଶରଥ ସୁତ ଶରଣ ସୋଦର
ଲକ୍ଷ୍ମଣ ସୀତା ସ ରାଜ ହୃଦୟେ ମୋହର
କେବେ ମୋ ହୃଦୟ ତେଜି କାହିଁ ଯିବ ନାହିଁ
ମୋ ପୂଜା ଘେନିବ ମୋର ହୃଦୟରେ ରହି
ଅନ୍ତକାଳେ ତୁମନାମ ମୋ ହୃଦୟରେ ଥିବ
ତେବେ ପ୍ରଭୁ ଗୋପୀନାଥ ଭାଗ୍ୟ ପ୍ରକାଶିବ
ପଞ୍ଚଦଶ ଅଧ୍ୟା ହେଲା ଶେଷ ଏହିଠାରେ
ସୁଧୀଜନେ ଦୋଷ ମୋର ନଧର ଚିତ୍ତରେ

ଇତି ଶ୍ରୀ ପଦ୍ମ ପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ ପୁସ୍କର
ତୀର୍ଥ ନିର୍ମାଣ ତଥା ମହାତ୍ମ୍ୟ ବର୍ଣ୍ଣନୋ
ନାମ ପଞ୍ଚଦଶୋ ଅଧ୍ୟାୟ ।

❑

## ଷୋଡ଼ଶ ଅଧ୍ୟାୟ

### ଶ୍ରୀରାମଙ୍କ ଅଗସ୍ତ୍ୟାଶ୍ରମ ଗମନ

ପଚାରିଲେ ପୁଲସ୍ତ୍ୟଙ୍କୁ ଭୀଷ୍ମ ସରାଗରେ
କହନ୍ତୁ ହେ ମହାମୁନୀ କି ହେଲା ତାପରେ
ପୁଷ୍କର ତୀର୍ଥରୁ ତେବେ ଜାନକୀ ରମଣ
କେଉଁସ୍ଥାନେ ଗଲେ ତାହା କହ ତପୋଧନ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ତନୟ
ତୁମ୍ଭ ପ୍ରଶ୍ନର ଉତ୍ତର ଦେବି ମୁଁ ନିଶ୍ଚୟ
ରାମଙ୍କ ପୁଷ୍କର ତୀର୍ଥ ଦର୍ଶନ ଅନ୍ତରେ
ଯେ ଯାହା ବିମାନେ ଦେବେ ଗଲେ ସ୍ୱନବରେ
ସମସ୍ତଙ୍କ ଯିବା ପରେ ଦଶରଥ ସୁତ
ପ୍ରଫୁଲ୍ଲ ଅନ୍ତରେ ସୀତା ଲକ୍ଷ୍ମଣ ସହିତ

ପ୍ରବେଶ ହେଲେ ଅଗସ୍ତି ଋଷିଙ୍କ ଆଶ୍ରମେ
ଯେ ଭବେ ଅଟଇ ଖ୍ୟାତ ପୁଣ୍ୟାଶ୍ରମ ନାମେ
କହିଁଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଅଟନ୍ତି ଶ୍ରୀ ରାମଚନ୍ଦ୍ର ସ୍ୱୟଂ ନାରାୟଣ
ଦୈତ୍ୟବଳ ପୂର୍ବେ ଯେବେ ହେଲେ ବଳକର
ଦୈତ୍ୟ ପ୍ରପୀଡ଼ିତ ହେଲେ ସକଳ ଅମର
ଦାନବଙ୍କୁ ବଧିବାକୁ ସମର୍ଥ ନୋହିଲେ
ସାଗରେ ଯେଣୁ ଦଇତେ ଲୁଚି ରହିଥିଲେ
ନିରୂପାୟ ହୋଇ ତେବେ ନମୁଚୀ ପୂଜନ
ଦେବଙ୍କ ସଙ୍ଗରେ ଗଲେ ବୈକୁଣ୍ଠ ଭୁବନ
ନିରେଖି ଲକ୍ଷ୍ମୀରମଣ କଷ୍ଟ ଦେବଙ୍କର
ନେତୃତ୍ୱ ସ୍ୱୀକାର କରି ନେଲେ ସେ ତାଙ୍କର
ଘଟସୁତଙ୍କ ଆଶ୍ରମେ ହୋଇଲେ ପ୍ରବେଶ
କହିଲେ ତାଙ୍କୁ ସମ୍ବର ଲୋକଙ୍କର କ୍ଳେଶ
ସେ କଳେ ଅଗସ୍ତି ମୁନି ତାଙ୍କ ଆଦେଶରେ
ସାଗରକୁ ଚଳୁକଲେ ଏକ ଗଣ୍ଡୁଷରେ
ଆନନ୍ଦରେ ସୁରତେବେ ନାଶ କରି ଅରି
ନିଜେ ନିଜ ଯାନେ ଚଢ଼ିଗଲେ ସ୍ୱର୍ଗପୁରି
ସୁରେ ଯିବାପରେ ମିତ୍ର ବରୁଣ ନନ୍ଦନ
କହିଥିଲେ ନାରାୟଣେ କରି ନିବେଦନ
ଆହେ ପ୍ରଭୁ ମୋରଠାରେ ଦୟା ରଖିଥିବ
ପୁଣି ଥରେ ପ୍ରଭୁ ମୋର ଆଶ୍ରମେ ଆସିବ
କହିଥିଲେ ତେବେ ତାଙ୍କୁ ଲକ୍ଷ୍ମୀଙ୍କର ବର
ମନେ ରଖିଥିବ ଏହା ଆହେ ଋଷିଶ୍ୱର
ତ୍ରେତୟା ଯୁଗରେ ପୁଣି ଦେବକାର୍ଯ୍ୟ ପାଇଁ
ଦଶରଥ ସୁତ ରୂପେ ଜାତ ହେବି ମୁହିଁ
ଦେବକାର୍ଯ୍ୟେ ବନେ ମୋର ହେବ ଆଗମନ
ତେବେ ଏ ଆଶ୍ରମ ପୁଣି କରିବି ଦର୍ଶନ
ନିଜ ସତ୍ୟ ରଖି ପ୍ରଭୁ ଦଶରଥ ସୁତ
ଅଗସ୍ତିଙ୍କ ଆଶ୍ରମରେ ହେଲେ ଉପଗତ
ଆଶ୍ରମରେ ଥିଲେ ଋଷି ମୁନିଙ୍କେ ସେବିତ
ଦେବଗଣ ମଧ ତହିଁ ଥିଲେ ଉପସ୍ଥିତ
କଥା ହୋଇ ଦେବଗଣ ଯାନ୍ତେ ସ୍ୱର୍ଗପୁରେ
ନିଜେ ରାମ ପ୍ରବେଶିଲେ ଆଶ୍ରମ ମଧରେ
କହିଲେ ହେ ମୁନି ମୁହିଁ ଦଶରଥ ସୁତ
ଆସିଛି ପ୍ରଣାମ କରି ହେବି ବୋଲି ପୁତ

ଅଗସ୍ତ୍ୟ ସମ୍ମୁଖେ ଦେଖି ରାମ ଭଗବାନ
ଅର୍ଘପାତ୍ର ଧରି କରେ ଉଠିଲେ ବହନ
ପ୍ରସନ୍ନତା ଭରି ମୁଖେ ହରଷ ଅନ୍ତରେ
ସରଷି ସମ୍ମାନ ଦେଲେ ରାମେ ସରାଗରେ
କହିଲେ ରାମ ତୁମ୍ଭର ଶୁଭଦୃଷ୍ଟି ପାତ
ମୋହର କାମ୍ୟ ଅଟଇ ଆହେ ଘଟସୁତ
ପରମ ପାବନ ଶୁଭ ତୁମ୍ଭ ଦରଶନ
ହେ ଋଷି କରଇ ମହା ପାପ ବିନାଶନ
ନାଶ ହୋଇଅଛି ମୋର ପାତକ ସକଳ
ଅଟେ ଏହା ଋଷି ତବ ଦର୍ଶନର ଫଳ
ମୁନିଙ୍କି କହି ଏପରି ଜାନକୀଙ୍କ ବର
ଅଗସ୍ତିଙ୍କ ଉଦ୍ଦେଶ୍ୟରେ କଲେ ନମସ୍କାର
ଋଷିଙ୍କୁ ତାପରେ ପଚାରିଲେ ସୀତାପତି
ତୁମ୍ଭର କୁଶଳ ଆଗ କହ ଆହେ ଯତି
ଭୃତ୍ୟଗଣଙ୍କର ଋଷି କହନ୍ତୁ କୁଶଳ
ସୁଖେ ଅଛନ୍ତି କି ଆଶ୍ରମର ମୃଗକୁଳ
କହିବା ହେଉ ତୁମ୍ଭର ପୁତ୍ରଙ୍କ କୁଶଳ
ସୁଲଭ କି ଆଶ୍ରମରେ ଫୁଲ ଫଳ ଜଳ
ତପ୍ୱରେ କହିଲେ ତୋଷେ ଜାନକୀ ରମଣ
ରକ୍ଷହନ୍ତା ଋଷି ପୂତ ତବ ଦରଶନ
ତେଣୁ ସେ ଆକାଂକ୍ଷା ଋଷି ରଖି ହୃଦୟରେ
ଉପଗତ ହେଲି ଆସି ତବ ଆଶ୍ରମରେ
କହିଲେ ଅଗସ୍ତ୍ୟ ଶୁଣ ଜାନକୀ ରମଣ
ସବୁ ଜଗତରେ ବନ୍ଦ୍ୟ ଅଟନ୍ତି ଆପଣ
ସର୍ବଦା ସର୍ବଜ୍ଞ ତୁମ୍ଭେ ଅଟ ଦୟାମୟ
ଭଲେ ଜାଣେ ତାହା ମୁହିଁ ଆହେ ରଘୁବର
ହେ କାକୁସ୍ଥ ସଦା ହେଉ ତୁମ୍ଭର ମଙ୍ଗଳ
ଦର୍ଶନ ଦାନେ କୃତାର୍ଥ କରି ଋଷିକୁଳ
ତା ସଙ୍ଗରେ ମୋତେ ମଧ କରିଛ ପବିତ୍ର
ଆହେ ରାମ ରଘୁବଂଶ ପଦ୍ମବନ ମିତ୍ର
ହେ ରଘୁକୁଳ ଶାର୍ଦ୍ଦୁଳ ରାମ ଭଗବାନ
ପଦ ନ୍ୟାସେ ଏ ଆଶ୍ରମେ କରିଛ ପାବନ
ମହାଦ୍ୟୁତିମନ୍ତ ତୁମେ ହେ ଜାନକୀ ପତି
ପୂର୍ଣ୍ଣ ଅନୁଗ୍ରହ ଆଜି କରିଛ ମୋ ପ୍ରତି
ଯେ ଅର୍ଘ୍ୟ ଆପଣଙ୍କୁ ମୁଁ କରୁଛି ପ୍ରଦାନ
ଅଙ୍ଗୀକାର କରନ୍ତୁ ତା ଜାନକୀ ରମଣ

ଆହେ ନରସିଂହ ହେଉ କଲ୍ୟାଣ ତୁମ୍ଭର
ପଦ ନ୍ୟାସେ ମୋ ଅଶ୍ରମ କଲ ପୂତତର
ହେ ଶତ୍ରୁସୂଦନ ଲଭି ତୁମ ପଦରଜ
ମୋ ଆଶ୍ରମ ବୈକୁଣ୍ଠ ହୋଇଅଛି ଆଜ
ଆଜି ମୋର ପ୍ରସନ୍ନତା ନ ହୋଇବ କହି
ତୁମ୍ଭର ସାମୀପ୍ୟ ଲଭି ଆହେ ସୀତାସାଇଁ
ହେ ସୌମ୍ୟ ମୋ ପାଖେଅଛି ଏକ ଅଳଙ୍କାର
ନିର୍ମିତ ଅଟଇ ତାହା ବିଶ୍ୱକର୍ମାଙ୍କର
ତବ ଦିବ୍ୟ ଅଙ୍ଗେ ସେହି ଦିବ୍ୟ ଆଭରଣ
ଲଭି ଦୀପ୍ତି ଦେଖାଯିବ ଅତ୍ୟନ୍ତ ଶୋଭନ
ଦୟାକରି ମୋଠାରୁ ତା କର ପ୍ରତିଗ୍ରହ
ଯେଣୁ ତହିଁପାଇଁ ମୋର ବଢ଼ିଛି ଆଗ୍ରହ
ଏହି ମାତ୍ର ଅନୁଗ୍ରହ ମୋପ୍ରତି କରିବ
ଘେନି ମୋର ନିବେଦନ ଆହେ ସୀତାଧବ
ନୀତି ଅଟେ ଯାହା ବିପ୍ର ପାଇବ ଦାନରେ
ପ୍ରତିଗ୍ରହ କରି ତାହା ଦେବ ଅନ୍ୟକରେ
ଆହେ ରାମ ମହାଫଳ ତହୁଁ ହୁଏ ଲାଭ
କହି ଅଛନ୍ତି ଏ କଥା ନିଶ୍ଚେ ପଦ୍ମନାଭ
ଆହେ ଜନପ୍ରିୟ ଅଟେ ସମର୍ଥ ଆପଣ
ନାଶିବାପାଇଁ ଇନ୍ଦ୍ରାଦି ସୁରଙ୍କ କଷଣ
ପରିତ୍ରାଣ ଅଟ ତୁମ୍ଭେ ରାମ ଜଗତର
ମିଥ୍ୟା ନୁହେଁ ଏ ମୋ କଥା କୌଶଲ୍ୟା କୁମର
ତେଣୁ ସେ ଭୂଷଣ ମୁହିଁ କରିବି ପ୍ରଦାନ
ସ ବିଧିରେ ତୁମ୍ଭ କରେ ରାମ ଭଗବାନ
ପୁଣି କରେ ନିବେଦନ କର ତା ସ୍ୱୀକାର
ଆହେ ଦଶରଥ ସୁତ କୃପା ପାରାବାର
କହିଲେ ପୁଲସ୍ତ୍ୟ ଋଷି ଶୁଣ ଗଙ୍ଗାସୁତ
ତଦପରେ ଯେ ପ୍ରସଙ୍ଗ ହେଲା ସଂଘଟିତ
କୁମ୍ଭଯୋନୀ ବାଣୀ ଶୁଣି ଜାନକୀ ରମଣ
ଇକ୍ଷ୍ୱାକୁ ବଂଶର ରଥୀ ରାମ ଭଗବାନ
କହିଲେ ଋଷିଙ୍କୁ ଚାହିଁ ହୋଇ ଯୋଡ଼କର
କରିଣ ଅନୁସରଣ ଭୀଷ୍ମ ସ୍ୱଧର୍ମର
ଦୟାବହି ଶୁଣ ମୁନୀ ମୋ କହିବା ବାଣୀ
ସେହି କଥା ତୁମ୍ଭେ ମଧ ଭଲେ ଅଛ ଜାଣି
ହେ ଋଷି ନିଷିଦ୍ଧ କର୍ମ ତାହା ହେବ ମୋର
ତୁମ୍ଭେ ଦେବା ଦ୍ରବ୍ୟ ମୁହିଁ କଲେ ସୀଉକାର
ପ୍ରତିଗ୍ରହ ନୁହେ ଋଷି ମୋକୁଳ ଧରମ
କ୍ଷତ୍ରିୟ ପକ୍ଷେ ତ ଅଟେ ନିନ୍ଦିତ କରମ
କ୍ଷତ୍ରିୟ ଯେଣୁ ସେ ଜ୍ଞାନ ଅଛଇ ମୋହର
ପ୍ରତିଗ୍ରହ କରିବି ମୁଁ ଋଷି କି ପ୍ରକାର
ଭାବେ ମୁଁ ହୋଇବ ମୋର ଏହା ଅନୁଚିତ
ବିଚାର କରନ୍ତୁ ଥରେ ଆହେ କୁମ୍ଭସୁତ
ଦାନ ଯେବେ ବିପ୍ରଠାରୁ କ୍ଷତ୍ରିୟ ଘେନିବ
ଅନୁଚିତ ହେଲା ବୋଲି ଜଗତ କହିବ
ଉଚିତ ବା ଅନୁଚିତ ଏକଥା ବିଚାରି
ବତାଇ ଦିଅନ୍ତୁ ମୋତେ ଆହେ ତପଚାରି
ହୁଏ ମୁଁ ସଂତାନ ବନ୍ତ ଅଥବା ଗୃହସ୍ତ
ଅଥବା ମୁଁ ହୋଇପାରେ ଅତି ସାମରଥ
କେତେ ଆପଦରେ ଅବା ପଡିଥାଏ ମୁହିଁ
ବିପ୍ରଠାରୁ ପ୍ରତିଗ୍ରହ ଉଚିତ ନୁହଇ
କହ ମୁଁ କରିବି ତାହା କିପରି ଗ୍ରହଣ
ଆଲୋଚନା କର ଭଲେ ମହର୍ଷି ସୁଜାଣ
ବହୁଦିନୁ ପତ୍ନୀ ଭ୍ରଷ୍ଟ ହୋଇଅଛି ମୁହିଁ
ପତ୍ନୀର ପତି ହୋଇଣ ଏବେ ମୁହିଁ ନାହିଁ
ଯଦି ମୁହିଁ ତୁମ୍ଭ ଦାନ କରିବି ଗ୍ରହଣ
ଦୋଷର ଭାଗୀ ହୋଇବି ଆହେ ଋଷିଗଣ
ଏଥିରେ ହେ ଋଷି କିଛି ନମଣ ସଂଶୟ
କହିଲେ ଏହା ଶ୍ରୀରାମ ହୋଇଣ ବିନୟ
ପୂର୍ଣ୍ଣ ଆପଦେ କ୍ଷତ୍ରିୟ ଯେବେ ପଡ଼ିଥିବ
ଅବା ଅତି ଦୀନ ହୀନ ଅବସ୍ଥାରେ ଥିବ
ଦୁର୍ଦ୍ଦଶାରେ କଷ୍ଟ ଯେବେ ପାଉଥିବ ଅତି
ପ୍ରତିଗ୍ରହେ ନାହିଁ ଦୋଷ ଅଛଇ ଏ ନୀତି
ମନୁ ସ୍ମୃତିରେ ଏକଥା ଲେଖାଅଛି ହୋଇ
ଏପରି କ୍ଷତ୍ରୀୟ ଦାନ ନେଲେ ଦୋଷନାହିଁ
ବୃଦ୍ଧ ପିତା ମାତା ଅବା ପତ୍ନୀ ପତିବ୍ରତା
କଷ୍ଟ ଯେବେ ପାଉଥିବେ ଶିଶୁ ସୁତ ସୁତା
ଅକାର୍ଯ୍ୟ ହେଉ ପଛକେ କରି ଆଚରଣ
କରିବ ଏମାନଙ୍କର ଭରଣ ପୋଷଣ
ଏହି କଥା ମଧ ମନୁ ସ୍ମୃତି ଅଛି କହି
ବିଚାର କରନ୍ତୁ ଆହେ ଋଷିକୁଳ ସାଇଁ
ଏ ସବୁରୁ ଭିନ୍ନ ମୁହିଁ ଯେଣୁ ଋଷିବର
ପ୍ରତିଗ୍ରହ କଲେ ହେବ ଅନୁଚିତ ମୋର

ତେଣୁ ଆହେ ସୁରପୂଜ୍ୟ ବିଜ୍ଞ ଋଷିବର
ଏଦାନ ନେବାକୁ ଇଚ୍ଛା ହେଉନାହିଁ ମୋର
ମୋ ମିନତି ଆହେ ଋଷି ନିଶ୍ଚୟ ଘେନିବ
ନାହିଁ କଲି ବୋଲି ମୋର କ୍ରୋଧନ କରିବ
ମହାମହିମ ରାମଙ୍କ ଶୁଣି ସେହି ବାଣୀ
କହିଲେ ହରଷଭରେ ଋଷିକୁଳମଣି
ଶୁଣନ୍ତୁ ମୋ କହିବାର ଅଯୋଧ୍ୟା ରାଜନ
ପ୍ରତିଗ୍ରହ ରାଜା ମଧ କରିବ ଗ୍ରହଣ
ଏଥିରେ ହେ ରାମ କିଛି ଦୋଷ ନ ହୋଇବ
ଋଷି ଯେବେ ସ୍ନେହଭରେ ଯାଚିକରି ଦେବ
ତ୍ରିଲୋକ ତାରଣ ପାଇଁ ସମର୍ଥ ଆପଣ
ମୁହିଁ ଅଟଇ ତପସ୍ୱୀ ଆବର ବ୍ରାହ୍ମଣ
ନିଜପାଇଁ ନିଯେ ମୁହିଁ ହୁଏ ସମର୍ପିତ
କରନ୍ତୁ ତା ଅଙ୍ଗୀକାର ଆହେ ନରନାଥ
ଋଷିଙ୍କର ଶୁଣି ଏହି ବିନୀତ ବଚନ
କହିଲେ ଅତି ଆଦରେ ଜାନକୀ ରମଣ
ଏ ମହତ୍ ଜ୍ଞାନ ରକ୍ଷା ସବୁ କ୍ଷତ୍ରିୟର
ଉଚିତ ଅଟଇ ସଦା ଆହେ ଋଷିବର
ଦାନ ଯେବେ ବିପ୍ର ଜଣେ ଯାଚି ଦେଉଥିବ
କ୍ଷତ୍ରିୟ ହୋଇ କି ତାହା ଗ୍ରହଣ କରିବ
ଏହା କି ସଂଭବ ଋଷି କେବେ ହୋଇପାରେ
ଉଚିତେ କହନ୍ତୁ ଏହା ବିଚାରି ଚିତ୍ତରେ
ଏ ସମୟେ ଏ କଥାର ସମାଧାନ ପାଇଁ
ଯୋଗ୍ୟ ହୋଇ ତୁମଠାରୁ ଜଗତେ କେ ନାହିଁ
ସଂପୂର୍ଣ୍ଣ ଯୋଗ୍ୟ ତୁମ୍ଭେ ଏ ବ୍ୟବସ୍ଥା ଦାନରେ
ଉଚିତ ବ୍ୟବସ୍ଥା ତେଣୁ ପ୍ରଦାନନ୍ତୁ ମୋରେ
ପୁଲସ୍ତ୍ୟ କହିଲେ ଶୁଣ ଶାନ୍ତନୁ କୁମର
ଶୁଣି ପରେ ଯାହା କଲେ ଜାନୀକଙ୍କ ବର
ମୁନିଙ୍କ ସଂତୋଷ ପାଇଁ ମୁନୀଙ୍କ ପ୍ରାର୍ଥନା
ରାମ ଭଗବାନ ଭଲେ କରି ବିଚାରଣା
ମହାତ୍ମା ବୋଲିଣ କୁମ୍ଭ ସୁତଙ୍କୁ ବିଚାରି
ପ୍ରତିଗ୍ରହ କଲେ ଦାନ ସ୍ୱକର ପ୍ରସାରି
ସେହି ଆଭରଣ କରେ ଧରି ରଘୁପତି
ଦେଖି ତାକୁ ଆଚମ୍ଭିତ ହୋଇଗଲେ ଅତି
ଅତି ଦୀପ୍ତିବନ୍ତ ଅଟେ ସେହି ଆଭରଣ
ଅଟଇ ଲୋକ ବିସ୍ମୃତ ତାହାର ନିର୍ମାଣ

ଝଟକୁଥିଲା ତା ତେଜ ରବି ରଶ୍ମିପରି
ସେ ତେଜକୁ ଜଗତର କିଛି ନୁହେଁ ସରି
ଶତ୍ରୁ ଚିତ୍ତ ବିମୋହନ ଗୁଣ ଥିଲା ତାର
ଜାଣି ତା ଗ୍ରହଣକଲେ କୌଶଲ୍ୟା କୁମର
ଆଦରେ ଶ୍ରୀରାମ ତାକୁ ହାତରେ ଧଇଲେ
ଘଡିଏଯାଏଁ ମୁନିଙ୍କୁ ନିରୀକ୍ଷଣ କଲେ
ତଦପରେ ବାରମ୍ବାର କରିଣ ବିଚାର
ଜାଣିଲେ ସେ ଆଭରଣ ଅତି ଚମତ୍କାର
ଉତ୍ତମ ମୁକ୍ତାରେ ତାହା ହୋଇଛି ନିର୍ମିତ
ମୁକ୍ତାର ଗଠନ ଅଟେ ଅଳାକୋଳି ମତ
ଜମ୍ବୁନଦ ସହ ହୀରା ନୀଳା ଓ ମାଣିକ
ବିଦ୍ରୁମରେ ତାହା ଦିଶୁଥିଲା ଝକଝକ
ପଦ୍ମରାଗ ମଣି ସହ ବୈଦୁର୍ଯ୍ୟ ଗୋମେଦ
ଭିନ୍ନ ଭିନ୍ନ ସ୍ଥାନେ ଥିଲା ଭୂଷଣେ ନିବଦ୍ଧ
ପୁଷ୍ପରାଗ ଥିଲା ମଧ ମଝିରେ ତାହାର
ବାରି ହୋଇ ଦିଶୁଥିଲେ ସର୍ବେ ଚମତ୍କାର
ସ୍ୱଷ୍ଟ ହୋଇଥିଲା ତାର ବିଭକ୍ତ ସୌନ୍ଦର୍ଯ୍ୟ
ତାହାକୁ ଦେଖି ସୌନ୍ଦର୍ଯ୍ୟ ହରାଇବ ଧୈର୍ଯ୍ୟ
ବହୁତ ଆୟାସେ କରି ବହୁତ ବିଚାର
ବିଶ୍ୱକର୍ମା କରିଥିଲେ ନିର୍ମାଣ ତାହାର
ପରମ ପ୍ରୀତିରେ ତାକୁ ଦେଖି ରଘୁପତି
ମନେ ମନେ ବିଚାରିଲେ ଆଶ୍ଚର୍ଯ୍ୟରେ ଅତି
ଆଜିଯାଏଁ ଏହିପରି ରତ୍ନ ଆଭରଣ
ଦେଖି ନଥିଲା ମୋହର ଏ ବେନି ନୟନ
କହିଲେ ଋଷିଙ୍କୁ ତେବେ ସୀତା ହୃଦବାସ
ଅଦ୍ଭୁତ ହୋଇ ମୋ ହୃଦେ ଏ କରିବ ବାସ
ନଥିବ ଏପରି ରତ୍ନ କେଉଁ ନୃପଠାରେ
ଆଜୀବନ ରହିବ ଏ ମୋହର ହୃଦରେ
ଆଶ୍ଚର୍ଯ୍ୟ ଏ ଆଭରଣ କାହୁଁଥିଲ ପାଇ
କହ ତୁମ୍ଭଙ୍କୁ ଏ ରତ୍ନ କିଏ ଥିଲା ଦେଇ
ତୁମ୍ଭର ହାତକୁ ଏହା କିପରି ଆସିଲା
ଜାଣିଥିଲେ କହ ଏହା କିଏ ଗଢ଼ିଥିଲା
ଆହେ ଋଷି କୌତୁହଳ ବଢ଼ିବାରୁ ମୋର
କରୁଛି ଏ ପ୍ରଶ୍ନ ଶୁଣ ଋଷିକୁଳ ବର
କରତରେ ଅଛି ଭୂଷା ତାର ପ୍ରତିବିମ୍ବ
କରପୃଷ୍ଠେ ଦିଶେ ଏହା କେବେ କି ସମ୍ଭବ

ଆହେ ଋଷି ମୋ ପକ୍ଷେ ଏ ଅତି ଚମତ୍କାର
ଜାଣିଥିଲେ ଦିଅ ମୋର ପ୍ରଶ୍ନର ଉତ୍ତର
କହିଲେ ଅଗସ୍ତ୍ୟ ଶୁଣି ଶ୍ରୀରାମ ବଚନ
ହେ ରାମ ଏ କଥା ଅଟେ ଅତି ପୁରାତନ
ଏ ଘଟଣା ଅଟେ ଏକ ତ୍ରେତୟାଯୁଗର
ପ୍ରାଚୀନ କେବଳ ନୁହେ ଅତି ଚମତ୍କା
ଯେବେ ତାହା ମୋର ଜ୍ଞାନ ଗୋଚରେ ଆସିଲା
ତେବେ ଦ୍ୱାପର ଯୁଗର ଶେଷ ହୋଇଥିଲା
ସେହି କଥା କହେ ଶୁଣ ଆହେ ରଘୁପତି
ଶୁଣିବାକୁ ମଧ୍ୟ ତାହା ଚମତ୍କାର ଅତି
ପୂର୍ବେ ତ୍ରେତା ଯୁଗେ ଥିଲା ବିସ୍ତୃତି କାନନ
ବିସ୍ତାର ତାହାର ରାମ ଅଟେ ଶତଯୋଜନ
ଶୂନ୍ୟଥିଲା ସେ କାନନ ବ୍ୟାଘ୍ର ମୃଗାଦିରେ
ତା ସମ ନିର୍ଜନ ସ୍ଥାନ ନଥିଲା ବିଶ୍ୱରେ
ନିର୍ଜନ ତଥାପି ଅଟେ ଅତ୍ୟନ୍ତ ଶୋଭିତ
ତପସ୍ୟା ପାଇଁ ଅଥବା ବ୍ରହ୍ମାଙ୍କ ନିର୍ମିତ
ନେତ୍ରରେ ପଡ଼ିଲା ଥରେ ସେ ବନ ମୋହର
ଫଳ ଫୁଲ ମୂଳେ ପୂର୍ଣ୍ଣ ଦେଖିଲି ଆବର
ଦେଖିଲି ସେ ବନମଧ୍ୟେ ରାମ ଏକ ସ୍ଥାନ
ମାଡ଼ିବସି ଅଛି ସେ ବନର ପାଞ୍ଚଯୋଜନ
ନାନାବିଧି ଶାକରେ ସେ ହୋଇଛି ପୂରିତ
ହଂସ କୋକ କାରଣ୍ଡବେ ହୋଇ ସୁଶୋଭିତ
ସୁରୁଚିର ଏକ ସର ତାର ନିକଟରେ
ପ୍ରାତେ ହେଲି ଉପସ୍ଥିତ ସେ ସର ପାଖରେ
ଦେଖିଲି ତା କୂଳେ ପଡ଼ିଅଛି ଏକ ଶବ
ଖେଳୁଥିଲା ଅଙ୍ଗେ ଯୁବାବସ୍ଥାର ପ୍ରଭାବ
ବୃଦ୍ଧତ୍ୱ ତା ଦେହେ କରି ନଥିଲା ପ୍ରବେଶ
ସୁଷମା ସମସ୍ତ ଅଙ୍ଗେ ଥିଲା ସୁପ୍ରକାଶ
ଦେଖି ତାକୁ ରାମ ମୁହିଁ ତା ପାଖକୁ ଗଲି
ଜାଣିବାକୁ ସେ ବିଷୟ କ୍ଷଣେ ଧ୍ୟାନ କଲି
ଭାବିଲି ଅଟଇ ଏହା ନିର୍ଜନ କାନନ
ସରୋବର ତଟ ମଧ୍ୟ ଜନପ୍ରାଣୀ ଶୂନ୍ୟ
ବସି ତହିଁ ବହୁଭାବେ କଲି ବିଚରଣା
ଦେବ କି ମାନବ କିନ୍ତୁ ନପଡ଼ିଲା ଜଣା
ମୁନି ଯେବେ କାହୁଁ ସେହି ଏଠାକୁ ଆସିଲା
ଅବା କେଉଁ ରାଜପୁତ୍ର ଭୁଲେ ଆସି ମଲା
ତଥାପି ଆସିବା ଏଥି ନୁହଇ ସଂଭବ
ଆଗତ ହେଲା ହୃଦକୁ ପୁଣି ଏହି ଭାବ
ଆସି ଏଥି ମରିଥିବ କାଲି ନିଶୀଥରେ
ଅବା ମରିଗଲା ଆସି ଆଜି ପ୍ରଭାତରେ
ସେପରି ହେଲେ ମୁଁ ତାହା ଜାଣନ୍ତି ନିଶ୍ଚୟ
ନେଇଥିଲି ଯେଣୁ ଅତି ନିକଟେ ଆଶ୍ରୟ
ଭାବୁଥିଲି ଏହିପରି ସେହି ମୁହୂର୍ତ୍ତରେ
ଆଶ୍ଚର୍ଯ୍ୟ ଘଟଣା ଏକ ଦେଖିଲି ସେଠାରେ
ମନୋଜବ ଯାନ ଏକ ସାରସେ ବାହିତ
ଆହେ ରାମ ତହିଁ ତେବେ ହେଲା ଉପସ୍ଥିତ
ଅତି ଉଦରା ବିମାନ ଅତ୍ୟନ୍ତ ସୁନ୍ଦର
ବିଶାଳ ଅଟଇ ମଧ୍ୟ ଆକାର ତାହାର
ସହସ୍ରେ ଅପ୍‌ସରୀ ସ୍ଥିତଥିଲେ ସେ ଯାନରେ
ସେହି ସଂଖ୍ୟାରେ ଗନ୍ଧର୍ବ ଥିଲେ ତା ମଧରେ
ଗନ୍ଧର୍ବଙ୍କ ରୂପ ଅଟେ ଅତୀବ ସୁନ୍ଦର
ତା ମଧରେ ଥିଲା ରାମ ଜଣେ ମାତ୍ର ନର
ଅପସରାକୁଳ ନାଚୁଥିଲେ ଗୀତଗାଇ
କିଂ ପୁରୁଷେ ହସୁଥିଲେ ବାଇଦ ବଜାଇ
ତଦପରେ ଯେଉଁମାନେ ଥିଲେ ବିମାନରେ
ଦେଖିଲି ଓହ୍ଲାଇ ଯାନୁ ଆସିଲେ ଧରାରେ
ଆସିଲେ କ୍ରମେ ସେମାନେ ଶୁଣନ୍ତୁ ରାଘବ
ସେହିସ୍ଥାନେ ଯେଉଁଠାରେ ପଡିଥିଲା ଶବ
ସ୍ନାନକୃତ୍ୟ ସାରି ପ୍ରଥମରେ ସରୋବରେ
ଉପସ୍ଥିତ ହେଲା ନର ଶବର ପାଖରେ
ଅତି ଆଶ୍ଚର୍ଯ୍ୟ ତା ଶୁଣ ଜାନକୀ ରମଣ
ଦେଖିଲି ଶବର ମାଂସ ସେ କଲା ଭକ୍ଷଣ
ଇଚ୍ଛା ଅନୁରୂପେ ମାଂସ କରିଣ ଆହାର
ପଡିଥିଲା ହାଡ଼ ସବୁ ପିଇଲା ରୁଧିର
ଗନ୍ଧର୍ବ ଅପ୍‌ସରା ରାମ ଯେତେ ଆସିଥିଲେ
ସ୍ନାନପରେ ବସି ସେହି ବିମାନେ ଚଳିଲେ
କେବଳ ସେ ମନୁଷ୍ୟଟି ସେହିଠାରେ ଥିଲା
ଦେବତା ପରାଏ ତାର କାନ୍ତି ଦିଶୁଥିଲା
ଶ୍ରୀ ସଂପନ୍ନ ହୋଇଥିଲା ତାର କଳେବର
ଦେଖି ପୁଛିବାକୁ ତାକୁ ମୁଁ ହେଲି ଆତୁର
ସମ୍ବୋଧନ କରି ତାକୁ କହିଲି ଆଶ୍ୱାସି
ହେ ମହାତ୍ମା ତୁମେ-କିଏ ଅଟ ସ୍ୱର୍ଗବାସୀ

କିପରି ପୁଛିବି ତାହା ଦେଖିଲି ମୁଁ ଯାହା
ଭକ୍ଷଣ ଯା କଲ ଅତି ଗର୍ହିତଟି ଏହା
ଉତ୍ତମ କିପରି ହେବ ତୁମ୍ଭର ଏ ଗତି
କହିଲା ସେ ନର ତାହା ଶୁଣି ସୀତାପତି
ଆହେ ଦ୍ୱିଜ ଶୁଣ ମୋର କହିବା ବଚନ
ପଚାରିଲ ଯେବେ କହେ ଏହାର କାରଣ
ବର୍ଣ୍ଣନା କରିବି ଯାହା ସୁଖ ଦୁଃଖ ମୋର
ମନ ଦେଇ ଶୁଣ ତାହା ଆହେ ଦ୍ୱିଜବର
ନରପତି ଥିଲେ ପୂର୍ବେ ବିଦର୍ଭ ଦେଶରେ
ବାସୁଦେବ ନାମେ ଖ୍ୟାତ ସେ ଥିଲେ ଲୋକରେ
ଅଟନ୍ତି ସେ ପିତା ମୋର ଅତି ଯଶସ୍କର
ନୀତିବନ୍ତ ଜ୍ଞାନୀ ପୁଣି ଧର୍ମଧୁରନ୍ଧର
ପ୍ରଜା ପାଳନରେ ତାଙ୍କୁ କେହି ନୁହେଁ ସରି
ଥିଲା ତାହାଙ୍କର ଦ୍ୱିଜ ଦୁଇଗୋଟି ନାରୀ
ଦୁଇଟି ତନୟ କଲେ ସେହି ଦୁହେଁ ଜାତ
ତା ମଧ୍ୟରେ ବଡ଼ ମୁହିଁ ନାମ ମୋର ଶ୍ୱେତ
ଅନ୍ୟମାତାଠାରୁ ଯେଉଁ ସଂତାନ ଜନ୍ମିଲା
ସୁରଥ ନାମରେ ସେହୁ ଲୋକେ ଖ୍ୟାତହେଲା
ଯେତେବେଳେ ପିତାଙ୍କର ହୋଇଲା ମରଣ
ସମବେତ ହୋଇ ସର୍ବ ପୁରବାସୀଗଣ
ନରପତି ରୂପେ ମୋତେ ଅଭିଷେକ କଲେ
ରାଜ୍ୟ ପାଳନର ଭାର ମୋତେ ସମର୍ପିଲେ
ସେହିଦିନୁ ରାଜ୍ୟହେଲା ମୋଦ୍ୱାରା ଶାସିତ
ଅତି ଯତ୍ନରେ ଆବର ଧର୍ମର ସହିତ
ବହୁ ସହସ୍ର ବରଷ ଗତ ହୋଇଗଲା
ମୋହର ଶାସନେ ତ୍ରୁଟି କିଛିହିଁ ନଥିଲା
ପୁତ୍ରସମ ପରଜାଙ୍କୁ ମୁହିଁ ପାଳୁଥିଲି
ବିଧିବଶେ ବୈରାଗ୍ୟର ଅଧୀନ ହୋଇଲି
ବୈରାଗ୍ୟଠାରୁ ଅଧିକ ଭବେ କିଛି ନାହିଁ
ଏ ଭାବ ଆସିଲା ହୃଦେ ଆହେ ବିପ୍ର ସାଇଁ
ବୈରାଗ୍ୟରେ ମୃତ୍ୟୁ ହେଉ ବିଚାରି ଚିତ୍ତରେ
ପରବେଶ ହେଲି ଦ୍ୱିଜ ଆସି ଏ ବନରେ
ଏହି କାନନରେ ଘୋର ତପସ୍ୟା ଆଚରି
ହେ ବିପ୍ର ଦଶହଜାର ବର୍ଷ ଦେଲି ସାରି
ପରମ ଶୁଭଦ ହେଲା ସେ ତପସ୍ୟା ମୋର
ବ୍ରହ୍ମଧାମ ପ୍ରାପ୍ତ ହେଲି ଆହେ ଦ୍ୱିଜବର
ସ୍ୱର୍ଗରେ ରହିଲି କିନ୍ତୁ ଏପରି ହୋଇଲା
ବହୁଭାବେ କ୍ଷୁଧା ତୃଷା ମୋହର ବଢ଼ିଲା
ଇନ୍ଦ୍ରିୟଗଣ ଶାସନା ମୋର ନ ମାନିଲେ
ପୂର୍ବଠାରୁ ଅଧିକରେ ବ୍ୟଥିତ ହୋଇଲେ
ତଦପରେ ଯାହା ହେଲା ଶୁଣ ଦ୍ୱିଜବର
ଇନ୍ଦ୍ରିୟର ବ୍ୟଥା ମୋର ଦେଖି ଅତି ଘୋର
ସେହି ବାଧା ଆଉ ମୁହିଁ ସହି ନ ପାରିଲି
ଦିନେ ବିପ୍ର ପିତାମହ ବ୍ରହ୍ମପାଶେ ଗଲି
କହିଲି ହେ ପଦ୍ମଯୋନୀ ସ୍ୱର୍ଗପୁର ଏହି
ଏ ପୁରରେ କ୍ଷୁଧା ତୃଷା କାର ହୁଏନାହିଁ
ପରିପାକ ନୋହିବାରୁ କେଉଁ କର୍ମମୋର
ଏଠାରେ କ୍ଷୁଧା ତୃଷାରେ ମୁଁ ହୁଏ ଆତୁର
ପିତାମହ ଘେନି ଏବେ ମୋର ନିବେଦନ
ବତାଇ କହନ୍ତୁ ମୋତେ ତାହାର କାରଣ
ଏହି ସ୍ୱର୍ଗପୁରେ ମୋର କିଗତି ହୋଇବ
ସୁଦୟାକରି କହନ୍ତୁ ଆହେ କଞ୍ଜଭବ
ପିତାମହ ମୋହଠାରୁ ଶୁଣି ଏହି ବାଣୀ
ନୟନ ବୁଜି ଧ୍ୟାନରେ ବସିଲେ ସେକ୍ଷଣି
ଭାଙ୍ଗି ଧ୍ୟାନ ତଦପରେ ବିଧାତା କହିଲେ
ସ୍ୱଦେହ ଖାଦକ ତୁମେ ଜାଣିଲି ମୁଁ ଭଲେ
ତିନି ତିନି ନିଯେ ନିଜ ମାଉଁସ କାଟିବ
ଖାଇବ ଯଦ୍ୟପି ତୁମ୍ଭ କ୍ଷୁଧା ଶାନ୍ତ ହେବ
ବଢ଼ାଇଅଛ ଶରୀର ଉତ୍ତମ ତାପରେ
ହୋଇଅଛ ପରିପୁଷ୍ଟ ତପ ପ୍ରଭାବରେ
ମାତ୍ର ଶ୍ୱେତ ଶୁଣ ରୀତି ଅଟେ ଏ ଧରାର
ଯେ ଯହା ଦିଅଇ ତାହା ସେ ପାଏ ନିକର
ପୂରୁବ ଜନ୍ମରେଥିଲ ତୁମେ ଅଧୀକାରୀ
ଫେରାଇ ଦେଇଛ ଦ୍ୱାରୁ ବହୁତ ଭିଖାରୀ
ଆଗ୍ରହେ ଆସି ଭିଖାରୀ ଭିକ ମାଗେ ଯେବେ
ଫେରାଇଛ କଟୁ କହି ତାଙ୍କୁ ବହୁଭାବେ
ଉତ୍ତମ ଆହାର ଖାଇ ନିଜର ଶରୀର
ବଢ଼ାଇଲ ତୁମେ ତେବେ ହୋଇ ନରବର
କରିବା ନିମନ୍ତେ ପୁଷ୍ଟ ଆପଣା ଶରୀର
ଚିନ୍ତା କରୁଥିଲ ନୃପ ତୁମେ ନିରନ୍ତର
ହେ ରାଜେନ୍ଦ୍ର ତେଣୁ ମୁହିଁ କହୁଛି ତୁମ୍ଭଙ୍କୁ
ଖାଉଥାଅ ନିଯେ କାଟି ନିଜ ଶରୀରକୁ

ତହିଁରେ ତୃପ୍ତି ତୁମର ହୋଇବ ସାଧନ
ତୁମପାଇଁ ଏହା ଅଟେ ଉଚିତ ବିଧାନ
କମଳଯୋନୀ କହନ୍ତେ ମୋତେ ଏହି ବାଣୀ
କହିଲି ତେବେ ମୁଁ ତାଙ୍କୁ ଆହେ ଦ୍ୱିଜମଣି
ନିଜ ଦେହ କାଟି ମାଂସ ଥରେ ଦେଲେଖାଇ
ପରେ କ୍ଷୁଧା ତୃପ୍ତି ହେବ କିପରି ଗୋସାଇଁ
ତେଣୁ ଆହେ ଧାତା ମୋର ଘେନିନିବଦେନ
ସେଥିପାଇଁ ଅନ୍ୟ କିଛି କରନ୍ତୁ ବିଧାନ
ଅକ୍ଷୟ ଯାହା ହେବ ତା ଦିଅନ୍ତୁ ଆପଣ
କରିପାରେ ଯାହା ସଦା କ୍ଷୁଧା ନିବାରଣ
ମୋର ଭକ୍ଷ ପାଇଁ ଯାହା କରିଛ ନିର୍ଦ୍ଦେଶ
ସେଥିରେ ତୃପ୍ତି ମୋହର ହେବନାହିଁ ଲେଶ
ଶୁଣି ମୋର ଏହି ପ୍ରଶ୍ନ କମଳ ଆସନ
କହିଲେ ହସି ଏପରି ଶୁଣହେ ବ୍ରାହ୍ମଣ
ତୁମ୍ଭର ଅଙ୍ଗରୁ ମାଂସ ଯେତେ କଟାହେବ
ତା ପରଦିନକୁ ପୁଣି ସେତିକି ବଢ଼ିବ
ତୁମ ଦେହୁ ମାଂସ କେବେ ଶେଷ ହେବନାହିଁ
କରିଛି ମୁଁ ତା ବିଧାନ ଆହେ ନରସାଇଁ
କହିଲେ ବ୍ରହ୍ମା ତାରେ ଦେଇ ପ୍ରବୋଧନ
ଆହେ ଶ୍ୱେତ ଶୁଣ ମୋର କହିବା ବଚନ
ଶବ ହୋଇ ତୁମ୍ଭେ ବନେ ପଡ଼ି ରହିଥିବ
କ୍ଷୁଧା ତୃପ୍ତି ପାଇଁ ତୁମେ ତୁମକୁ ଖାଇବ
ଖାଦ୍ୟ ଶେଷ ହେବାପରେ ଆହେ ନରବର
ମାଂସେ ପୁଣି ପୂର୍ଣ୍ଣହେବ ଶବର ଶରୀର
ଶହେ ବର୍ଷ ପାଇଁ ନୃପ ହେବ ଏହିପରି
ମୋ ଏହି କଥା ଭଲେ ହୃଦେ ଥିବଧରି
ଶ୍ୱେତରଣ୍ୟ ନାମେ ବନ ହେବ ପରିଚିତ
ଶହେ ବର୍ଷ ଯାଏ ହେବ ଏହି ଆଚରିତ
କଞ୍ଜସୁତ କହି ଏହା ନିର୍ଦ୍ଦେଶ ଏବନ
କହିଲେ ଏ ଆଶ୍ରା ତବ ଅଟେ ହେ ରାଜନ
ଶହେ ବର୍ଷ ପୂର୍ଣ୍ଣ ହେବ ନୃପ ଯେଉଁଦିନ
ସେଠାକୁ ଆସିବେ ଋଷି ଅଗସ୍ତି ସେ ଦିନ
ତୁମ୍ଭେ ନୃପ ହେବ ନେତ୍ର ଗୋଚର ତାଙ୍କର
ସେଦିନ ହୋଇବ ତୁମେ କଷ୍ଟରୁ ଉଦ୍ଧାର
ଦୁର୍ଦ୍ଧର୍ଷ ଅତି ଅଗସ୍ତ୍ୟ ଜାଣ ନରପତି
ତାହାଙ୍କ ଆଗେ କହିବ ଏ ସବୁ ସଙ୍ଗତି
ସେ ତୁମକୁ ଏ କଷ୍ଟରୁ କରିବେ ମୁକତ
ଅନ୍ୟଥା ନହେବ ମୋର କଥା ନରନାଥ
ଶୁଣ ନୃପ ସେହି ଋଷି ଯଦି ବିଚାରିବେ
ସୁର ଅସୁର ଇତ୍ୟାଦି କ୍ଷଣକେ ନାଶିବେ
ଆହେ ବିପ୍ର ସେହି ଦିନୁ ରହେ ମୁଁ ଏଠାରେ
ଅଗସ୍ତି ମୁନିଙ୍କ ଶୁଭାଗମ ଅପେକ୍ଷାରେ
ହେବ କେବେ ଆଗମନ ମହାମୁନିଙ୍କର
ନିଶି ବାସରେ ଜାଣ ତା ଚିନ୍ତା ଅଟେ ମୋର
ଏହିପରି ଶହେ ବର୍ଷ ହେଲାଣି ଅତୀତ
ଆଉ କେ ମୋ ନାହିଁ ଗତି ତାହାଙ୍କ ବ୍ୟତୀତ
ଅବଶ୍ୟ ସେ ଋଷି ମୋତେ କରିବେ ରକ୍ଷଣ
ଶୁଣହେ ଅଯୋଧ୍ୟା ନୃପରାମ ଭଗବାନ
ହେ ରାମ ତା ମୁଖୁ ଏହି ବଚନ ଶୁଣିଲି
କୁତ୍ସିତ ଆଧାର ତାର ଆବର ଦେଖିଲି
ଉଦେ ହେଲା ହୃଦେ ମୋର କରୁଣା ଅପାର
ବିଚାର କଲି ହୃଦରେ ଉଦ୍ଧାର ତାହାର
ମାଂସ ଭକ୍ଷଣୁ ସେହଦିନୁ କରି ନିବାରିତ
ସୁଧା ଭୋଜୀରୂପେ ତାକୁ ସ୍ୱର୍ଗେ କଲି ସ୍ଥିତ
କ୍ଷୁଧା ତାର ସେହିଦିନୁ ନାଶ ହୋଇଗଲା
ମାଂସ ପ୍ରତି ତାର ଲୋଭ ତେବେ ଶେଷହେଲା
କହିଲି ତେବେ ତାକୁ ମୁଁ ଆହେ ରଘୁବର
ନିଅ ମୋହଠାରୁ ଇଚ୍ଛା ଅନୁରୂପ ବର
ଅତ୍ୟନ୍ତ ପ୍ରୀତି ମୋହର ଅଛି ତୁମଠାରେ
କହିଲା ଶ୍ୱେତ ତାପରେ ମୋରେ ଯୋଡ଼ିକରେ
କହିଲା ତେବେ ସେ ନୃପ ଆହେ ବିପ୍ରବର
କଥା କି ମିଛ ହୋଇବ ପିତାମହଙ୍କର
ପଚାରି ନଥିଲେ ହେଲେ କମଳ ସଂଭବ
କହିଥିଲେ ମୋତେ ଏହି କଥା ବହିଭାବ
ମିତ୍ର ବରୁଣ ବୀର୍ଯ୍ୟରୁ କୁମ୍ଭରୁ ଜନମ
ଦେଖିବ ନିଶ୍ଚୟ ତାଙ୍କୁ ତୁମ୍ଭେ ନୃପୋତ୍ତମ
ପାଇନାହିଁ ମାତ୍ର ଆଜିଯାଏ ତାଙ୍କ ଦେଖା
ସେ ମୋହର ପ୍ରାଣ ଦ୍ୱିଜ ସେ ମୋହର ସଖା
ଶ୍ୱେତଠାରୁ ଶୁଣି ଏହା ସେ ଜାନକୀବର
କହିଲି ମୁଁ ସେ ଅଗସ୍ତି ଆହେ ନୃପବର
ଶ୍ୱେତ ନୃପତି ମୋଠାରୁ ଶୁଣି ଏହି ବାଣୀ
ଦଣ୍ଡାହୋଇ ପଦପ୍ରାନ୍ତେ ପଡ଼ିଲା ସେ କ୍ଷଣି

ଆହେ ରାମ ତେବେ ତାଙ୍କୁ ତଳୁ ଉଠାଇଲି
ପୁଣି ଅତି ସ୍ନେହଭରେ ତାଙ୍କୁ ପଚାରିଲି
କହ ନୃପ କି କରିବି ଏବେ ମୁଁ ତୁମ୍ଭର
ଶୁଣି ସେ ଶ୍ୱେତ କହିଲା ହୋଇ ଯୋଡ଼କର
ଅନୁଗ୍ରହ ମୋରେ ଯେବେ କରିଛ ଆପଣ
ଆଜ୍ଞୁ ମୋର ବନ୍ଦହେଉ ଏ ନିନ୍ଦ୍ୟ ଭୋଜନ
ହେୟ ଏ କର୍ମରୁ ମୋତେ କରନ୍ତୁ ଉଦ୍ଧାର
ସ୍ୱର୍ଗଲୋକ କ୍ରମେ କ୍ଷୟ ହେଉଛି ମୋହର
ତଦପରେ ଆହେ ରାମ ସେହି ନୃପସୁତ
ମୋର ପାଦେ ପ୍ରଣିପାତ କରିଣ ବହୁତ
ପ୍ରତିଗ୍ରହ ପାଇଁ ଏହି ରତ୍ନ ଆଭରଣ
ଦେଲା ଯେଣୁ ତାହା ମୁହିଁ ନକଲି ଗ୍ରହଣ
କାନ୍ଦି କହିଲା ତା ଦେଖି ସେହି ନରବର
ହେ ମହର୍ଷି ଏ ଭୂଷଣ କରନ୍ତୁ ସ୍ୱୀକାର
ଜାଣେ ମୁଁ ଏହାର ଯୋଗ୍ୟ ଅଟନ୍ତି ଆପଣ
ତୁମ୍ଭପ୍ରତି ମୋ ଭକ୍ତିର ଏହି ନିଦର୍ଶନ
ହେ ମହର୍ଷି ଏ ଭୂଷଣ ଅଟଇ ଅଦ୍ଭୁତ
ଭକ୍ଷ, ସୁନା, ବସ୍ତ୍ର, ଧନ ହୁଏ ଏଥୁ ଜାତ
ଯେତେବେଳେ ଯେ କାମନା ଉଦୟ ହୋଇବ
ଏହି ଆଭରଣୁ ତାହା ସେକ୍ଷଣି ମିଳିବ
ପ୍ରଦାତା ଅଟେ ଏ ଭୂଷା ସମସ୍ତ ଭୋଗର
ଏହାର ଏ ଗୁଣ ଅଟେ ଅତି ଚମତ୍କାର
ଆହେ ଋଷି ମୋର ପ୍ରାଣ ଅଟନ୍ତି ଆପଣ
ତବ କୃପା କରିଅଛି ମୋ ଶୁଭ ସାଧନ
କହିଲେ ଅଗସ୍ତି ଶୁଣ ଦଶରଥ ସୁତ
ସେହି ନୃପଙ୍କ ବଚନ କରି କର୍ଣ୍ଣଗତ
ତାର ଉଦ୍ଧାର ଉପାୟ ଭାବୁଥିଲି ଯେଣୁ
ତା କଥା ଅନ୍ୟଥା କରି ନପାରିଲି ତେଣୁ
ଲାଳସା ନଥିଲା ମୋର ତହିଁ ରାମରାଣ
ତା ସୁଖ ଅଟେ ମୋ ପ୍ରତି ଗ୍ରହର କାରଣ
ଯେଉଁକ୍ଷଣି ଏ ଭୂଷଣ ସେ ମୋ କରେ ଦେଲା
ମାନବିକ ଦେହ ତାର ଅନ୍ତର୍ହିତ ହେଲା
ରାଜଋଷି ରୂପେ ସେହି ମୋର ସମ୍ମୁଖରେ
ଉଭାହେଲା ହେ ରାଘବ ସେହି ମୁହୂର୍ତ୍ତରେ
ମୁଖ ହୋଇଥିଲା ତାର ଅତି ସୁ ପ୍ରସନ୍ନ
ହେ ରାମ ଆସିଲା ତେବେ ସ୍ୱର୍ଗୀୟ ବିମାନ
ପ୍ରଣାମ କରି ମୋ ପାଦେ ସେହି ଋଷିବର
ତ୍ରିଦିବ ପ୍ରୟାଣ କଲେ ହେ ଜାନକୀ ବର
ନେଲେ ଇନ୍ଦ୍ର ସ୍ୱର୍ଗେ ତାଙ୍କୁ କରିଣ ବରଣ
ସ୍ୱେତ ପ୍ରଦତ୍ତ ହେ ରାମ ଏ ସେ ଆଭରଣ
ଆଜିଯାଏ ଏହି ମୋର ପାଶେ ଥିଲା ରହି
ଏହାର ପ୍ରଭାବ ସବୁ ଜାଣିଅଛି ମୁହିଁ
ଏ ଘଟଣା ଅଟେ ରାମ ବିଶେଷ ପ୍ରାଚୀନ
ପଚାରିଲ ଯେଣୁ ତୁମ୍ଭେ କଲି ତା ବର୍ଣ୍ଣନ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ପଦ୍ମପୁରାଣ ମଧ୍ୟରେ ଏ ଅଧ୍ୟାୟ ସାର
ଶେଷହେଲା ଏଥି ଏହି ଅଧ୍ୟାୟ ଷୋଡ଼ଶ
ସୁଧୀଗଣ କର କ୍ଷମା ଗୋପୀନାଥ ଦୋଷ

ଇତି ଶ୍ରୀ ପଦ୍ମପୁରାଣେ
ସୃଷ୍ଟିଖଣ୍ଡେ ଭୀଷ୍ମ ପୁଲସ୍ତ୍ୟ
ସମ୍ବାଦେ ଶ୍ରୀ ରାମ
ଅଗସ୍ତ୍ୟାଶ୍ରମ ନାମ
ନାମ ଷୋଡ଼ଶୋଧ୍ୟାୟ ।



## ସପ୍ତଦଶ ଅଧ୍ୟାୟ

### ପଦ୍ମର ଆବିର୍ଭାବ ବର୍ଣ୍ଣନ

ଶାନ୍ତନୁସୁତ ତାପରେ କହିଲେ ଆଦରେ
ହେ ପୁଲସ୍ତ୍ୟ ଋଷି କହ ବିଚାରି ଚିତ୍ତରେ
ହୋଇଥିଲା ଆବିର୍ଭାବ ପଦ୍ମର କିପରି
କହନ୍ତୁ ସେ କଥା ମୋତେ ଆହେ ତପଚାରୀ
ଭୀଷ୍ମଙ୍କର ସେହି ପ୍ରଶ୍ନେ ଋଷିକୁଳ ବର
କହିଲେ କହୁଛି ଶୁଣ କୁରୁକୁଳ ବୀର
ତୁମ୍ଭର ଏ ପ୍ରଶ୍ନ ବ୍ରହ୍ମା ଭାବ ଉତ୍ପାଦକ
ପୁଣି ନାରାୟଣ ଭକ୍ତି ଭାବର ପ୍ରତୀକ
ତୁମ୍ଭ ବଂଶ ଅନୁରୂପ ଏ ପ୍ରଶ୍ନ ତୁମ୍ଭର
ଯା କହିବି ତାହା ଉପଦେଶ ବ୍ୟାସଙ୍କର
ଦ୍ୱୈପାୟନଙ୍କ ମୁଖରୁ ଶୁଣିଥିଲି ଯାହା
କହିବି ହେ ଭୀଷ୍ମ ଅଟେ ଶ୍ରେଷ୍ଠ ଜ୍ଞାନ ତାହା
ତବ ପୂର୍ଣ୍ଣଅଟେ ପୁଣି ଭକ୍ତି ରସାଣିତ
ଶୁଣ ଭୀଷ୍ମ କରେ ଋଷି ମାର୍ଗ ପ୍ରଦର୍ଶିତ

ଶ୍ରେଷ୍ଠ ଜ୍ଞାନ ମିଳେ ଧ୍ୟାନେଶୁଣେ ଯେବେନର
ଜ୍ଞାନଯୁକ୍ତ ଉପଦେଶ ବ୍ୟାସ ଋଷିଙ୍କର
ସମସ୍ତ ବିଶ୍ୱରକ୍ଷକ ଦେବ ନାରାୟଣ
ବ୍ୟାସ କେବଳ ଅଟନ୍ତି ତାହାଙ୍କ ସମାନ
ଜ୍ଞାନଦାନେ ବ୍ୟାସଋଷି ଶ୍ରୀହରିଙ୍କ ପରି
ତିନିପୁରେ ଅନ୍ୟ କେହି ତାଙ୍କୁ ନୁହେ ସରି
ସୃଷ୍ଟିକର୍ତ୍ତା ଧାତା ସିନା ଜ୍ଞାନ ଗାରିମାରେ
ବ୍ୟାସଙ୍କ ସମାନ ବୋଲି ନଆସେ ଚିତ୍ତରେ
ଜାଣିଛନ୍ତି ବ୍ୟାସ ତବ ଜ୍ଞାନ ଅଛି ଯାହା
ବ୍ରହ୍ମାମଧ ଭଲଭାବେ ନ ଜାଣନ୍ତି ତାହା
ଜଣାନୁହଇ ସେ ତବ ବିଶ୍ୱ ଦେବଙ୍କର
ରହସ୍ୟ ଅଟଇ ତାହା ମହର୍ଷି ଗଣର
ଶୁଣ ଭୀଷ୍ମ ଅଟେ ତାହା ଯଜ୍ଞର ଯଜନ
ତାତ୍ୱିକ ଗଣର ଅଟେ ସେ ତବ ଦର୍ଶନ
ଅଧ୍ୟାତ୍ମ ଜ୍ଞାନରେ ପୂର୍ଣ୍ଣ ଆସ୍ଥା ଅଛି ଯାର
ଏ ତବ ପ୍ରସାଦୁ ଅଧ୍ୟାତ୍ମ ବିଷୟ ତାହାର
କୁତ୍ସିତ ପାପ କାର୍ଯ୍ୟରେ ରତି ଯେ ମାନବ
ତା ପାଇଁ ଏ ତବ ନର୍କ ଅଟଇ ଜାଣିବ
ଅଧିଦୈବ, ଦୈବ, ପୁଣି ଅଧି ଦଇବତ
ଯେଉଁ ସଂଜ୍ଞା ତାହା ଏହି ତବରେ ଯୁକତ
ଅଧିଭୂତ ଭୂତ ତାହା ପରାମାର୍ଥପର
ଦେବଙ୍କ ନିର୍ଦ୍ଦିଷ୍ଟ ଯଜ୍ଞ ଏହା ମନେକର
କବି ମାନଙ୍କର ଏହା ତପସ୍ୟା ଅଟଇ
କର୍ତ୍ତାର ବୁଦ୍ଧି ବୋଲିଣ ଏହାକୁଟି କହି
କ୍ଷେତ୍ରଜ୍ଞ ବୁଦ୍ଧି ଯାହା ତା ଏ ଅଟେ ନିଶ୍ଚୟ
ପ୍ରତୀକ ପୁରୁଷ ସେହି ନମଣ ସଂଶୟ
ବିଭକ୍ତ କରନ୍ତି ସର୍ବେ ଶାସକ ରୂପରେ
ପଞ୍ଚପ୍ରାଣ ସେହି ଯାହା ଥାଏ ଶରୀରରେ
ସେ ଧ୍ରୁବ ନିଶ୍ଚୟାତ୍ମକ ପୁଣି ସେ ଅକ୍ଷର
ସେହି ପାକ ସେହି ଯଜ୍ଞ ତବ ସେ କାଳର
ଯାଜକ ଅଟନ୍ତି ସେହି-ପୁଣି ସେ ଅଧୀତ
ଅନେକ ଭାବରେ ସେହି ହୁଅନ୍ତି କଥିତ
ସେହିପରି ଆବର ସେ ଅଟନ୍ତି ତତ୍ପର
ସେହି ଭଗବାନ ସର୍ବ ଭୂତର ଈଶ୍ୱର
ସେ ସବୁର କର୍ତ୍ତା ପୁଣି ସେହିଟି ଅକର୍ତ୍ତା
ଜାଣ ଭୀଷ୍ମ ଅଟନ୍ତି ସେ ତ୍ରିଲୋକର କର୍ତ୍ତା

ବିଶ୍ୱର ଯା କିଛି ସେହି କରନ୍ତି କରାନ୍ତି
ସ୍ଥାନ ସେହି ସେହି ମଧ୍ୟ ସ୍ଥିତ ହୋଇଛନ୍ତି
କୃତୀ ସେ ସମସ୍ତଙ୍କର ଭଜନ ରୂପରେ
ସେହି ଦିଅନ୍ତି ଉତ୍‌ଥାନ ଅବା ପତନରେ
ସେହି ସତ୍ୟ ସେହି ଆଦି ପୁଣି ମଧ୍ୟ ସେହି
ସେହିଅନ୍ତ ଅବଧି ଯା ତାଙ୍କଠାରେ ନାହିଁ
ସେ ଭବିଷ୍ୟ ସବୁ କିଛି ଅଛି ତାଙ୍କଠାରେ
ସେ ଦୃଶ୍ୟ ହୁଅନ୍ତି ବିଶ୍ୱଚରେ ବା ଅଚରେ
ପୁରୁଷଙ୍କେ ଶ୍ରେଷ୍ଠ ସେହି ପରମ ପୁରୁଷ
ହେ ଭୀଷ୍ମ ଅଟନ୍ତି ସେହି ଭୂତଙ୍କରେ ଶେଷ
କୃତ ଯୁଗ ଅଟେ ଚାରି ହଜାର ବଷର
ଆଠଶ ବଷର ତା ସଂଧ୍ୟାବୋଲି ଧର
ସେ ଯୁଗ ଧର୍ମର ଅଟେ ଚାରୋଟି ଚରଣ
ପାଦକେ ଥାଏ ଅଧର୍ମ ଶୁଣ କୁରୁଗଣ
ଏ ଯୁଗେ ମାନବ ରହେ ଧର୍ମରେ ନିରତ
ସ୍ୱଭାବ ପରମାଶାନ୍ତ ହୁଏ ଅବିରତ
ଧର୍ମରେ ତତ୍ପର ସଦା ରହନ୍ତି ବ୍ରାହ୍ମଣ
କ୍ଷତ୍ରୀୟ ରଖଇ ତାର ବର୍ଣ୍ଣର ଧରମ
ରାଜର କର୍ତ୍ତବ୍ୟ ଯାହା ଭଲେ ସେ କରଇ
ପ୍ରଜାଙ୍କୁ ପାଳନା କରେ ସ୍ୱବୃତ୍ତିରେ ରହି
ଶାସ୍ତ୍ର ନିର୍ଦ୍ଦେଶିତ କୃଷି ବୈଶ୍ୟ କରୁଥାଏ
ନିରତେ ଯତେନେ ସଦା ଲିପ୍ତ ତହିଁ ରହେ
ସେବା କରୁଥାଏ ଶୁଦ୍ର ଏ ତିନି ବର୍ଣ୍ଣର
କର୍ତ୍ତବ୍ୟ ବିଚାରେ ସଦା ଶାନ୍ତନୁ କୁମର
ସତ୍ୟ ତବ ଧର୍ମ ତେବେ ହୁଅଇ ଉତ୍ପନ୍ନ
ସତ୍‌ପୁରୁଷେ ଧର୍ମାଚାରେ ହୋଇଥାନ୍ତି ରତ
ଆଦର୍ଶ ରୂପେ ତାହାକୁ କରିଣ ଧାରଣ
ଅନ୍ୟମାନଙ୍କର ତାହା ହୁଏ ଆଚରଣ
କୃତ ଯୁଗ ଲୋକଙ୍କର ଏପରି କରମ
ତେବେ ନୀଚ ଯୋନିରେ ଯେ ହୁଅନ୍ତି ଜନମ
ସେମାନେ ଏହି ନୀତିକୁ ଆଦର୍ଶ ରୂପରେ
ମାନବିକ ଧର୍ମପାଳି ରହନ୍ତି ସୁଖରେ
କୃତଯୁଗେ ଧରି ନର ଧରମ ପ୍ରବୃତ୍ତି
ଶୁଣ ଭୀଷ୍ମ ଜଗତରେ ସର୍ବଦା ଚଳନ୍ତି
ତ୍ରେତାଯୁଗ ଅଟେ ତିନି ହଜାର ବଷର
ସନ୍ଧିସମୟ ଛଶହ ବର୍ଷ ଅଟେ ତାର

ତ୍ରେତା ଯୁଗରେ ଧରମ ରହେ ତ୍ରିପାଦରେ
ଅଧର୍ମର ରୂପ ଦିଶେ ବେନି ଚରଣରେ
ସତ୍ୟ ସତ୍ୱ କ୍ରିୟା ଧର୍ମ ରହେ ପୂର୍ବପରି
ବିକୃତେ ଲୋଭ ରହଇ ଧରାକୁ ଆବୋରି
ଆଶ୍ରିତ ହୁଅଇ ଲୋଭ ଚାରି ବରଣର
କୁକୃତି କ୍ଷାନ୍ତି ଦୌର୍ବଲ୍ୟ ବଢ଼ଇ ଆବର
ତ୍ରେତୟାର ଗତି ହୁଏ ଏପରି ବିଚିତ୍ର
ତାପରେ ଯୁଗ ଦ୍ୱାପର ହୁଏ ସମାଗତ
ଦୁଇ ସହସ୍ର ବତ୍ସର ଅଟଇ ଦ୍ୱାପର
ସନ୍ଧ୍ୟା ଅଟଇ ତାହାର ଚାରିଶ ବତ୍ସର
ହଅନ୍ତି ସର୍ବେ ଦ୍ୱାପରେଅର୍ଥ ପରାୟଣ
ଅତିଶୟ ବୃଦ୍ଧିଲାଭ କରେ ରଜୋଗୁଣ
ଦୁଇପାଦ ଅଟେ ଭୀଷ୍ମ ଧର୍ମ ଏ ଯୁଗରେ
ତିନିପାଦରେ ଅଧର୍ମ ରହେ ପୃଥିବୀରେ
ଦୋଷଯୁକ୍ତ ନରେ ଏହି ଯୁଗେ ହୋଇ ଶଠ
ଜନମ ହୁଅନ୍ତି ଭୀଷ୍ମ ହୋଇ ଅତି ଛୋଟ
କଳିଯୁଗ ଆସେ ତଦପରେ ଧରା ଧାମେ
ଧରମ ହୁଅଇ କ୍ଷୀଣ ଭୀଷ୍ମ ଶତେ ଗୁଣେ
ସମୂଳେ ବ୍ରହ୍ମବିଚାର ହୋଇଯାଏ ଚ୍ୟୁତ
ରହେନାହିଁ ମଧ୍ୟ ଆସ୍ତିକତାର ମହତ୍ୱ
ବିପରୀତ ହୁଏ ସବୁ ଏ କଳି ଯୁଗରେ
ନିଷ୍ଠା ରହେ ନାହିଁ ବ୍ରତ ଉପାବାସାଦିରେ
ଏ ଯୁଗ ପ୍ରମାଣ ଅଟେ ସହସ୍ରେ ବତ୍ସର
ଦୁଇଶତ ବର୍ଷ ସନ୍ଧ୍ୟା ଅଟଇ ଏହାର
ଅତିକ୍ରୁର କଳିଯୁଗ ସନ୍ଧ୍ୟା ସହିତରେ
ଅଧର୍ମ ରହେ ଏ ଯୁଗେ ଚାରି ଚରଣରେ
ଏକପାଦେ ମାତ୍ର ତେବେ ରହଇ ଧରମ
ନରହନ୍ତି ଜଣେ ହେଲେ ତପସ୍ୱୀ ଉତ୍ତମ
ତପସ୍ୟା କରନ୍ତି ଯେଉଁମାନେ ଏ ଯୁଗରେ
ଲିପ୍ତହୋଇ ରହିଥାନ୍ତି କାମ ବାସନାରେ
ଅତି କ୍ଷୁଦ୍ର ହୁଏ ମନେ ବୃତ୍ତି ତାହାଙ୍କର
ବିୟସଧିକର ମଧ୍ୟ ନରହେ ବିଚାର
ସାଧୁବୋଲି ଯେଉଁମାନେ ଦ୍ୟନ୍ତି ପରିଚୟ
ସତ୍ୟଛାଡ଼ି ନିଅନ୍ତି ସେ ମିଥ୍ୟାର ଆଶ୍ରୟ
ଈଶ୍ୱର ସତ୍ତାରେ ଆସ୍ଥା ନଥାଏ ବିପ୍ରର
ନାସ୍ତିକତା ଏ ଯୁଗରେ ରହେ କରି ଘର

ଭକ୍ତ ହୋଇଥାଏ ଭୀଷ୍ମ ଏ ଯୁଗେ ଯେ ନର
ସେ କେବଳ ଅଟେ ଅହଂକାର ରୂପାନ୍ତର
କ୍ଷୀଣ କରନ୍ତି ମାନବେ ସ୍ନେହର ବନ୍ଧନ
ହୃଦୟରୁ ମଧ୍ୟ ତାହା ହୋଇଯାଏ ଲୀନ
ଶୂଦ୍ରଙ୍କ ପରାୟେ ହୁଏ ବିପ୍ରଙ୍କ ଆଚାର
କଳିଯୁଗର ଏ ରୀତି ଶୁଣ କୁରୁବୀର
ଲୋପହୁଏ ବର୍ଣ୍ଣଭେଦ ଏଯୁଗ ଶେଷରେ
ସଂଦେହ ଏଥିରେ ଭୀଷ୍ମ ନଧର ହୃଦରେ
ଯୁଗଙ୍କର ବର୍ଷ ସଂଖ୍ୟା ଦ୍ୱାଦଶ ହଜାର
ସନ୍ଧ୍ୟାସହିତ ନିର୍ମିତ ବୋଲି ମନେକର
ଏପରି ସହସ୍ରେ ଯୁଗ ହୁଏ ଯେବେ ଶେଷ
ବ୍ରହ୍ମାଙ୍କର ଦିନେ ମାତ୍ର ହୋଇଥାଏ ଶେଷ
ଏହି ବ୍ରହ୍ମ ଦିବସର ଶେଷ ଯେବେ ହୁଏ
ନିବୃତ୍ତି ସମସ୍ତ ଜୀବଠାରେ ଦେଖାଯାଏ
ସଂହାର ବୁଦ୍ଧିରେ ଯୁକ୍ତ ହୋଇ ତେବେକାଳ
ସଂହାର ନିମନ୍ତେ ଭୀଷ୍ମ ଆସେ ତତକାଳ
ସମସ୍ତଦେବତା ବିପ୍ର ନୃପତି ଦାନବ
ଯକ୍ଷ ରାକ୍ଷସ ଦଇତ ପତତ୍ରି ଗନ୍ଧର୍ବ
ଅପ୍‌ସରା ଭୁଜଙ୍ଗ ନର ନଦୀ ପରବତ
ପଶୁ ସାଧୁ ଯୋଗୀ କୀଟ ଆଦିଙ୍କ ସହିତ
ପଞ୍ଚ ମହାଭୂତ, ଭୂତ-ଭୂତପତି ଆଦି
ଏକାଠି ହୁଅନ୍ତି ବିଶ୍ୱ ସଂହାର ସଂପାଦି
ସମସ୍ତ ଲୋକର ଚକ୍ଷୁ ଦେବ ଦିବାକର
ଅଟନ୍ତି ପ୍ରାଣୀର ପ୍ରାଣଦାତା ଯେ ସମୀର
ଉଗ୍ରତେଜ ଧରିଥାନ୍ତି ବର୍ଷା ସହିତରେ
ସଙ୍ଗେଧରି ବହ୍ନି ଲିପ୍ତ ହୁଅନ୍ତି ସଂହାରେ
ଯୋଗୀ ରୂପ ଧରି ତେବେ ଦେବ ନାରାୟଣ
ଦ୍ୱାଦଶ ଆଦିତ୍ୟ ତେଜ କରି ବିକୀରଣ
ସାଗର ସହ ତଟିନୀ କୂପାଦିର ଜଳ
ପ୍ରଦୀପ୍ତ ରଶ୍ମିରେ ଶୋଷି ନିଅନ୍ତି ସକଳ
ପର୍ବତ ଶୃଙ୍ଗକୁ ଜଳ ତାପରେ ଉଠାଇ
ସେଠାରୁ ରସ ତଳକୁ ଦିଅନ୍ତି ପଠାଇ
ସହସ୍ର ସୂର୍ଯ୍ୟ ପରାୟେ ତେବେ ତାଙ୍କ ତେଜ
ହୋଇଥାଏ ବୋଲି ଆହେ ଭୀଷ୍ମ ମନେହେଜ
ରସାର ସମସ୍ତ ରସ କରିଣ ହରଣ
ରସାତଳେ ତା ସଙ୍ଗରେ କରନ୍ତି ରମଣ

ରୂପ ଅରୂପା ସହିତ ସର୍ବ ଚରାଚର
ଧ୍ରୁବ ଅଧ୍ରୁବର କିଛି ନକଟି ିଶ୍ବର
ବିକଜ୍ ପଦ୍ମ ନୟନ ପୁରୁଷ ଉତ୍ତମ
ଆହେ ଭୀଷ୍ମ ସେହିକାଳେ କରନ୍ତି ଗ୍ରହଣ
ସମୀରଣ ସେ ସମୟେ ବଳକର ହୋଇ
ଅଖିଳ ଜଗତକୁ ସେ ଦିଏ ଦୋହଲାଇ
ଆବଦ୍ଧ କରିଣ ପ୍ରାଣ ଅପାନ ପବନ
ସମୀରକୁ କରଥାନ୍ତି ହରି ଆକ୍ରମଣ
ସୁରଙ୍କ ସହ ଜଗତେ ଯେତେ ଦେହଧାରୀ
ପଞ୍ଚେନ୍ଦ୍ରିୟ ଗୁଣକୁ ସେ ନେଇଥାନ୍ତି ହରି
ଘ୍ରାଣ ପ୍ରାଣ ଦେହ ଭୂତ ପୃଥିବୀ ଆଶ୍ରିତ
ମୂହୁର୍ତ୍ତକ ମଧ୍ୟରେ ତା ହୁଏ ତିରୋହିତ
ଏହିପରି ଚଳାଚଳ ଲୋକଙ୍କର ଯାହା
କ୍ଷଣକ ମଧ୍ୟରେ ନାଶ ହୋଇଥାଏ ତାହା
ରସା ସ୍ନେହର ଆଶ୍ରୟ ଅଟଇ ରସନା
ସଲିଳର ଗୁଣ ଏହା ଅଟେ ମହାମନା
ରୂପର ଆଶ୍ରୟ ଚକ୍ଷୁ ଜ୍ୟୋତି ଗୁଣ ତାର
ଚେଷ୍ଟା ସ୍ପର୍ଶ ପ୍ରାଣ ଗୁଣ ଅଟେ ପବନର
ଶବ୍ଦ ଶ୍ରୋତ୍ର ଶବଣ ଏ ଆକାଶର ଗୁଣ
କ୍ଷେତ୍ରଜ୍ଞ ଆଶ୍ରିତ ଅଟେ ବୁଦ୍ଧି ଚିତ୍ତ ମନ
ଶୁଣ ମନକରି ସ୍ଥିର ଶାନ୍ତନୁଙ୍କ ସୁତ
ତାପରେ ହୋଇଲେ ବିଷ୍ଣୁ ବ୍ରହ୍ମ ଉପାସିତ
ରଶ୍ମୀରେ ହୋଇ ପୂରିତ ତେବେ ଭଗବାନ
ବାୟୁପୂର୍ଣ୍ଣ ଧରାଅଂଶ କଲେ ବିସର୍ଜନ
ଶତଧା ଜଳିଲା ତେବେ ସଂହାର ପାବକ
ସେହି ଅନଳର ନାମ ଅଟେ ସଂବର୍ତ୍ତକ
ସମସ୍ତ ବିଶ୍ୱରେ ତାହା ହୋଇଣ ବେଷ୍ଟିତ
ଦଗ୍ଧ କରିଦେଲା ସବୁ ଶାନ୍ତନୁଙ୍କ ସୁତ
ବଲ୍ଲୀ ଦ୍ରୁମ ଲତା ଗୁଳ୍ମ ସୁଦିବ୍ୟ ବିମାନ
ପୁର ପର୍ବତାହି ଯେତେ ଆଶ୍ରୟର ସ୍ଥାନ
ସମସ୍ତ ଦଗ୍ଧ ହୋଇଲା ଉତ୍ତମ ରୂପରେ
ଲୋକସହ ଭୀଷ୍ମ ଲୋକଗୁରୁଙ୍କ ଯୋଗରେ
ଲୋକ ଦଗ୍ଧ ପରେ ଯାହା ରହିଲା ପାଉଁଶ
ଲୋକ ସଂଭବ ବିଚରି ତାକୁ ହୃଷୀକେଶ
ଧଇଲେ ିଜ ଅଙ୍ଗରେ ଯୁଗର ଶେଷରେ
ଘନକୃଷ୍ଣ େଘ ରୂପ ଧଇଲା ସେ ପରେ

ବର୍ଷିଲା ହଜରାଗୁଣେ ଶତରୂପ ହୋଇ
ଶୀତଳ ହୋଇଲା ଧରା ସେ ସଲୀଳ ପାଇ
କ୍ଷୀର ସମ ସ୍ୱାଦ ଭୀଷ୍ମ ଅଟେ ସେହି ଜଳ
ହୋଇଲା ଧରା ତହିଁରେ ବିଶେଷ ସଂକୁଳ
ନିର୍ବାଣ ଲଭିଲା ଧରା ପୂଣ୍ୟ ସେ ସଲିଳେ
ପୟୋଧର ହେଲା ପୟ ଜଳ ପୁଣ୍ୟ ବଳେ
ହେଲା ଏକାର୍ଣ୍ଣବ ସର୍ବସତ୍ୱ ବିବର୍ଜିତ
ପୃଥିବୀ ସେହିକାଳେ ହେ ଶାନ୍ତନୁଙ୍କ ସୁତ
ବଡ଼ ବଡ଼ ମହାସତ୍ୱ ଯେ ଯେଉଁଠି ଥିଲେ
ଅମିତ ତେଜରେ ବିଭୁ ଅଙ୍ଗେ ଲୀନହେଲେ
ସମୂଦ୍ର ସହିତ ଭୀଷ୍ମ ଯେତେ ଚରାଚର
ସଭିଙ୍କୁ ଶୋଷଣ କରି ସେହି ବିଶ୍ୱମ୍ଭର
ସୂର୍ଯ୍ୟ ପବନ ଆକାଶେ ପରେ ନାଶକରି
ଅଣୁରୂପେ ଜଗତକୁ ରଖିଲେ ଶ୍ରୀହରି
ସର୍ବେ ପରମାଣୁ ରୂପେ ରଖି ଦଗ୍ଧପରେ
ଏକାକୀ ସେ ସନାତନ ଗଲେ ଶୟନରେ
ପୁରାଣ ରୂପେ ସେ ପ୍ରଭୁ ଅମିତ ବିକ୍ରମ
ଯୋଗ ଉପାସିତେ କଲେ ସମୁଦ୍ରେ ଶୟନ
ସେହି ଅଟେ ଭୀଷ୍ମ ଯୋଗନିଦ୍ରା ପ୍ରଭୁଙ୍କର
ବହୁ ସସ୍ର ଯୁଗ ହେଲା ଏଭାବେ ଅନ୍ତର
ତାପରେ ଶୁଣ ହେ ଭୀଷ୍ମ ଅଦ୍ଭୁତ ଏ ବାଣୀ
ପ୍ରଭୁ ଗର୍ଭେଥିଲେ ଭକ୍ତ ମାର୍କଣ୍ଡେୟ ମୁନି
ପ୍ରଭୁ କାଖତଳେ ଆସି ରହିଥିଲେ ତେବେ
ତାହାର କାରୁଣ୍ୟ ପୁଣ ଭୀଷ୍ମ କହେ ଏବେ
ହରଙ୍କ ବର ପ୍ରଭାବେ ମାର୍କଣ୍ଡେୟଙ୍କର
ତେଜସ୍ୱୀତା ବଢ଼ିଥିଲା ବୋଲି ମନେକର
ଆୟୁଷ ତାଙ୍କର ଭୀଷ୍ମ ଅଟେ ଅକଳନା
ତୀର୍ଥ ପ୍ରସଙ୍ଗେ ସର୍ବଜ୍ଞ ସେହି ମହାମନା
କରିଥିଲେ ସେହି ବହୁ ତୀର୍ଥ ପର୍ଯ୍ୟଟନ
ପୃଥିବୀର ସବୁତୀର୍ଥେ ଥିଲା ତାଙ୍କ ଜ୍ଞାନ
ଅତି ପୁଣ୍ୟମୟ ଥିଲା ଆଶ୍ରମ ତାଙ୍କର
ବାସଥିଲା ପୁଣି ତାହା ସର୍ବ ଦେବଙ୍କର
ଦେଶ ରାଜ୍ୟ ପୁର ଯାହା ଅତ୍ୟନ୍ତ ବିଚିତ୍ର
ସବୁଠାରେ ଥିଲେ ଋଷି ଅତ୍ୟନ୍ତ ପବିତ୍ର
ଥିଲେ ପୁଣି ଜପ ତପ ହୋମ ପରାୟଣ
ପରମ ଶାନ୍ତ ଆବର ଅତ୍ୟନ୍ତ ପାବନ

ତେଣୁ ଭଗବାନଙ୍କର ମୁଖପଥ ଦେଇ
ବାହାର ହୋଇ ରହିଲେ କାଖତଳେ ଯାଇ
ଦେବ ମାୟା ବଳେ ଋଷି ହୋଇଲେ ବାହାର
ମାତ୍ର ତାହା ଥିଲା ମଧ୍ୟ ଅଜ୍ଞାତ ତାଙ୍କର
ବିଷ୍ଣୁଙ୍କ ଉଦରୁ ଆସି ତେବେ ତପୋଧନ
ଦେଖିଲେ ସମୁଦ୍ର, ଦୃଶ୍ୟ ନୋହିଲା ଭୂମନ
ଆଚ୍ଛନ୍ନ ହୋଇରହିଛି ବିଶ୍ୱ ଅନ୍ଧକାରେ
ନ ଦେଖିଲେ ତେଣୁ ଋଷି କିଛି ନୟନରେ
ଦେଖି ତାଙ୍କ ହୃଦେ ହେଲା ମହାଭୟ ଜାତ
ବ୍ୟସ୍ତତାରେ ଯୁକ୍ତହୋଇ ରହିଲା ଜୀବିତ
ଶୋଇପଡ଼ିଲେ ଭୟରେ କେତେକାଳ ପରେ
ଆଖି ଫିଟାଇ ଦେଖିଲେ ଅଶ୍ୱତ୍ଥ ପତ୍ରରେ
ଅତି ଛୋଟ ପିଲାଟିଏ ଭୀଷ୍ମ ଶୋଇଥିଲା
ପୁଣି ଫେନ ଉପରେସେ ପତ୍ର ଭାସୁଥିଲା
ଫେନପୂର୍ଣ୍ଣ ଥିଲା ସେହି ଭୀଷଣ ସାଗର
ତା ମଧ୍ୟେ ସେ ବାଳକକୁ ଦେଖି ମୁନୀବର
ବିସ୍ମୟ ସହିତ ମନେ କୌତୁହଳ ଧରି
ଚାହିଁଲେ ସେ ବାଳକକୁ ବାରମ୍ବାର କରି
ଦେଖିଲେ ଶତ ସୂର୍ଯ୍ୟର ତେଜତା ଦେହରେ
ନିଯେ ଅସମର୍ଥ ହେଲେ ତାକୁ ଚାହିଁବାରେ
ତଦପରେ ସେହି ମୁନି ଏକାନ୍ତରେ ରହି
ଆରମ୍ଭିଲେ ସ୍ତୁତି ତହିଁ ସମାଧିସ୍ଥ ହୋଇ
ମୁନି ତେବେ ହୃଦୟରେ କଲେ ଏ ବିଚାର
ପୂର୍ବେ ହୋଇଛନ୍ତି ଏ ମୋ ନୟନ ଗୋଚର
ଦେବମାୟାବଳେ ତାଙ୍କୁ ଚିହ୍ନି ନ ପାରିଲେ
ପଚାରିବାକୁ ମଧ୍ୟ ସେ ଶଙ୍କିତ ହୋଇଲେ
ଏପରି ସମୟେ ସେହି ଅଗାଧ ଜଳରେ
କିପରି ରହିଛି ଶିଶୁ ସୁଖ ଶୟନରେ
ଭାବି ବିସ୍ମୟରେ ଯୁକ୍ତହେଲେ ମୁନିବର
ପୁଣି ସେଥିରେ ଆଗ୍ରହ ବଢ଼ିଲା ତାଙ୍କର
ପୂର୍ବକଥା ଜାଣିବାକୁ ଋଷି ତଦପରେ
ତାଙ୍କପାଶେ ଗଲେ ଭୀଷ୍ମ ଅତ୍ୟନ୍ତ ଭୟରେ
କହିଲେ ସଂବୋଧି ତେବେ ପ୍ରଭୁ ଭଗବାନ
ଆରେ ବାପ ମୋ ସ୍ୱାଗତ ଏବେ ତୁହି ଘେନ
ମେଘ ଗମ୍ଭୀର ଗର୍ଜନ ପରାୟେ ସେ ସ୍ୱର
କହିଲେ ହେ ମାର୍କଣ୍ଡେୟ ଆସ ମୋ ପାଶର

ପୁରୁଷଉତ୍ତମଙ୍କର ଗମ୍ଭୀର ବଚନ
ଶୁଭିଲା ସେକାଳେ ଆହେ ଶାନ୍ତନୁ ନନ୍ଦନ
ଆହେ ମାର୍କଣ୍ଡେୟ ତୁମେ ଦୂରକରି ଭୟ
ଆସ ଏବେ ମୋ ପାଖକୁ ହୋଇଣ ନିର୍ଭୟ
ଶୁଣି ତାହା ମାର୍କଣ୍ଡେୟ ଚକିତ ହୋଇଲେ
ନାମ ଧରି ଡ଼ାକେ କିଏ ତାହା ବିଚାରିଲେ
କିପାଁ ମୋ ପ୍ରତି ଏହାର ଅଟେ ଏହି ଭାବ
ନଜାଣିଲା ମୋର ଏହା ଅଟେ ପରାଭବ
ସହସ୍ରେ ଦିବ୍ୟ ବରଷ ଆୟୁଷ ମୋହର
ଜଣା ହୋଇନାହିଁ ପରା ଏହି ବାଳକର
ପଦ୍ମଯୋନୀ ନିଯେ ହୋଇ ବଶ ମୋ ଭକ୍ତିର
ପ୍ରଦାନୀ ଅଛନ୍ତି ମୋତେ ସୁଦୀର୍ଘ ଆୟୁର
ଦୀର୍ଘାୟୁ ମୁଁ କିଏ ଏହି ମତେ ମଣି ହେୟ
ନାମଧରି ଡାକୁ ଅଛି କହି ମାର୍କଣ୍ଡେୟ
କିଏ ଏହି ନିଜ ଜୀବନକୁ ତୁଚ୍ଛ କରି
ଗର୍ବଭରେ ଡାକୁ ଅଛି ମୋର ନାମ ଧରି
ଜଣାଯାଏ ମୃତ୍ୟୁତାରେ ହେଲାଣି ନିକଟ
ନୋହିଲେ ବା ବୁଦ୍ଧିତାର ହୋଇଲାଣି ଭ୍ରଷ୍ଟ
ମାର୍କଣ୍ଡେୟ ମୁନି କ୍ରୋଧେ ଅନ୍ଧହୋଇଥିଲେ
ମଧୁହାରି ପୁଣି ତେବେ ତାହାଙ୍କୁ କହିଲେ
ଶୁଣ ମୁନି ଜନ୍ମଦାତା ଅଟେ ମୁଁ ତୁମ୍ଭର
ମୁଁ ତୁମ୍ଭର ପିତା ପୁଣି ଗୁରୁ ହେ ତୁମର
ଜାଣ ମୁନୀ ଅଟେ ମୁହିଁ ସେହି ହୃଷୀକେଶ
ଯେ ତୁମକୁ ଦେଇଅଛି ସୁଦୀର୍ଘ ଆୟୁଷ
ପରମ ପୁରୁଷ ମୁହିଁ ନଜାଣି ତା ତୁମ୍ଭେ
ମୋ ପାଖକୁ ନ ଆସିଣ ରହିଅଛ ଦମ୍ଭେ
ଶୁଣି ତାହ ମାର୍କଣ୍ଡେୟ ଋଷିକୁଳବର
କହିଲେ ପରାତ୍ମା ତୁମ୍ଭେ ଅନଘ ଶରୀର
ଆହେ ତଦ୍ୱମୟ ଆହେ ପରମ ପୁରୁଷ
ଯାହା ପଚାରୁଛି କହ ସର୍ବହୃଦବାସ
ଏକାର୍ଣ୍ଣବୀ କୃତ ଏହି ସାଗର ମଧରେ
କେଉଁ ମାୟାବଳେ ପ୍ରଭୁ ଅଛ ଏକାନ୍ତରେ
ବାଳକ ସ୍ୱରୂପେ ପୁଣି କରିଛ ଶୟନ
କେଉଁ ନାମେ ମୁଁ ତୁମ୍ଭଙ୍କୁ କରିବି ବୋଧନ
କେଉଁନାମେ ହୁଅ ତୁମ୍ଭେ ଲୋକଙ୍କରେ ଜ୍ଞାତ
କହିଦିଅ ମୋତେ ତାହା ଆହେ ଲୋକତାତ

ମହାତ୍ମା ଆପଣ ଏହା ଭାବେ ମୁଁ ହୃଦରେ
ଅନ୍ୟଥା କେ ରହିପାରେ ଏହି ଅବସ୍ଥାରେ
କହିଲେ ଶ୍ରୀ ଭଗବାନ ଶୁଣି ସେ ବଚନ
ସମସ୍ତ ଭୂତରେ ମୁହିଁ ଅଟେ ନାରାୟଣ
ସହସ୍ରେ ଅଟେ ମୋ ଶିର ସେ ସଂଖ୍ୟାରେ ମୁଖ
ସହସ୍ରେ ଚରଣେ ମୁହିଁ ହୋଇଛି ସଂଯୁତ
ଆଦିତ୍ୟ ବର୍ଣ୍ଣର ମୁହିଁ ପୁରୁଷ ପ୍ରଧାନ
ମୋହର ଏ ମୁଖ ବ୍ରହ୍ମମୟ ବୋଲି ଜାଣ
ମୁହିଁ ସେହି ଅଗ୍ନି ହବ୍ୟ ବାହନ କାରକ
ସପ୍ତଶିଖା ଯୁକ୍ତ ଅଟେ ମୁହିଁ ସେ ପାବକ
ଇନ୍ଦ୍ରର ମୁଁ ଇନ୍ଦ୍ରପଦ ଋତୁରେ ବତ୍ସର
ଯୋଗରେ ମୁଁ ସଂଖ୍ୟା ମୁହିଁ ଅଟେ ଯୁଗାନ୍ତର
ଜାଣ ମୁନିବର ଅଟେ ମୁଁ ସତ୍ୱ ସ୍ୱରୂପ
ସର୍ବ ଦେବତା ଅଟନ୍ତି ମୋର ଆତ୍ମରୂପ
ଅନନ୍ତ ଅଟଇ ମୁହିଁ ଭୂଜଙ୍ଗ ଗଣର
ଗରୁଡ଼- ମୁଁ ଅଟେ ରାଜା ପତତ୍ରୀ କୁଳର
କୃତାନ୍ତ ଅଟଇ ମୁହିଁ ସବୁ ପ୍ରାଣୀଙ୍କର
ପ୍ରଘରେ ରହିଛି କାଳ ନାମରେ ମୋହର
ମୁଁ ଧର୍ମ ଅଟଇ ସବୁ ପ୍ରାଣୀଙ୍କ ଆଶ୍ରୟ
ମୋହର ନିବାସ ସବୁ ପ୍ରାଣୀଙ୍କ ହୃଦୟ
ଦୟା ପରାୟଣ ଧର୍ମ ଅଟଇଟି ମୁହିଁ
ଅଧିଙ୍କେ ମୁହିଁ କ୍ଷୀରାବ୍ଧି ଜାଣ ଋଷିସାଇଁ
ଯାହାସତ୍ୟ ତା ଉପରେ ଅଟଇ ମୁଁ ଏକ
ମୁହିଁ ଅଟେ ପ୍ରଜାପତି କର ଏ ବିବେକ
ମୁହିଁ ସଂଖ୍ୟା ଯୋଗ ଅଟେ ସ୍ୱରୂପ ମୋହର
ମୁଁ ମଧ୍ୟ ପରମ ପଦ ଧ୍ୟେୟ ଯା ଯୋଗୀର
ସତକ୍ରୀୟା ମୁଁ ବିଦ୍ୟାର ସ୍ୱାମୀଅଟେ ମୁହିଁ
ସମୁଦ୍ର ନଈ ନକ୍ଷତ୍ର ଦିଗ ମୁଁ ଅଟଇ
ମୋ ରୂପରେ ମୁହିଁ ବୋଲି ଜାଣ ତପୋଧନ
ମୁହିଁ ବର୍ଷ ମୁହିଁ ସୂର୍ଯ୍ୟ ମୁଁ ଅଟଇ ସୋମ
ପରମପୁରୁଷ ମୁହିଁ ସର୍ବ ପରାୟଣ
ମୁଁ ଅଟଇ ଭବିଷ୍ୟର ସବୁ ସଂଗ୍ରହଣ
ଯାହା କିଛି ହୁଏ ତୁମ ନୟନ ଗୋଚର
ଯେଉଁସବୁ ନାମ ମଧ୍ୟ ଶୁଣୁଛ କର୍ଣ୍ଣର
ସେ ସବୁ କେବଳ ମୁହିଁ ଆହେ ମୁନୀବର
ସଂଦେହ ଏଥିରେ କିଛି ହୃଦୟେ ନଧର

ଅନୁଭବ ଯାହା ତୁମେ କରୁଛ ଲୋକରେ
ସେସବୁ ମୁଁ ବୋଲି ତୁମେ ଧର ହୃଦୟରେ
ପ୍ରଥମେ ସଂପୂର୍ଣ୍ଣ ବିଶ୍ୱ ମୋ ଦ୍ୱାରା ସୃଜିତ
ଏବେମଧ୍ୟ ସେ ସର୍ଜନା ଅଛି ଅବାରିତ
ଭଲକରି ଦେଖ ମୋତେ ଆହେ ମାର୍କଣ୍ଡେୟ
ବିଶ୍ୱ ମୋଠାରେ ମୁଁ ମଧ୍ୟ ଅଟେ ବିଶ୍ୱମୟ
ଜଗତକୁ ଯୁଗଯୁଗ ମୁଁ କରେ ରକ୍ଷଣ
ଜଣାଇଦେଲି ତୁମ୍ଭଙ୍କୁ ସେସବୁ କାରଣ
ଉତ୍ତମରୂପେ ତାହାକୁ ହୃଦୟରେ ଧରି
ହୁଅ ତୁମ୍ଭେ ସବୁବେଳେ ଧର୍ମ ସେବାକାରୀ
ସୁଖେ କର ମୋ କାଖତଳେ ବିଚରଣ
ମୋଦେହେ ରହିଛି ମଧ୍ୟ ଚତୁର ଆନନ
ଋଷି ସହ ଦେବଗଣ ଅଛନ୍ତି ସେଠାରେ
ନାଶେ ମୁଁ ଅସୁର ବ୍ୟକ୍ତ ଅବ୍ୟକ୍ତ ଯୋଗରେ
ଏକାକ୍ଷର ମନ୍ତ୍ର ମୁନି ଜାଣ ମୁଁ ଅଟଇ
ବ୍ରହ୍ମାଙ୍କ ତିନି ଅକ୍ଷର ମୋବିନା କେ ନାହିଁ
ତ୍ରିବର୍ଗରୁ ପରମୁହିଁ ଅଟଇ ଓଁକାର
ପରମାତ୍ମା ପ୍ରଦର୍ଶକ ଶକ୍ତି ଅଟେ ଯାର
ଆଦି ପୁରୁଷ ପରମ ପୁରୁଷଟି ମୁହିଁ
ଚରାଚର ଜଗତରେ ମୋବିନା କେ ନାହିଁ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
କହୁଅଛି ପରେ ଯାହା କଲେ ନାରାୟଣ
ମାର୍କଣ୍ଡେୟଋଷି ତେବେ ଆଗେ ରହିଥିଲେ
ପୁଣି ହରି ମୁଖେ ତାଙ୍କୁ ସମାହିତ କଲେ
ତଦପରେ ମାର୍କଣ୍ଡେୟ ଋଷିଙ୍କ ଶେଖର
ମୁଖୁ ଯାଇ ପ୍ରଭୁଙ୍କର କାଖେ କଲେ ଘର
ଶୁଣ ଭୀଷ୍ମ ଯେଉଁ ପ୍ରଭୁ ଅଟନ୍ତି ଅକ୍ଷୟ
ଅଟନ୍ତି ଯେଉଁ ଈଶ୍ୱର ବହୁରୂପେ ଧ୍ୟେୟ
ମହାର୍ଣ୍ଣବେ ଚନ୍ଦ୍ରସୂର୍ଯ୍ୟଯାରେ ହେଲେ ଲୀନ
ହଂସ ସଂଜ୍ଞା ଧାରୀ ସେହି ଦେବ ନାରାୟଣ
ବିଚରଣ ଯାହାଙ୍କର ହୁଏ ଧୀରେ ଧୀରେ
ସେ ବିହାର ଚଳିଥାଏ କାଳର ଗତିରେ
ବିଶ୍ୱର ସର୍ଜନା ତାଙ୍କ ନୁହେଁ କେବେ ଶେଷ
ସଂଦେହ ନମଣ ଏଥି କୁରୁକୁଳ ଈଶ
ଆହେ ଭୀଷ୍ମ ତଦପରେ ସେହି ହଂସବର
ଶୁଚି ହୋଇ ଆରମ୍ଭିଲେ ତପସ୍ୟା କଠୋର

ପଦ୍ମଜ ସେ ହଂସ ଜଳେ ଆଚ୍ଛାଦିତ ହୋଇ
ବିଶ୍ୱତେଜି-ବିଶ୍ୱରୂପେ ଗଲା କୁରୁସାଇଁ
ମହାଭୂତ ବିଶ୍ୱପ୍ରଭୁ ତେବେ ଚିନ୍ତା କଲେ
ଚିନ୍ତାରେ ମହାଅର୍ଣ୍ଣବେ ଦୃଷ୍ଟିପାତ କଲେ
ଆକାଶ ବୋଲି ସେଠାରେ କିଛି ହିଁ ନଥିଲା
ଜଳମଧ୍ୟେ ସୂକ୍ଷ୍ମାକାରେ ବିଶ୍ୱ ରହିଥିଲା
କ୍ଷୋଭେ ପ୍ରଭୁ ସେ ଅର୍ଣ୍ଣବ ଜଳରେ ପଶିଲେ
ସୂକ୍ଷ୍ମ ଏକ ଛିଦ୍ରଜଳ ମଧ୍ୟରେ ଦେଖିଲେ
ଦେଖିଲେ ସେ ଛିଦ୍ରେ ଥିଲା ବାୟୁର ସଂଚର
ରହିଥିଲା ସେ ସମୀରେ ଆଭାଷ ଶବ୍ଦର
ସଂକ୍ଷୋଭ ଲଭି ଶବଦ ପରେ ପବନର
ଅତିଶୟ ବଢ଼ିଗଲା ଶାନ୍ତନୁ କୁମର
ପବନର ଶ୍ରୋତ ଯେଣୁ ବଳକର ହେଲା
କ୍ଷୁଭିତ ହୋଇ ଅର୍ଣ୍ଣବେ ଉର୍ଦ୍ଧ୍ୱକୁ ଉଠିଲା
ଅର୍ଣ୍ଣବ ହୋଇଲା ଯେଣୁ ଅତି କ୍ଷୋଭ ଯୁକ୍ତ
ବୈଶ୍ୱାନର ମଧ ତହୁଁ ହୋଇଲେ ସଂଭୂତ
କୃଷ୍ଣବର୍ଣ୍ଣ ସେ ପାବକ ଅଟନ୍ତି ମହାନ
ଅତି ଦୀପ୍ତିମାନ ଶୁଣି ଶାନ୍ତନୁ ନନ୍ଦନ
ତଦପରେ ସେ ପାବକ ନିଜର ଉପରେ
ଶୋଷିଲେ ସାଗରଜଳ ଅତ୍ୟନ୍ତ ବେଗରେ
ପ୍ରଥମରେ ଜଳମଧ୍ୟେ ଯେଉଁଛିଦ୍ର ଥିଲା
ବିସ୍ତୃତି ଲଭି-ତା କ୍ରମେ ଆକାଶ ହୋଇଲା
ତେଜସଂଭବ ସେ ଜଳ ଅମୃତ ସମାନ
ଅତି ପୂଣ୍ୟମୟ ଅଟେ ଶାନ୍ତନୁ ନନ୍ଦନ
ଛିଦ୍ରରୁ ସଂଭବ ହେଲା ଅବଶ୍ୟ ଆକାଶ
ଜାତହୋଇ ବାୟୁତହିଁ ଲଭିଲା ପ୍ରକାଶ
ପିତାମହ ଯେହ୍ନ ମହା ଭୂତର ଜନକ
ଦେଖି ତାହା ଆହେ କୁରୁକୁଳର ତିଳକ
ଉତ୍ତମ ଲୋକସୃଷ୍ଟିକୁ ବିଚାରି ଚିତ୍ତରେ
ବହୁରୂପ ଚିନ୍ତାକଲେ ବ୍ରହ୍ମା ସହିତରେ
ଚାରିଯୁଗେ ଏକ ଏହି ପର୍ଯ୍ୟାୟକୁ ଧରି
ସହସ୍ରେ ଯୁଗକୁ ନିଜ ହୃଦରେ ବିଚାରି
ସରଜିଲେ ପୃଥିବୀରେ ବହୁତ ବ୍ରାହ୍ମଣ
ଆତ୍ମାଅଟେ ଯାହାଙ୍କର ତପସ୍ୟାପ୍ରବଣ
ହରିବୋଲି ଭୀଷ୍ମ ଯେଉଁ ଦୁଇଟି ଅକ୍ଷରେ
ବ୍ରହ୍ମାଙ୍କର ବିଶୁଦ୍ଧାତ୍ମା ସେହି ବୋଲି ଧର

ବିଶ୍ୱାତ୍ମା ସ୍ୱରୂପ ତାକୁ ଭାବି ଋଷିଗଣ
ଯୋଗର ଯୋଗ୍ୟତା ଭୀଷ୍ମ କରନ୍ତି ଗ୍ରହଣ
ସଂପୂର୍ଣ୍ଣ ଐଶ୍ୱର୍ଯ୍ୟ ଯାହାଂଠାରେ ଅଛି ରହି
ଯୋଗବନ୍ତ ବୋଲି ଜାଣ ତାହାକୁଟି କହି
ଯୋଗବେର୍ତ୍ତା ଯେହୁ ସେହି ବ୍ରହ୍ମାଙ୍କ ନାମରେ
ବିଶ୍ୱକର୍ମା ସଂପାଦନ କରନ୍ତି ସୁରରେ
ହେ ଭୀଷ୍ମ ମହେଶ ରୂପେ ହରି ସେହି ଜଳେ
ଲୋକସ୍ରଷ୍ଟା ବିଧି ସହ ମାତିଥାନ୍ତି ଖେଳେ
ତଦପରେ ଶୁଣ ଭୀଷ୍ମ ନାଭୀରୁ ତାଙ୍କର
ଜନମିଲା ପଦ୍ମ ଏକ ଶାନ୍ତନୁ କୁମର
ସହସ୍ର ବର୍ଣ୍ଣରେ ଆଭାଷିତ ସେ ସରୋଜ
ରବିତୁଲ୍ୟ ଦୀପ୍ତବନ୍ତ ତଥାପି ବିରଜ
ହରିଣ୍ମୟ ତେଜ ଭୀଷ୍ମ ଅଟେ ସେ ପଦ୍ମର
ପ୍ରଜ୍ୱଳିତ ଅଗ୍ନିଶିଖା ସମ ଦୀପ୍ତି ତାର
ଶରତ୍‌କାଳ ରବିପରି ଅଟେ ତାର ତେଜ
ବିଷ୍ଣୁଙ୍କ ନାଭୀରୁ ତାର ଜନ୍ମ ବୋଲି ହେଜ
ମହାତ୍ମା ସଂଭବ ପଦ୍ମ ଅତୀବ ଉଦାର
ବିଭୁ ତନୁରୁହ ସମ ଶୋଭେ ତା ମୃଣାଳ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଯେତେକ ଯୋଗ ନିରତ ପୁଣି ତେଜସ୍କର
ଯେଉଁମାନେ ଜଗତରେ ଅଟନ୍ତି ପ୍ରଧାନ
ତାହାଙ୍କ ସ୍ରଷ୍ଟା ବ୍ରହ୍ମାଙ୍କ ହୋଇଲା ସର୍ଜନ
ଯେ ପର୍ଯ୍ୟନ୍ତ ଥିଲା ହରିଣ୍ମୟଙ୍କ ବିସ୍ତାର
ଅସଂଖ୍ୟ ଯୋଜନା ତାର ବ୍ୟାପ୍ତି ମନେକର
ସର୍ବଗୁଣ ସର୍ବତେଜେ ପରିପୂର୍ଣ୍ଣ ଯାହା
ପାର୍ଥିବ ଲକ୍ଷଣଯୁକ୍ତ ହୋଇଥିଲା ତାହା
ପୃଥିବୀଭୂତରେ ପଦ୍ମ ନାଭୀ ହରିଙ୍କର
ଜନମିଲେ ଯାହାଠାରୁ ମହର୍ଷି ନିକର
ଏହି ଯେଉଁ ପଦ୍ମ କଥା କହିଲି ବୁଝାଇ
ରସା ଦେବୀଙ୍କ କଳ୍ପନା ଜାଣ ଭୀଷ୍ମ ସେହି
ପୃଥିବୀ ସେହି ପଦ୍ମର ଅଟଇ କେଶର
ନାଭୀରୁ ଯେ ଜାତ ହୋଇଥିଲା ବିଭୁଙ୍କର
ସେ କେଶର ମଧ୍ୟେ ଥିଲା ଯେତେକ ପର୍ବତ
କହେ ତାଙ୍କନାମ ଶୁଣ ଶାନ୍ତନୁଙ୍କ ସୁତ
ହିମବାନ ନୀଳମେରୁ କୈଳାସ ମନ୍ଦର
ନିଷିଧ ଗନ୍ଧମାର୍ଦନ ପୁଣ୍ୟ ତ୍ରିଶିଖର

ସୁନ୍ଦର ପିଞ୍ଜର ଗିରି ପୁଣି ଶୃଙ୍ଗବାନ
ବିନ୍ଧ୍ୟ ଆଦି ଯେତେ ଗିରି ଅଟନ୍ତି ମହାନ
ଅଟନ୍ତି ଏ ଗିରି ଭୀଷ୍ମ କାମ୍ୟ ଫଳଦାତା
ପୁଣ୍ୟ ଶୀଳ ମହାତ୍ମାଙ୍କ ଆଶ୍ରୟ ପ୍ରଦାତା
ସେମାନଙ୍କର ଆଶ୍ରମ ଶୋହେ ତା ଉପରେ
କଟାନ୍ତି ସମୟ ଉଗ୍ର ତପଶ୍ଚରଣରେ
ପର୍ବତଙ୍କ ମଧ୍ୟେ ଏକ ଦ୍ୱୀପ ଅଛି ରହି
ଜମ୍ବୁଦ୍ୱୀପ ବୋଲି ତାର ନାମଟି ଅଟଇ
ଯଜ୍ଞ କ୍ରୀୟା ଏଥି ହେଉଥାଏ ନିରନ୍ତର
ସେ ପର୍ବତୁ ଝରେ ଜଳ ଅତୀବ ନିର୍ମଳ
ସେହି ଜଳକୁ ସମାନ ନୁହଇ ଅମୃତ
ଶତଦାରେସେହି ଜଳ ହୁଏ ପ୍ରବାହିତ
ସମସ୍ତ ତଟିନୀ ପୂର୍ଣ୍ଣ ହୁଏ ସେହି ଧାରେ
ସଂଦେହ ଏଥିରେ ଭୀଷ୍ମ ନଧର ଚିତ୍ତରେ
ତା ବ୍ୟତୀତ ଆଉ ଯେତେ ରହିଛି କେଶର
ସେ ପଦ୍ମ ମଧ୍ୟରେ ସର୍ବେ ବିଶାଳ ଭୂଧର
ସେ ପଦ୍ମର ପାଖୁଡ଼ାର ସଂଖ୍ୟା ନହୋଇବ
ଖଳର ଦୁର୍ଗମ ପଦ୍ମ ମନେରଖିଥିବ
ସେ ଦେଶ ମଧ୍ୟ ଅଗମ୍ୟ ମ୍ଲେଚ୍ଛ ମାନଙ୍କର
ଏକଥା ନିଶ୍ଚୟ ଜାଣ ଶାନ୍ତନୁ କୁମର
ତଳର ପାଖୁଡ଼ା ଏହି ପଦ୍ମେ ଅଛି ଯାହା
ଦୈତ୍ୟ ଅସୁର ପନ୍ନାଗ ବାସସ୍ଥାନ ତାହା
ଦୁଇଟି ପାଖୁଡ଼ା ମଧ୍ୟେ ଅଛି ଯେ ଅନ୍ତର
ଶୁଣ ଭୀଷ୍ମ ରସାତଳ ନାମ ଅଟେ ତାର
କରିଥାନ୍ତି ଯେଉଁମାନେ ମହତ ପାତକ
ନିମଜ୍ଜି ରହିନ୍ତି ତହିଁ ହେ କୁରୁ ତିଳକ
ସେ ପଦ୍ମର ନିମ୍ନେ ଯେଉଁ ପଦ୍ମ ଅଛି ରହି
ଜଳରେ ବେଷ୍ଟିତ ତାହା ଶୁଣ କୁରୁ ସାଇଁ
ପୃଥିବୀ ତାହା ମଧ୍ୟରେ ହୋଇଅଛି ସ୍ଥିତ
ଚତୁର୍ଦ୍ଦିଗେ ହୋଇ ଭୀଷ୍ମ ସମୁଦ୍ରେ ବେଷ୍ଟିତ
ନାରାୟଣଙ୍କ ନାଭୀରୁ ଜାତ ଯେ ପୁଷ୍କର
ହୋଇଅଛି ପୃଥ୍ୱୀ ନାମେ ବିଖ୍ୟାତ ତାହାର
ସେହି କାରଣରୁ ଏହି ପୃଥିବୀର ନାମ
ପୁଷ୍କର ମଧ୍ୟ ଅଟଇ ଶୁଣ ନରୋତ୍ତମ
ଏକାରଣୁ ପୃଥ୍ୱୀ ଅଟେ ପ୍ରାଚୀନ ଯଜ୍ଞରେ
ହୋଇଛି ଆବର ପୂର୍ଣ୍ଣ ଯାଜ୍ଞିକ ଗଣରେ
ବେଦାନ୍ତ ଦ୍ରଷ୍ଟା ଅଛନ୍ତି ଏଥି ତପୋଧନ
ତାଙ୍କଦ୍ୱାରା ହୁଏ ଯଜ୍ଞ ସର୍ବଦା ସାଧନ
ପ୍ରଭୁଙ୍କଠାରୁ ଏପରି ବ୍ୟାପ୍ତ ଏହି ଧରା
ଚେତନାରେ ଯୁକ୍ତ ତାର ନାମ ବସୁନ୍ଧରା
ପର୍ବତ ନଦୀ ଏଥିରେ ରହିଛି ଯେତେକ
ତା ନିର୍ମାତା ଭଗବାନ ଭୀଷ୍ମ ମନେରଖ
ଅପ୍ରତିମ ପ୍ରଭାବ ସେ ଅଟନ୍ତି ବିଶ୍ୱର
ଆତ୍ମାଟି ତାଙ୍କର ଭୀଷ୍ମ ଅଟେ ପ୍ରଭାକର
ସଂପନ୍ନ ଅଟନ୍ତି ସେହି ବରୁଣ ଦ୍ୟୁତିରେ
ଅପରିସୀମ ସେ ଭୀଷ୍ମ ବିଚାର ଚିତ୍ତରେ
ଅଜନ୍ମ ଅଟନ୍ତି ଯେଣୁ ସେହି ସ୍ୱାୟ ଭୁବ
ଜଗନ୍ମୟ ବୋଲି ଭୀଷ୍ମ ତାହାଙ୍କୁ ଜାଣିବ
ପଦ୍ମନିଧି ଭୀଷ୍ମ ସେହି ଏ ମହର୍ଣ୍ଣବରେ
ସୁଷୁପ୍ତ ବିଶ୍ୱ ରଚିତ ତାହାଙ୍କ ଯୋଗରେ
ହେ ଶ୍ରୀରାମଚନ୍ଦ୍ର ସତ୍ୟସନ୍ଧ ଭଗବାନ
ରାଜ ମୋ ହୃଦରେ ସଦା ଜାନକୀ ରମଣ
ହେ ଦୀକ୍ଷା ପ୍ରଦାତା ଗୁରୁଦେବ ରଘୁନାଥ
ଅତି ଅନାଥ ମୁଁ ତୁମ୍ଭ ନାମ ମୋର ନାଥ
ଦୀକ୍ଷାଦେଲ ଯେଉଁ ଦିନୁ ଗୁରୁ ଦୟାକରି
ମୋ ଜଡ଼ତା ସେହିଦିନୁ କଲା ଅପସରି
ହୋଇଥିଲି ଗୁରୁ ଅତି ଉଦ୍ଦଣ୍ଡ ଅଜ୍ଞାନ
ତୁମ୍ଭ ପଦରଜ ଲଭି ଲାଭହେଲା ଜ୍ଞାନ
ଶିଷ୍ୟର ଏହି ପ୍ରାର୍ଥନା ହେ ଗୁରୁ ରଖିବ
ଶେଷେବେଳେ ତୁମନାମ ସ୍ମରଣେ ଆସିବ
ସପ୍ତଦଶ ଅଧ୍ୟା ହେଲା ଏହିଠାରେ ଶେଷ
ହେ ବିଜ୍ଞଜନେ ଏଥିରେ ଅଛି ବହୁ ଦୋଷ
ତଥାପି ଗୋପୀନାଥର ପ୍ରାର୍ଥନା ଘେନିବ
ନିଜଗୁଣେ ଅଧମରେ କ୍ଷମା ଆଚରିବ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ଭୀଷ୍ମ ପୁଲସ୍ତ୍ୟ ସଂବାଦେ
ପଦ୍ମ ଉଦ୍ଭବ ବର୍ଣ୍ଣନୋ ନାମ
ସପ୍ତଦଶୋଧ୍ୟାୟଃ ।

❑

## ଅଷ୍ଟାଦଶ ଅଧ୍ୟାୟ

### ତାରକାସୁର ଚରିତ ବର୍ଣ୍ଣନ

ପୁଲସ୍ତ୍ୟଙ୍କୁ ପଚାରିଲେ ଶାନ୍ତନୁ ନନ୍ଦନ
ତାରାକାସୁର ଉତ୍ପତ୍ତି କରନ୍ତୁ ବର୍ଣ୍ଣନ

ଭୀଷ୍ମଙ୍କର ଜିଜ୍ଞାସନେ ଋଷି କୁଳବର
କହିଲେ ହସି ଶୁଣହେ ଶାନ୍ତନୁ କୁମର
ସରଜିଲେ ଦେବେ ଯେବେ ରକ୍ଷକୁଳ କ୍ଷୟ
ସମବେତ କରି ତେବେ ଦାନବ ନିଚୟ
କହିଲା ତାରକା ସୁର ଦୈତ୍ୟକୁଳ ପତି
ହେ ରକ୍ଷେ ସମସ୍ତେ ଅଟ ବଳକର ଅତି
ସାବଧାନେ ଶୁଣ ଏବେ ବଚନ ମୋହର
ଗୀର୍ବାଣେ ଅଟନ୍ତି ଅରି ରାକ୍ଷସ କୁଳର
ତାଙ୍କ ଯୋଗୁଁ ଅସୁରଙ୍କ ବଂଶ ହୁଏ କ୍ଷୟ
ଧରମ ଅଟଇ ସଦା ତାହାଙ୍କ ସହାୟ
ଯେବେ ଆମ୍ଭେ ସୁକଠୋର ତପସ୍ୟା କରିବା
ତେବେ ଏହି ସୁରକୁଳ ନିପାତ କରିବା
ଏବେ ଆମ୍ଭେ ବାହୁବଳ କରିଣ ଆଶ୍ରୟ
କରିବା ତପସ୍ୟା ଭାବି ସୁରଙ୍କର କ୍ଷୟ
ଅସୁରେ ଏଥିରେ ମନେ ସଂଶୟ ନଧର
ଦେବତାଙ୍କ କ୍ଷୟେ ଏହା ଉତ୍ତମ ବିଚାର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ତାରକ ମୁଖରୁ ଶୁଣି ଏସନ ବଚନ
ପରସ୍ପରେ ମିଶି ଶେଷେ ବିଚାର ଛିଣ୍ଡାଇ
ପୂର୍ଣ୍ଣ ସମର୍ଥନ ଦେଲେ ତାହାକୁ ଜଣାଇ
ତାରକାସୁର ଶୁଣି ସେ ସମ୍ମତି ବଚନ
ସଙ୍ଗତରେ ଘେନି ସବୁ ଅସୁର ସଇନ
ପରିପାତ୍ର ନାମେ ଯେଉଁ ଗିରି ରହିଥିଲା
ଯାଇ ତହିଁ ରକ୍ଷରାଜ ନିବାସ ରଚିଲା
ତପକଲେ ରକ୍ଷେ ତହିଁ ରହି ନିରାହାରେ
ପତ୍ର ଉପଯୋଗ କରି କେବେ ବା ଆହାରେ
ହୋଇଥିଲା ସେ ତପସ୍ୟା ଅତ୍ୟନ୍ତ କଠୋର
ପରିମାଣ ଦଶସସ୍ର ବତ୍ସର ତାହାର
ଅସୁରଙ୍କ କାୟ କ୍ଳେଶ ଅଟଇ ବିଚିତ୍ର
ତାରଫଳେ ବହୁ ପୁଣ୍ୟ ହୋଇଲା ସଞ୍ଚିତ
ବ୍ରହ୍ମାଙ୍କ ଆସନ ତେବେ ହେଲା ଟଳମଳ
ଶୁଣ ଭୀଷ୍ମ ଅଟେ ଏହା ତପସ୍ୟାର ଫଳ
ସେ ତପେ ସନ୍ତୁଷ୍ଟ ହୋଇ କମଳ ଆସନ
ନିଯେ ଦୈତ୍ର ସମ୍ମୁଖକୁ କଲେ ଆଗମନ
କହିଲେ ସୁବ୍ରତ ମାଗି ନିଅ ଏବେ ବର
ଦେବି ତାହା ନିଶ୍ଚେ ମୁହିଁ ଯେ ଇଚ୍ଛା ତୁମ୍ଭର

କହିଲା ଅସୁର ଶୁଣି ସେ ବ୍ରହ୍ମା ବଚନ
ପ୍ରୀତ ଯେବେ ମୋହପ୍ରତି ଚତୁର-ଆନନ
ମାଗେ ମୋତେ ପ୍ରଭୁ ତେବେ ଦିଅ ଏହିବର
ସର୍ବଭୂତ କରେ ମୃତ୍ୟୁ ନହେଉ ମୋହର
ଦୈତ୍ୟର ବଚନେ ବ୍ରହ୍ମା କହିଲେ ରେ ସୁତ
ସଂସାରରେ ଜନ୍ମହେଲେ ମରଣ ନିଶ୍ଚିତ
ଏହିକଥା ଭଲେ ମନେ କରିଣ ବିଚାର
ନିଅ ଇଚ୍ଛା ମତେ ବାବୁ ମାଗି ଆନ୍ୟବର
ମୃତ୍ୟୁଶଂକା ଦୂରହେବ ଯେଉଁ ଉପାୟରେ
ଚିନ୍ତାକରି ମାଗ ବର ଯଥା ଉଚିତରେ
କହିଲା ତା ଶୁଣି ଭାବି ଦନୁଜ ପ୍ରଧାନ
ମୋଠାରେ ସୁପ୍ରୀତ ଯେବେ ସାବିତ୍ରୀ ରମଣ
ମାଗେ ତେବେ ପ୍ରଭୁ ମୋତେ ଦିଅ ଏହି ବର
ସାତଦିନ ଶିଶୁ କରେ ମୃତ୍ୟୁ ହେଉ ମୋର
ସାତ ଦିନର ସଂତାନ ମୋର କି କରିବ
ମୋହବଶେ ଏ ବିଚାର କରି ସେ ଦାନବ
ତେଣୁ ମାଗିଲା ଏ ବର ଶାନ୍ତନୁ କୁମର
ଦୈତ୍ୟର ବଚନେ ହସି ସାବିତ୍ରୀଙ୍କ ବର
ମାଗିଲା ଏ ବର ଶୁଣ ଶାନ୍ତନୁ କୁମର
ପୁଣି ଦେବମାୟା ବୁଦ୍ଧି ହରିଥିଲା ତାର
ଦୈତ୍ୟଠାରୁ ଶୁଣି ବ୍ରହ୍ମା ବଚନ ଏପରି
ତଥାସ୍ତୁ କହିଣ ଗଲେ ଆପଣା ନଗରୀ
ବ୍ରହ୍ମା ଯିବାପରେ ଦୈତ୍ୟ ହରଷ ଅନ୍ତରେ
ପ୍ରବେଶ ହୋଇଲା ଶେଷେ ଯାଇ ସ୍ୱନବରେ
ଘରକୁ ଯାଇ ତାପରେ ରାକ୍ଷସ ଈଶ୍ୱର
ନିଜର ଅମାତ୍ୟଗଣେ ଡ଼କାଇ ସବର
କହିଲା ସଜ୍ଜିତ କରି ସେନାଙ୍କୁ ଆଣିବ
ଅକ୍ଷରେ ଅକ୍ଷରେ ମୋର ଆଦେଶ ପାଳିବ
ମୋହର ଆଜ୍ଞାକୁ ଯେହୁ କରିବ ଅନ୍ୟଥା
ଶତ୍ରୁରୂପେ ସେହି ମୋର ରହିବ ସର୍ବଥା
କାମନା ମୋହର ସୁରକୁଳର ବିନାଶ
ତା ବିନା ମୋ ହୃଦ କେବେ ନ ଲଭିବେତ
ଏଣୁ ସମସ୍ତ ଦାନବ ଅସ୍ତ୍ର ଶସ୍ତ୍ର ଧରି
ଆସ ମୋ ସଙ୍ଗରେ କିଛି ବିଳମ୍ବ ନକରି
ତାରକ ଅସୁର ମୁଖୁ ଶୁଣି ଏହି ବାଣୀ
ସଜ୍ଜିତ ହୋଇ ସେନାଏ ଆସିଲେ ସେ କ୍ଷଣି

ଗ୍ରସନ ନାମେ ଅସୁର ସେ ସେନା ନାୟକ
ତାର ନାମ ଶୁଣିଭୟେ ଥରିଯାନ୍ତି ଲୋକ
ତାରକା ସୁର ବଚନ କର୍ଣ୍ଣପୁଟେ ଶୁଣି
ସେନାଙ୍କୁ ସଜାଇ ଦୈତ୍ୟ ଆଣିଲା ସେକ୍ଷଣି
ମନାସି ମନରେ ଦେବଗଣର ଅଜୟ
ପତାକାଧରି ଚଳିଲେ ରାକ୍ଷସ ନିଚୟ
ରାକ୍ଷସଙ୍କ ଯୁଦ୍ଧ ସଜ ଦେଖି ସମୀରଣ
ପ୍ରବେଶିଲେ ସେହିକ୍ଷଣି ଇନ୍ଦ୍ରଙ୍କ ଭୁବନ
ସଭାକରି ବସିଥିଲେ ଦେବଙ୍କ ଈଶ୍ୱର
ବେଢ଼ି ତାଙ୍କୁ ତହିଁ ବସିଥିଲେ ସର୍ବସୁର
ସମୀର ସେ ସଭା ମଧ୍ୟେ ଯାଇ ପ୍ରବେଶିଲେ
ଭାବୀ ଦୁଃଖ ଭାବି ଅତି ଶୀର୍ଣ୍ଣ ହୋଇଗଲେ
କହିଲେ ବର୍ଣ୍ଣନା କରି ସେକାଳେ ସମୀର
ତାରକାର ଯୁଦ୍ଧ ସଜ୍ଜ କରିଣ ବିସ୍ତାର
ପ୍ରଭଞ୍ଜନ ମୁଖୁ ଶୁଣି ସମସ୍ତ ବିଷୟ
ଚକ୍ଷୁ ବୁଜି ଭାବି କ୍ଷଣେ ଶଚୀଦେବୀ ପ୍ରିୟ
ମହାମତି ବୃହସ୍ପତି ପାରୁଶକୁ ଗଲେ
ଅତିଶୟ ଦୁଃଖେ ଏହି ବଚନ କହିଲେ
ଆହେ ସୁରଗୁରୁ ଏବେ ହେଲା ଯେ ଘଟଣା
ଜାଣେ ତହୁଁ ସୁରାସୁରେ ହେବ ସଂଘର୍ଷଣ
ହେ ଗୁରୁ କହନ୍ତୁ ଏଥି କିବା ପ୍ରତିକାର
କି ଉପାୟ କରି ଏଥୁ ଲଭିବା ନିସ୍ତାର
ଅଟନ୍ତି ଆପଣ ଗୁରୁ ଜ୍ଞାନରେ ଗରିଷ୍ଠ
ପୁଣି ଭାବନ୍ତି ସର୍ବଦା ହୃଦେ ସୁର ଇଷ୍ଟ
ଚିନ୍ତା କରିଣ କହନ୍ତୁ ଉତ୍ତମ ଉପାୟ
ଯାହାଫଳେ ରକ୍ଷକୁଳ ଭଜିବେ ବିଳୟ
ଇନ୍ଦ୍ରଙ୍କର ଆର୍ତ୍ତଯୁକ୍ତ ଶୁଣି ସେହି ବାଣୀ
ଉଦାର ବୁଦ୍ଧି ବୀଷ୍ପତି ମନେ ମନେଗୁଣି
କହିଲେ ସାମବେଦରେ ଅଛି ଏହି ନୀତି
ହାତୀ ଘୋଡ଼ା ରଥ ସହ ସଇନ ପଦାତି
ଚତୁରଙ୍ଗିଣୀ ସେନାରେ ହୁଏ ଏ ଗଣନ
ପଠାଇ ତାହାଙ୍କୁ କାର୍ଯ୍ୟ କରିବ ସାଧନ
ସନାତନ ଏହିରୀତି ଯେହୁ ଆଚରିବ
ଆହବରେ ସେହି ନିଶ୍ଚେ ସୁଫଳ ପାଇବ
ସାମ ଦାନ ଭେଦ ଦଣ୍ଡ ଏହି ଚରି ନୀତି
ବେଦରେ ଅଛି ଭଲେ ତା ପାଳିବ ନ ପତି

ବୁଝା ସୁଝାରେ ଯେ କାର୍ଯ୍ୟ ହୁଅଇ ସାଧନ
ସମାଧାନ ସୂତ୍ରେ ତାର ନାମ ଅଟେ ସାମ
ଶତ୍ରୁ ସୈନ୍ୟଙ୍କ ମଧ୍ୟରେ ଖଣ୍ଡିଣ ବିଭେଦ
ସାଧିଲେ କାର୍ଯ୍ୟ ତାହାର ନାମ ଅଟେ ଭେଦ
ବିଓଧାନେ ତୋଷକରି ଶତ୍ରୁଜନ ମନ
କାର୍ଯ୍ୟ ସାଧ୍ୟକଲେ ତାର ନାମ ଅଟେ ଦାନ
ସାଧନ ନହେଲେ କାର୍ଯ୍ୟ ଏ ତିନି ନୀତିରେ
କରମ ସାଧିବ ଦଣ୍ଡ ନୀତି ପ୍ରୟୋଗରେ
ବେଦ ନିରୂପିତ ଏହି ଚରି ଦଣ୍ଡ ନୀତି
ବିଚରି କର ପ୍ରୟୋଗଆହେ ଶଚୀପତି
ଇନ୍ଦ୍ର ଦେବଗୁରୁଙ୍କର ଶୁଣି ସେହି ବାଣୀ
ସମସ୍ତ ସୁରଙ୍କ ପାଶେ ଡ଼ାକିବ ସେକ୍ଷଣି
କହିଲେ ସ୍ୱର୍ଗରେ ଅଟେ ନିବାସ ତୁମ୍ଭର
ଶୌର୍ଯ୍ୟବନ୍ତ ସର୍ବେ ଶୁଣ ଏ ବଚନ ମୋର
ସଂଖ୍ୟାରେ ତେତିଶି କୋଟୀ ସର୍ବେମହାବିତ
ଆବର ଜାଣିଛ ସବୁ କଳ କଉଶଳ
ତ୍ରିଲୋକର ଯାଗ ଭାଗ ଅଟଇ ତୁମ୍ଭର
ବୁଦ୍ଧିରେ ଅଧିକ ପୁଣି ସମସ୍ତେ ଚତୁର
ମହତ ଆତ୍ମା ଅମରେ ଜାଣଇ ଜଗତ
ସର୍ବଦା ଯୁବକ ତେଣୁ ବୋଲାଅ ତ୍ରିଦଶ
ମହିମା ଦେବତାଙ୍କର ଅଟଇ ପ୍ରସିଦ୍ଧ
ବେଦ ଶାସ୍ତ୍ରାଦିରେ ଏହା ହୋଇଅଛି ସିଦ୍ଧ
ତୁମ୍ଭର ନୃପତିରୂପେ ତୁମ ପାଶେ ରହି
ସୁଖରେ ମୋହର କାଳ ଯାଉଅଛି ବହି
ତୁମ୍ଭର ସାହାଯ୍ୟ ଲଭି ଆହେ ଦେବଗଣ
ନୃପତିରୂପେ ତ୍ରିପୁର କରେ ମୁଁ ପାଳନ
ମୋ ବଚନ ମାନି ସର୍ବ ଦେବଗଣ ଯାଅ
ମହତ ସଂଗ୍ରାମ ପାଇଁ ସଜ ହୋଇ ଥାଅ
ଦେବସୈନ୍ୟ ଯେତେ ସର୍ବେଜନ ହୋଇଥିବ
ଡାକରା ହେଲେ ବିଳମ୍ବ ନକରି ଆସିବ
ଶାଣ ଦେଇ ଶସ୍ତ୍ର ସବୁ ରଖିବ ଜାଗ୍ରତ
ହାତୀ, ଘୋଡ଼ା, ରଥ ରଖ କରି ସଂଯୋଜିତ
ସେନାପତି ପଣେ ଯମ ରହିବେ ଆଗରେ
ନିର୍ଭାହେବ ଏ ସମର ତାଙ୍କ ଇଙ୍ଗିତରେ
ଏ ସବୁ କରିବ ଯେତେ ଚଞ୍ଚଳ ପାରିବ
ଡାକିଲା ବେଳକୁ କେହି ନାହିଁ ନ କରିବ

ସହସ୍ର ନୟନଙ୍କର ଶୁଣି ସେ ବଚନ
ଅତିଶୟ ପ୍ରଫୁଲିତ ହେଲେ ସୁରଗଣ
କହିଲେ ହେ ଶଚୀପ୍ରିୟ ତୁମ୍ଭେ ସୁର ଶ୍ରେଷ୍ଠ
ଅଟନ୍ତି ଆପଣ ସବୁ ଦେବଙ୍କେ ଗରିଷ୍ଠ
ସହସ୍ର ଦେବ ବନ୍ଦିତ ସଦା ତୁମ ପାଦ
ତୁମ୍ଭର ଅଟଇ ପ୍ରଭୁ ଏ ସ୍ୱର୍ଗ ସଂପଦ
ଅନ୍ୟଥା ନହେବ କେବେ ଆଦେଶ ତୁମ୍ଭର
ହେ ଶଚୀପତି ଏ କାର୍ଯ୍ୟ ନୁହେଁ କି ଆମ୍ଭର
ତେବେ ସୈନ୍ୟଗଣ ଯେବେ କଲେ ଆଗମନ
ଦେଖ ଗଲା ତ୍ରିପିଷ୍ଟପ ଅତ୍ୟନ୍ତ ଶୋଭନ
ଅଶ୍ୱ, ହାତୀ ରଥେ ସ୍ୱର୍ଗ ହୋଇଲା ସଂକୁଳ
ଯୁଦ୍ଧ ସଜେ ରୁଣ୍ଡହେଲେତହିଁ ସୁର କୁଳ
ଅସିପତ୍ର ଶୋଭୁଥିଲା ସମସ୍ତଙ୍କ କରେ
ବିମଣ୍ଡିତ ଥିଲା ଦେହ ଦିବ୍ୟ ଅଳଙ୍କାରେ
ପଦାତି ଆସିଲେ କେତେ ତାର ସଂଖ୍ୟା ନାହିଁ
ତାହାଙ୍କ ହୁଂକାରେ ପୂର୍ଣ୍ଣଥିଲା ସ୍ୱର୍ଗ ଭୂଇଁ
ଗଦା, ଚକ୍ର, ଧନୁ ଆଦି ଆୟୁଧ ବହୁତ
ସମସ୍ତଙ୍କ କର କରିଥିଲା ସୁଶୋଭିତ
ମହତ ଧ୍ୱନୀରେ ଯୁଦ୍ଧ ବାଇଦ ବାଜିଲା
ଅସ୍ତ୍ର ଶସ୍ତ୍ର ରଖି ରଥେ ସାରଥି ବସିଲା
ଗନ୍ଧର୍ବ ସିଦ୍ଧ ମରୁତ ଅଶ୍ୱିନୀ କୁମାର
ଗନ୍ଧର୍ବ ଯକ୍ଷ ଚାରଣ ସହ ପୁରନ୍ଦର
ଯୁଦ୍ଧ ସଜେ ବାହାରିଲେ କରେ ଶସ୍ତ୍ରଧରି
ବାହାରିଣ ଯେବେ ଦୈତ୍ୟେ ଗଲେ ସ୍ୱର୍ଗପୁରି
ପ୍ରହାରିଲେ ଦେବେ ଶସ୍ତ୍ର ଦୈତ୍ୟଙ୍କ ଉପରେ
ସର୍ବେ ଯୋଦ୍ଧା ଊଣା କେହି ନୁହନ୍ତି ବଳରେ
ପର୍ବତ ପରାୟେ ଯେଣୁ ରାକ୍ଷସ ଶରୀର
ତାଙ୍କ ଦେହେ ବାଜି ଅସ୍ତ୍ର ହୋଇଗଲା ଚୁର
ତାରକ ଅସୁର ଦେଖି ଦେବଙ୍କ ସମର
ମହା କ୍ରୋଧରେ କମ୍ପାଇ ଆପଣା ଶରୀର
ସ୍ୟନ୍ଦନରୁ ଅବତରି ତଳେ ହେଲା ଠିଆ
ମହତ ଯୁଦ୍ଧେ ସୁରଙ୍କୁ କରିଣ ଛାନିଆ
କୋଟି କୋଟି ଦେବତାଙ୍କ ଘେନିଲା ପରାଣ
ଅବାସେ ଅଟଇ ଦେବ କୁଳାନ୍ତକ ଯମ
ସବୁସୁରେ ମଲେ ମିତ୍ର ଅଳପ ବଞ୍ଚିଲେ
ଭୟବଶୁ ନାନାଦିଗେ ଧାଇଁ ପଳାଇଲେ
ଯୁଦ୍ଧପାଇଁ ଅସ୍ତ୍ର ଶସ୍ତ୍ର ଆଣିଥିଲେ ଯାହା
ଯୁଦ୍ଧସ୍ଥଳେ ଥିଲା ସଙ୍ଗେ ନେଲେ ନାହିଁ ତାହା
ପୃଷ୍ଠଭଙ୍ଗ ଦେଇ ସୁରେ ଧାଇଁଯିବା ଜାଣି
ଦୈତ୍ୟେଙ୍କୁ ଡାକି ତାରକା କହିଲା ଏ ବାଣୀ
ସୁର ଗଣଙ୍କୁ ନ ମାର ଏବେ ଆଉ କେହି
ଯୁଦ୍ଧ ଛାଡ଼ି ସର୍ବେ ଯେଣୁ ଗଲେଣି ପଳାଇ
ସର୍ବେ ଆସ ମୋର ସଙ୍ଗେ ଇନ୍ଦ୍ରକୁ ଦେଖିବା
ତା ବଜ୍ରର ଟାଣ କେତେ ପରୀକ୍ଷା କରିବା
ଶୁଣି ତାହା ରକ୍ଷବୀରେ ବେଗହୋଇ ଗଲେ
ସଇନ୍ଦ୍ର ଦିଗପାଳଙ୍କୁ ସମରେ ଜିଣିଲେ
ସମସ୍ତଙ୍କୁ ଅତି ଦୃଢ଼େ କରିଣ ବନ୍ଧନ
ତାରକାସୁର ସମ୍ମୁଖେ ନେଲେ ଯାତୁଧାନ
ଦେବତାଙ୍କୁ ବନ୍ଦୀ କରି ଦୁରାତ୍ମା ଅସୁର
ସୁଖରେ ରହିଲା ଦେବଲୋକେ କରି ଘର
ଇନ୍ଦ୍ରପରି ହେଲା ସିଦ୍ଧ ଗନ୍ଧର୍ବେ ସେବିତ
ଖଟିଲେ ତାହାକୁ ନିତି ଅପସରି ବ୍ରତ
ମହା ସୁଖରେ ରାକ୍ଷସ ସ୍ୱର୍ଗରେ ରହଲା
ମଝିରେ ତାର ନବର ମନୁ ପାଶୋରିଲା
ତାରକର ସ୍ୱର୍ଗଜୟ ହୋଇଲା ସଂପୂର୍ଣ୍ଣ
ରାଜମୋହହୃଦରେ ସଦା ଜାନକୀ ରମଣ
କାୟ ମନ ବଚନରେ ଭୁଲ ଯେବେ ଥିବ
ନଧରି ତା ମୋ ହୃଦରେ ନିରତେ ରହିବ
ସ୍ୱାର୍ଥହେଲା ଜନ୍ମ ବୋଲି ତେବେ ବିଚାରିବି
କହେ ଗୋପୀନାଥ ପ୍ରଭୁ ପଦ ସେବୁଥିବି

ଇତି ଶ୍ରୀ ପଦ୍ମ ପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ
ଦେବଗଣ ଯୁଦ୍ଧ ସଜ୍ଜା ତଥା
ତାରକାସୁର ସ୍ୱର୍ଗଗମନ ବର୍ଣ୍ଣନୋ ନାମ
ଅଷ୍ଟାଦଶୋଽଧ୍ୟାୟଃ ।

❑

## ଊନବିଂଶ ଅଧ୍ୟାୟ

### ସର୍ବ ଦେବକୃତ ବ୍ରହ୍ମାସ୍ତୁତି

କହିଲେ ପୁଲସ୍ତ୍ୟ ହର୍ଷଭରେ ତଦପରେ
ଆଦରେ ବସାଇ ପାଶେ ଶାନ୍ତନୁ କୁମରେ

ପ୍ରତିହାରୀ ଜଣେ ତହିଁ ସେକାଳେ ଆସିଲା
ସୁଶୁଭ୍ର ଅତ୍ୟନ୍ତ ସୂକ୍ଷ୍ମ ବସ୍ତ୍ର ପିନ୍ଧିଥିଲା
ଘୋଡ଼ାଇଥିଲା ନିଜର ମୁଖକୁ ସ୍ୱକରରେ
ଚାଲୁଥିଲା ଜାନୁଭରା ଦେଇଣ ଭୂଇଁରେ
କହୁଥିଲା ଯେ ବାକ୍ୟ ତା ଅତ୍ୟନ୍ତ ନିର୍ମଳ
ଅଳ୍ପାକ୍ଷର ମାତ୍ର ପଦ ଅତି ସୁମଞ୍ଜୁଳ
ଦେହାର କାନ୍ତି ତାହାର ସୂର୍ଯ୍ୟଙ୍କ ସମାନ
ପ୍ରବେଶି କହିଲା ଦୈତ୍ୟରାଜେ ଏ ବଚନ
କାଳନେମୀ ଦେବଗଣେ କରିଣ ବନ୍ଧନ
ରଖିଅଛି ଆଣି ଦ୍ୱାରେ ହେ ରକ୍ଷରାଜନ
ଆଜ୍ଞାଦିଅ ପ୍ରଭୁ ଏବେ ସର୍ବେ କି କରିବେ
ସେହିଠାରେ ଥିବେ ଅବା ବନ୍ଦୀଘରେ ଯିବେ
ଅବା ଅନ୍ୟ କେଉଁସ୍ଥାନେ ତାହାଙ୍କୁ ରଖିବ
ବିଚାର କରି ସେ କଥା କହିବା ହୋଇବ
ରାକ୍ଷରାଜ ଶୁଣି ପ୍ରତିହାରୀର ସେ ବାଣୀ
କହିଲା ତାପରେ ରହି କ୍ଷଣେ ହୋଇ ତୁନୀ
ବନ୍ଦୀ ମାନଙ୍କୁ ସେ କଥା ଯାଇ ପଚାରିବୁ
ଯେଉଁଠି କହିବେ ତାଙ୍କୁ ସେଠାରେ ରଖିବୁ
ତିନି ଭୁବନତ ଅଛି ମୋର ଅଧିକାରେ
ଯେଉଁଠି ହୋଇବ ଇଚ୍ଛା ରହନ୍ତୁ ସେଠାରେ
ବନ୍ଦୀଙ୍କ ମଧ୍ୟରେ ଯାର ନାମ ସୁନାଶିର
ମୁଣ୍ଡନ ତାହାକୁ ଏବେ ଯାଇ ତୁହିକର
ଛାଡ଼ିଦିଅ ତାକୁ ଯାଉ କରାଇ ମୁଣ୍ଡନ
ଶୁଭବସ୍ତ୍ର ଦିଅ କରୁ ଶରୀର ମଣ୍ଡନ
କୁକୁର ପାଦର ଦାଗ ତା ଦେହରେ ଦେବ
ଛାଡ଼ିଦେବୁ ଯେଣେ ତାର ଇଚ୍ଛା ହେବ ଯିବ
ପ୍ରତିହାରୀ ଯହୁଁ ନୃପ ଆଦେଶ ପାଇଲା
ଅକ୍ଷରେ ଅକ୍ଷରେ ପାଳି ତାହା ଆଚରିଲା
ଦୁଃଖିତ ହୋଇଲେ ତାହା ଦେଖି ସର୍ବସୁରେ
ନସ୍ଫୁରିଲା ବାକ୍ୟ ଦୁଃଖେ କାହାରି ମୁଖରେ
ତଦନ୍ତରେ ସବୁ ସୁରେ ଏକାଠି ହୋଇଲେ
ଜଗତର ଗୁରୁ ପଦ୍ମଭବ ପାଶେ ଗଲେ
ଆଉକେ ଶରଣ ଯେଣୁ ନଥିଲା ତାଙ୍କର
ଆଉ କି କରନ୍ତେ କହ ଶାନ୍ତନୁ କୁମର
ସମସ୍ତଙ୍କ ମୁଖଥିଲା ଯୁକ୍ତ ବିରାଗରେ
ପ୍ରଣତ ହୋଇଲେ ଧାତା ପଦ ପଙ୍କଜରେ

ତଦପରେ ସୁରଗଣ ବ୍ରହ୍ମା ତୋଷପାଇଁ
ଆରମ୍ଭିଲେ ସ୍ତୁତିବାଣୀ ଯୋଡ଼କର ହୋଇ
କାମନା ସ୍ୱମନେ ମନେ ଧରି ଦେବଗଣ
କହିଲେ ଗଦ୍ ଗଦ୍ ହୋଇ ସ୍ତୁତିରେ ବଚନ
ସେହି ସ୍ତବେ ପଦ୍ମଯୋନୀ ହୋଇଣ ସଂତୋଷ
ବାମକର ଟେକି ଦେବେ ବିହିଲେ ନିର୍ଦ୍ଦେଶ
ପାଶକୁ ଆସିବା ଜାଣି ତେବେ ସୁରଗଣ
କହିଲେ ପ୍ରମୋଦ ଭରେ ଚତୁର ଆନନ
ଉଦାର କିପାଇଁ ସୁରେ କର ତା ପ୍ରକାଶ
ପଚାରନ୍ତେ ଏହିପରି ସାବିତ୍ରୀଙ୍କ ଈଶ
ସୁରଙ୍କର ପ୍ରତିନିଧି ରୂପେ ପ୍ରଭଞ୍ଜନ
କରଯୋଡ଼ି ଅତି ଦୁଃଖେ କହିଲେ ଏସନ
ଜାଣନ୍ତି ତ ଶଚୀନାହା ନୃପତି ଆମ୍ଭର
ପୁରନ୍ଦର ବୋଲି ନାମ ଖ୍ୟାତ ଯାହାଙ୍କର
ସ୍ୱର୍ଗ ରାଜ୍ୟର ଅଟନ୍ତି ସେହି ଅଧିପତି
ଅମରାବତୀ ଅଟଇ ତାହାଙ୍କ ବସତି
ଅସଂଖ୍ୟ ଦୈତ୍ୟ ଅମରାବତୀକୁ ଘେରିଲେ
ବଳରେ ଅମରଗଣେ ପରାଜିତ କଲେ
ଜଗତର ହିତ ପୁଣି ସଂସ୍ଥାପନା ପାଇଁ
ମହତ ଯଜ୍ଞାନୁଷ୍ଠାନ କଲେ ସଚୀସାଇଁ
ଆହେପ୍ରଭୁ ତିନିପୁରେ ଅଦ୍ଭୁତ ସେ ଯାଗ
କୌଣସି ଯୁଗେ ନଥିଲା କେବେ ନ ହୋଇବ
ବିଚିତ୍ରଗୁଣ ସେ ଯାଗ କଲେ ପୁରୁହୂତ
ପୂର୍ଣ୍ଣ ଯଜ୍ଞ ଶ୍ରୁତକର୍ମ ଫଳରେ ଯୁକତ
ମହର୍ଷିମାନଙ୍କେ ତାହା ରଚିତ ହୋଇଲା
ବ୍ରହ୍ମା ର୍ପଣେ ଶେଷେ ତାହା ବିନିଯୋଗ ହେଲା
କାମନା ଥିଲା ଯେ ହେବ ଭୋକ୍ତା ସେ ଯଜ୍ଞରେ
ସ୍ୱର୍ଗରେ ତାହାର ସ୍ଥାନ ହେବ ନିରନ୍ତର
ଏବେ ସେ ସ୍ୱର୍ଗକୁ ପ୍ରଭୁ ଦୁରାତ୍ମା ଦଇତ
କରଦ ଭୂମି ପରାଯେ କଲେ କରଗତ
ସଂପତ୍ତି ସହ ସ୍ୱର୍ଗର ଯେତେକ ବିମାନ
ଅପହୃତ କରି ନେଲେ ସର୍ବ ଯାତୁଧାନ
ସବୁଗୁଣେ ସବୁଲୋକେ ଶ୍ରେଷ୍ଠ ସୁର ଲୋକ
କରି ରଚିଥିଲା ପ୍ରଭୁ ତୁମ୍ଭର ବିବେକ
ସେ ପବିତ୍ର ଶ୍ରେଷ୍ଠ ରାଜ୍ୟ ଏବେ ରକ୍ଷାଧୀନ
ହେବାରୁ ଅଛନ୍ତି ସୁରେ ଅରକ୍ଷ ସମାନ

ଦେବଙ୍କ ମୁଖରୁ ଶୁଣି ଏସନ ଭାଷଣ
କହିଲେ ଅତି ଆଗ୍ରହେ ସାବିତ୍ରୀ ରମଣ
ଜାଣେ ତାରକ ଯୋଗରୁ ଏ ଦଶା ତୁମ୍ଭର
ଦେବଙ୍କର ଶତ୍ରୁ ସେହି ଅଟେ ନିରନ୍ତର
ସମସ୍ତ ଅମରଙ୍କୁ ସେ ରଖି ସ୍ୱବଶରେ
ପ୍ରକାଶ ଲଭିଛି ବିଘ୍ନପ୍ରଦ ତା ରୂପରେ
ସୁର ଅସୁର ମଧ୍ୟରେ ସେପରି କେ ନାହିଁ
ଦୁଷ୍ଟ ତାରକାସୁରର ବଧ ଯୋଗ୍ୟ ହୋଇ
ଯାହାର କରେ ମରିବ ଦୁରାତ୍ମା ରାକ୍ଷସ
ଜନ୍ମି ନାହିଁ ତ୍ରିଭୁବନେ ସେପରି ପୁରୁଷ
ପ୍ରଦାନ କରିଣ ମୁହିଁ ତାକୁ ଏହି ବର
ହେ ସୁରେ ହୋଇଛି ଏବେ କ୍ଷୋଭିତ ଅନ୍ତର
ମୋର ସେହି ବର ଫଳେ ରାକ୍ଷସ ରାଜନ
ହୋଇଅଛି ଚରାଚର ଭୟର କାରଣ
ଦେଖି ତେବେ ଅସୁରର ତପସ୍ୟା ପ୍ରଭାବ
ବିଚାରିଲି ତପ ବଳେ ତ୍ରିପୁର ଦହିବ
ନଦେଇଥିଲେ ମୁଁ ତାକୁ ତେବେ ଏହି ବର
ଶୁଣ ସୁରେ ଭସ୍ମ ହୋଇ ଥାଆନ୍ତା ତ୍ରିପୁର
ଅମର ବର ସେକାଳେ ଯେବେ ସେ ମାଗିଲା
ସେହିକାଳେ ମୋ ହୃଦରେ ଚେତନା ପଶିଲା
ତାର ସେ ଦୁର୍ବାର ଇଚ୍ଛା ପୂରଣ ନକଲି
ସାତଦିନ ଶିଶୁ ହାତେ ମରିବୁ କହିଲି
ଏହି କଥାକୁ ନିଶ୍ଚୟ କର ସବୁ ସୁରେ
ମରିବ ରକ୍ଷ ସପତ ଦିନ ଶିଶୁ କରେ
ଅନ୍ୟ କାହାଠାରେ ଏହା ନୁହଇ ସଂଭବ
ଶିବ ଯଦି ବିଚାରିବେ କାର୍ଯ୍ୟ ସିଦ୍ଧ ହେବ
ଶଙ୍କର ବୀର୍ଯ୍ୟରୁ ଯେବେ ସଂଭବ ସେ ହେବ
ଜନ୍ମଠାରୁ ସାତଦିନେ ଦୈତ୍ୟକୁ ମାରିବ
ସୂର୍ଯ୍ୟଙ୍କ ତେଜ ସମାନ ତେଜ ଦେହ ଧରି
ଅକ୍ଳେଶରେ ତାରକାକୁ ପକାଇବ ମାରି
ମାତ୍ର ଏବେ ବିପତ୍ନିକ ଅଛନ୍ତି ଶଙ୍କର
ହିମାଚଳେ ହେବ ଆବିର୍ଭାବ ସତୀଙ୍କର
ବରିବେ ଶିବଙ୍କୁ ସେହି ସ୍ୱପତି ରୂପରେ
ଅଳ୍ପ କାଳେ ତା ହୋଇବ ଶୁଣ ସବୁସୁରେ
ତାଙ୍କ କ୍ଷେତ୍ରୁ ଯେଉଁ ସୁତ ହେବ ଉତପନ୍ନ
ସେ ହେବ ଅରଣ୍ୟସ୍ଥିତ ପାବକ ସମାନ
ସେ ଜନ୍ମ ହେଲେ ତାରକ ଆୟୁ ଶେଷହେବ
ସୁରଗଣ ଏହି କଥା ହୃଦରେ ରଖିବ
କରିବାକୁ ହେବ ଯାହା ତୁମ୍ଭେ ଏଥି ପାଇଁ
ବାଣ୍ଟିଦେବି ପରେ ସୁରେ ସବୁକଥା କହି
ପ୍ରତୀକ୍ଷା କରିଣ ରହ ଏବେ ସବୁ ସୁର
ମନରୁ ସବୁ ସଂଦେହ କରିଦେଇ ଦୂର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ବ୍ରହ୍ମାଙ୍କ ଶ୍ରୀମୁଖୁ ଶୁଣି ଏସନ ବଚନ
ସର୍ବେ ତାଙ୍କ ଚରଣରେ ପ୍ରଣପତ୍ୟ ହେଲେ
ମନସୁଖେ ଯେ ଯାହାର ନବରେ ଗମିଲେ
ଦେବଗଣ ଯିବାପରେ କମଳ ଆସନ
ନିଶା ଦେବୀଙ୍କୁ ଧ୍ୟାନରେ କଲେ ସୁମରଣ
ଶୁଣ ଭୀଷ୍ମ ପୂର୍ବକାଳେ ନିଶାର ଉତ୍ପତ୍ତି
କରିଥିଲେ ସ୍ୱ ମନରୁ ସାବିତ୍ରୀଙ୍କ ପତି
ସ୍ମରଣ ମାତ୍ରକେ ରାତ୍ରୀ ହୋଇ ଉପଗତ
ବିଧିଙ୍କ ପଦ୍ମ ଚରଣେ ମଥା କଲେ ନତ
ବିଭାବରୀଙ୍କୁ ନିରେଖି ଘରେ ଏକୁଟିଆ
ଯେହୁ ତାହାଙ୍କ ସମ୍ମୁଖେ ହୋଇଥିଲେ ଠିଆ
କହିଲେ ତାହାଙ୍କୁ ତୋଷେ କମଳ ଆସନ
ଶୁଣ ଆଗେ ବିଭାବରୀ ମୋହର ବଚନ
ପଡିଅଛି ଏବେ ବଡ଼ କାର୍ଯ୍ୟ ଦେବଙ୍କର
ଜାଣେ ମୁଁ ସାଧ୍ୟ ଅଟଇ ସେ କାର୍ଯ୍ୟ ତୁମ୍ଭର
ସେଥିପାଇଁ ଯାହା ମୁହିଁ କରିଛି ନିଶ୍ଚୟ
ଶୁଣ ସେହି କଥା ତୁମ୍ଭେ ଭଲେ ରଖି ଲୟ
ତାରକ ନାମରେ ଅଛି ଅସୁର ଈଶ୍ୱର
ପ୍ରବଳ ଶତ୍ରୁ ଅଟଇ ସେ ସୁର କୁଳର
ଆବର ସମରେ ସେହି ଅଟଇ ଅଜିତ
ତ୍ରିଲୋକ ତା କରଣୀରେ ହୁଅଇ ବ୍ୟଥିତ
ଈଶ୍ୱର ବୀର୍ଯ୍ୟରେ ଯେବେ ପୁତ୍ର ଜନ୍ମ ହେବ
ତେବେ ତାର କରେ ଦୁଷ୍ଟ ରାକ୍ଷସ ମରିବ
ଏଥିରେ ସଂଦେହ କିଛି ନାହିଁ ବିଭାବରୀ
ମନେରଖ ଏହା ଅଟେ ବିଧାନ ମୋହରି
ଜାଣ ଦକ୍ଷ ପ୍ରଜାପତି ସୁତା ସତୀ ଥିଲେ
ଶିବଙ୍କ ଭାମିନୀରୂପେ ଖ୍ୟାତି ସେ ଅର୍ଜିଲେ
ପରେ ଅପମାନ ପାଇ ସ୍ୱପିତା ଯାଗରେ
ଶରୀର ବିସର୍ଜି ଦେଇଥିଲେ ଯୋଗାଗ୍ନିରେ

ଏବେ ସେହି ସତୀ ହିମାଚଳଙ୍କର ଘରେ
ପାର୍ବତୀ ନାମେ ଜନ୍ମିବେ ଅଳପ ଦିନରେ
ହୋଇବେ ପାର୍ବତୀ କରୁଣାର ଅକୂପାର
ନୋହିବେ ତ୍ରିପୁରେ କେହି ସମାନ ତାଙ୍କର
ତ୍ରିଲୋକ ଈଶ୍ୱର ଶିବ ସତୀ ମୃତ୍ୟୁପରେ
ମହତ ବୈରାଗ୍ୟ ଧରିଛନ୍ତି ହୃଦୟରେ
ସତୀଙ୍କର ଜନ୍ମ ଅପେକ୍ଷାରେ ଛନ୍ତି ରହି
ଅନ୍ୟ କୌଣସି କଥାରେ ତାଙ୍କ ମନ ନାହିଁ
ସିଦ୍ଧ ସେବିତ ଚରଣ ସେ ପ୍ରଭୁ ଶଙ୍କର
ଆଶ୍ରୀଛନ୍ତି ହିମବନ୍ତେ ପର୍ବତ କନ୍ଦର
ଶୁଣ ଆଗୋ ବିଭାବରୀ ପର୍ବତ ଦୁହିତା
ଜନମି କରିବେ ବ୍ରତ ହୋଇ ଶିବରତା
ସେ ଦୁହିଁଙ୍କ ତପଫଳେ ଯେ ସୁତ ଜନ୍ମିବ
ସେ ସୁତ ଏ ରକ୍ଷରାଜେ ନିଶ୍ଚେ ସଂହାରିବ
ପୁତ୍ର ଜନ୍ମ ଯାଏ ସାଧାରଣ ନାରୀଭାବ
ଶୁଣ ରାତ୍ରୀ ଯଥା ନଗ ଜେମାଙ୍କ ରହିବ
ସେଥିପାଇଁ ଆବଶ୍ୟକ ସାହାଯ୍ୟ ତୁମ୍ଭର
ବିଭାବରୀ ମନେ ଏଥି ସଂଦେହ ନ ଧର
ଗିରିଜା ଶିବ ବିରହ ହୃଦୟରେ ଧ୍ୟାୟି
ମିଳନ ପାଇଁ ରହିବେ ଉତ୍କଣ୍ଠିତା ହୋଇ
ଶିବଙ୍କ ସହ ମିଳନ ଲାଳସା ତାଙ୍କର
ବିଭାବରୀ ତୁମେ ରହି ଉତ୍ତେଜିତ କର
ଶୁଭ ହେବ ଯେବେ ସେହି ମିଳନ ହୋଇବ
ସେପରି ସମୟ ଆଉ କେବେ ନ ମିଳିବ
ସଂଭବ ହୋଇବ ଯେବେ ବିଳମ୍ବ ଏଥିରେ
ଦୈତ୍ୟନାଶ ରହିଯିବ ସଦା ସଂଦେହରେ
ସୁରତି ଆସକ୍ତି ହୋଇ ପାର୍ବତୀ ଶଙ୍କର
ମିଳନରେ ଆକର୍ଷିତ ହେବେ ପରସ୍ପର
ସେତେବେଳେ ନିଶା ତୁମେ ବିଘ୍ନ ଆଚରିବ
କହିବି ସେ କଥା କିପାଁ ସେପରି ହୋଇବ
ପ୍ରବେଶ କରିବ ତୁମେ ମେନାଙ୍କ ଗର୍ଭରେ
ଶୀଘ୍ର ଜନ୍ମ ସଂପାଦିତ ରହି ସେହିଠାରେ
ଯଥା ସେ ପାଇଣ ଜ୍ଞାନ ଜନନୀଗର୍ଭରେ
ଜନ୍ମିବେ ଆସିବ ତାହା ଶିବଙ୍କ ଗୋଚରେ
ଯାଇ ହସି ନମ୍ର ବାଣୀ କହିବେ ଶଙ୍କର
ନାରୀଭାବ ତୁମ୍ଭେ ବଢ଼ାଇବ ସେ ଶିଶୁର

ବିଳାସ ନିମନ୍ତେ ଶିବ ଇଛିବେ ତୁରିତ
ତେଣୁ ବହୁଭାବେ ତହିଁ ହୋଇବେ ଭର୍ତ୍ସିତ
କ୍ରୋଧରେ ଫେରି ସେଠାରୁ ଶିବ ଯୋଗେଶ୍ୱର
ଏକାକୀ ରହି ତପସ୍ୟା ଆଚରିବେ ଘୋର
ଶିବ ଯିବ ପରେ ସାଧାରଣ ନାରୀପରି
ଅନୁତାପାନଳେ ଦଗ୍ଧ ହୋଇବେ ଗଉରୀ
ଶିବଙ୍କ ପ୍ରାପ୍ତି ବିଚାରୀ ନଗଜେମା ଯିବେ
ସଖିସହ ମହାଘୋର କାନନେ ରହିବେ
ପାର୍ବତୀ ତପସ୍ୟା ତେବେ ହେବ ମଧ୍ୟ ଟାଣ
ଉଚିତ ମିଳନ ପାଇଁ ସେ ହେବ କାରଣ
ଦୁହିଁଙ୍କ ତପସ୍ୟା ଯେବେ ହୋଇବ ପ୍ରବଳ
ଜନ୍ମିତ ସଂତାନ ହେବ ଅତ୍ୟନ୍ତ ପ୍ରବଳ
ସୂର୍ଯ୍ୟଦୀପ୍ତି ଧରି ଜନ୍ମ ହେବ ସେହି ସୁତ
ଯେଣୁ ହୋଇଥିବ ଶିବ ବୀର୍ଯ୍ୟରୁ ସଂଭୂତ
ତାର କରେ ସୁର ଶତ୍ରୁ ଲଭିବ ନିଧନ
ବିଭାବରୀ କର ତୁମ୍ଭେ ଏ ସବୁ ବିଧାନ
ତୁମ୍ଭର କୃତୀ ଶିର୍ବରୀ ଦିଶିବ ଏଥିରେ
ତୁମ ଯୋଗୁଁ ଦୁଷ୍ଟ ଦୈତ୍ୟ ଯିବ ଯମପୁରେ
ଈଶ୍ୱରୀ ତୁମେ ଶର୍ବରୀ ଦେବଗଣଙ୍କର
କରାଅ ସୁରଙ୍କ ଦେହେ ଗୁଣର ସଂଚର
ସଂଯମ ଅଭାବ ଯେଣୁ ଅଟେ ସୁରଙ୍କର
ତାଙ୍କ କରେ ନ ମରିବ ଅସୁର ପାମର
ଦୁହିଁଙ୍କୁ ତପେ ନିରତା କରାନ୍ତୁ ଆପଣ
ସୁଖେ ସବୁକଥା ହୋଇଯିବ ସମାଧାନ
ତୁମ୍ଭଯୋଗୁଁ ଏହି କଥା ସଂଭବ ହୋଇବ
ଉମାରୂପେ ତୁମେ ନିଜେ ସବୁ ଆଚରିବ
ତୁମ୍ଭେ ଥିବାଠାରେ କିଛି ଅଭାବ ନୋହିବ
ଯେପରି କରିବ ତାହା ସେପରି ହୋଇବ
ସଂଘଟିତ ହେବ ଏହା ଯେଉଁ ସମୟରେ
ମିଶି ରହିଥିବ ତୁମେ ଭବାନୀ ସଙ୍ଗରେ
ଶୁଣ ମୋହଠାରୁ ଏବେ ଶର୍ବରୀ ବନିତା
ଏହାପରେ ତୁମେ ହେବ ତ୍ରିଲୋକ ବନ୍ଦିତା
ହୋଇବ ତୁମେ ଶର୍ବରୀ ବିବିଧ ଆକାର
ସମ୍ଭବ ହେବ ସର୍ବତ୍ର ଗମନ ତୁମ୍ଭର
ସମସ୍ତ କର୍ମରେ ତୁମେ ହୋଇବ ସାଧନ
ତୁମ୍ଭର ସେବାରେ ସର୍ବେ ହେବେ ନିମଗନ

ବ୍ରହ୍ମବାଦୀ ଧ୍ୟେୟ ଯେଉଁ ପବିତ୍ର ଓଁକାର
ତା ମୁଖ ଗାୟତ୍ରୀ ମନ୍ତ୍ର ହେବ ନାରୀବର
ବାହୁଜ କ୍ଷତ୍ରୀୟଙ୍କର ଭାର୍ଜିତ ହୋଇବ
ଭୂମାତା ରୂପେ ବୈଶ୍ୟଙ୍କ ସୁପୂଜିତା ହେବ
ସେବା ରୂପା ହେବ ତୁମେ ସଦା ଶୂଦ୍ରଙ୍କର
ଏହିରୂପେ ତୁମ ପୂଜା କରିବ ସଂସାର
ଋଷିମାନଙ୍କର ତୁମେ କ୍ରାନ୍ତି ବୋଲାଇବ
ନିୟାମକ ମଧ୍ୟେ ତୁମ୍ଭେ ଦୟାରୂପେ ଥିବ
ତାଙ୍କପାଶେ ହେବତୁମେ ଅକ୍ଷୋଭେ ଯୁକତ
ସତ୍ୟ ଅଟେ ବିଭାବରୀ ଏହି ମୋ ଭାଷିତ
ଉପାୟ ହୋଇବ ତୁମେ ସଂଦେହ ମଧରେ
ନେତି ହୋଇ ରହିଥିବ ନୟାୟିକଠାରେ
ଅର୍ଥଙ୍କ ମଧରେ ହେବ ତୁମେ ପରିଚିତ
ତୁମେ ହେବ ବିଭାବରୀ ପ୍ରାଣୀଙ୍କର ମିତ
ପ୍ରାଣୀଙ୍କ ହୃଦରେ ତୁମେ କରିବ ଭ୍ରମଣ
ସେବିବେ ସମସ୍ତେ ମିଶି ତୁମ୍ଭ ଶ୍ରୀଚରଣ
ସର୍ବ ଭୂତଙ୍କର ମୁକ୍ତି ତୁମ୍ଭେ ହୋଇଥିବ
ଦେହଧାରୀଙ୍କର ତୁମେ ଗତି ବୋଲାଇବ
କାମୁକମାନଙ୍କଠାରେ ହେବ ତୁମେ ରତି
ତୁମେ ହେବ ଦେହଧାରୀ ହୃଦୟରେ ପ୍ରୀତି
କୀର୍ତ୍ତି ହେବ ତୁମେସବୁ ସତ୍ୱାଶ୍ରୟୀଙ୍କର
ଶାନ୍ତି ହେବ ତୁମେ ସବୁ ଦୁଷ୍ଟ କରମର
ଯଜ୍ଞକର୍ତ୍ତା ଗତି ତୁମେ ସର୍ବଭୂତେ ଭ୍ରାନ୍ତି
ହୋଇ ରହିଥିବ ତୁମେ ଶର୍ବରୀ ଯୁବତୀ
ମହାବେଳା ତୁମେ ଦେବୀ ହେବ ସମୁଦ୍ରର
ପ୍ରିୟଜନ କଣ୍ଠେ ହେବ ଉତ୍ସ ଆନନ୍ଦର
କହିଲେ ହରଷଭରେ ସର୍ବଲୋକ ପିତା
ଏରୂପେ ଗୋ ଦେବୀ ହେବ ସର୍ବତ୍ର ଅର୍ଚ୍ଚିତା
ନରଲାଭ ଆଶାକରି ଅତ୍ୟନ୍ତ ଭକ୍ତିରେ
ଯେବେ କେହି ରାତ୍ରି ଏହି ସ୍ତୁତି ପାଠ କରେ
ଅଥବା ଯେ ଶର୍ବରୀଙ୍କୁ କରିବ ଅର୍ଚ୍ଚନା
ପୂର୍ଣ୍ଣ ହୋଇବ ତାହାର ସମସ୍ତ କାମନା
ଏ ସ୍ତବ ପଠନେ ସବୁ ମଙ୍ଗଳ ମିଳଇ
ସଂଶୟ ହୋଇ ଏଥିରେ କଥା କିଛି ନାହିଁ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ବ୍ରହ୍ମାଙ୍କଠାରୁ ଶର୍ବରୀ ଲଭି ଏହିବର

ନତକରି ଶିର ବ୍ରହ୍ମା ପଦପଙ୍କଜରେ
ବାରବାର ଶତବାର ଅତି ଭକ୍ତିଭରେ
ସେପରି କରିବ ବୋଲି ବ୍ରହ୍ମାଙ୍କୁ କହିଲେ
ଗଲେ ଅତିଶୀଘ୍ର ଯହିଁ ହିମବନ୍ତ ଥିଲେ
ପ୍ରବେଶି ତହିଁ ଶର୍ବରୀ ହେଲେ ହର୍ଷଭର
ଦେଖି ଉଚ୍ଚ ଅଟ୍ଟାଳିକା ଅତ୍ୟନ୍ତ ସୁନ୍ଦର
ରୁଚିର ଆସେନେ ହୋଇ ଭୂଷଣେ ଭୂଷିତା
ସଖୀ ସଙ୍ଗେ ବସିଥିଲେ ଗିରୀଶ ବନୀତା
ଦିଶୁଥିଲା ଅଳ୍ପ ପାଣ୍ଡୁ ବର୍ଣ୍ଣରେ ନିସ୍ତେଜ
ଗରିବ ମା' ମେନାଙ୍କର ମୁଖ ସରସିଜ
ଦିଶୁଥିଲା ବ୍ୟାକୁଳତା ନୟନ ପ୍ରାନ୍ତରେ
ଶ୍ରାନ୍ତି ମଜ୍ଜି ରହିଥିଲା ମୁକ ନଳୀନରେ
ସୁଖେ ତେବେ ବିଭାବର ମୁଖେ ପ୍ରବେଶିଲେ
ମଙ୍ଗଳ ଶୁକୁନ ତାଙ୍କ ସଙ୍ଗତରେ ଥିଲେ
ଜଠର ମଧରେ ତେବେ ଜଗତର ମାତ
ଶୁଣ ଭୀଷ୍ମ ଅତିଶୟ ହେଲେ ଉନ୍ମାଦିତ
ଦେବୀଙ୍କର ଆବିର୍ଭାବେ ସେ ଅରଣ୍ୟ ଘର
ଶୁଣ ଭୀଷ୍ମ ଦେଖ ଗଲା ଅତି ସୁରୁଚିର
ହିମଗିରି ଜାୟା ବିଶ୍ୱ ମୁକ୍ତିର କାରଣ
ଗର୍ଭମୁକ୍ତ କଲେ ବ୍ରହ୍ମ ମୁହୂର୍ତ୍ତ ଦେଖିଣ
ଦେବୀ ଜନ୍ମ ଜାଣି ସବୁ ସ୍ଥାବର ଜଙ୍ଗମ
ଅତି ସୁଖ ଲଭି ଭୀଷ୍ମ ହେଲେ ମୁହ୍ୟମାନ
ନର୍କ ଭୋଗୀ ପାଇଁ ନର୍କ ହେଲା ସ୍ୱର୍ଗପୁର
ସ୍ୱର୍ଗସମ ସୁଖ ତହିଁ ଲଭିଲେ ଅପାର
ଜନମ ଉତ୍ସବ ତେବେ ହୋଇଲା ପାଳନ
ସନଦୀ ସାଗର ହେଲେ ଆନନ୍ଦେ ମଗନ
ଦେବୀଙ୍କ ଜନ୍ମରେ ହୋଇ ହରଷ ବିଭୋର
ପ୍ରସାରଣ କଲେ ତେବେ ବିଚୀରୁପୀକର
ଆସିଲେ ସମସ୍ତେ ସେହି ଅବସର ଜାଣି
ଆନନ୍ଦରେ ଦରଶନ କରିବେ ଭବାନୀ
ହିମବନ୍ତେ ଉପସ୍ଥିତ ହେଲେ ଚରାଚର
ଆନନ୍ଦ ଅନ୍ତରେ ସର୍ବେ ବନ୍ଦିଲେ ଭୂଧର
ମହାହର୍ଷ ଲଭି ଏହି ଜନ୍ମ ଉତ୍ସବରେ
ସମସ୍ତେ ହରଷ ଲଭି ଚଳିଗଲେ ଘରେ
ଦେବତା ଗନ୍ଧର୍ବ ନାଗ ସେବିତ ଭୂଧର
ଶୀଳଗୁଣେ ଯୁତ ହୋଇଥିଲେ ଯେତେ ନର

ହିମବନ୍ତେ ଆସି ସର୍ବେ ଭବାନୀ ଦେଖିଲେ
ନେତ୍ର ବୁଜି ହରଷରେ ଧ୍ୟାନ ଆଚରିଲେ
ବୁଦ୍ଧିମାନ ଯେତେ ଥିଲେ ଅତ୍ୟନ୍ତ ଆଦରେ
ନ ଛାଡ଼ି ପର୍ବତେ ବସି ରହିଲେ ଧ୍ୟାନରେ
କ୍ରମେ ରୂପର ସୌନ୍ଦର୍ଯ୍ୟ ବିସ୍ତୃତ ହୋଇଲା
ଶାଖା ପ୍ରଶାଖାରେ ତିନିପୁର ଆଚ୍ଛାଦିଲା
ସର୍ବଲକ୍ଷଣରେ ପୂର୍ଣ୍ଣ ହିମାଚଳ ଘରେ
ତନୁଜା ଜନମ ଡିଣ୍ଡିମ ବାଜିଲା ତ୍ରିପୁରେ
ଶୁଣ ଭୀଷ୍ମ ତଦପରେ ସୁରଙ୍କରବର
ଜାଣି ତାହା ହୋଇ ଅତି ହର୍ଷରେ ବିଭୋର
ଦେବଙ୍କ କାର୍ଯ୍ୟ ସାଧନ ଚିତ୍ତରେ ବିଚାରି
ବସିଲେ ଧ୍ୟାନେ ନାରଦେ ସୁମରଣା କରି
ଏହି ଇଚ୍ଛା ଇନ୍ଦ୍ରଙ୍କର ନାରଦ ଜାଣିଲେ
ଅବିଳମ୍ବେ ଆସି ତହିଁ ଉପଗତ ହେଲେ
ଅମରାବତୀରେ ଯେବେ ଋଷି ପ୍ରବେଶିଲେ
ଆସନୁ ଉଠି ମଘବା ନମସ୍କାର କଲେ
ପାଦ୍ୟ ଅର୍ଘ ଦେଇ ତାଙ୍କୁ ସହସ୍ର ନୟନ
ପୂଜାକରି କଲେ ସମୁଚିତ ସନମାନ
ଯଥାବିଧି ପୂଜା ଇନ୍ଦ୍ରଙ୍କର ଋଷିବର
ଗ୍ରହଣକରି ବସିଲେ ସୁ ଆସନ ପର
ପାକଶାସକଙ୍କୁ ଋଷି ପୁଛିଲେ କୁଶଳ
ଯାଇଛି ସୁଖ କହିଲେ ଖେଦେ ଆଖଣ୍ଡଳ
କହିଲେ ମଘବା ଦେବ କୁଶଳ-ଅଙ୍କୁର
ଉତ୍ପନ୍ନ ହୋଇଛି ଜାଣି ତୃପ୍ତି ତିନିପୁର
ସେ ଅଙ୍କୁର ଗଛହୋଇ ଯେପରି ଫଳିବ
ନିର୍ଭର ତା ତୁମ୍ଭଠାରେ ହେ ଋଷି ପୁଙ୍ଗବ
ସେହିକଥା ଭଲେ ଜ୍ଞାତ ହେବାରୁ ମୋହର
ତୁମ୍ଭଙ୍କୁ ସ୍ମରଣ କଲି ହେ ଋଷି ଶେଖର
ଏହି ଧୃଷ୍ଟତା ମୋହର କରିବେ ମାର୍ଜନ
ମୋହାର ବିନୟ ଘେନ ଆହେ ତପୋଧନ
ରହିଛି ଏହି ନିୟମ ଶାସ୍ତ୍ର ଅଛି କହି
ସୁହୃଦେ କହିବ ପ୍ରୟୋଜନ ନ ଲୁଚାଇ
ତାହା କଲେ ପ୍ରୟୋଜନ ହୋଇବ ପୂରଣ
ଆବର ହେ ଋଷିବର ଶାନ୍ତ ହେବ ମନ
ବାଞ୍ଛିତ ଫଳ ମିଳିବ ଏ ବିଚାର କରି
ସ୍ମରଣା କରି ଆଣିଛି ଆହେ ତପଚାରୀ

ମୋହର କାମନା ଶୁଣ ଆହେ ଋଷିବର
ହିମାଚଳେ ଜନ୍ମିଛନ୍ତି ବାମା ଶିବଙ୍କର
ଶିବ ପାର୍ବତୀ ସଂଯୋଗ ଯେପରି ହୋଇବ
ତାହା କଲେ ଦେବଙ୍କର ଶୁଭ ପ୍ରକାଶିବ
ଏ ଘଟଣା ଯେବେ ମୁନି ଚଞ୍ଚଳ ହୋଇବ
ଦେବତାଙ୍କ ପକ୍ଷେ ତାହା ସୁମଙ୍ଗଳ ହେବ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଧାତାସୁତ ଶୁଣି ଶଚୀ ପତିଙ୍କ ବଚନ
ଆମନ୍ତ୍ରଣ ଅର୍ଥ ତେବେ ନାରଦ ବୁଝିଲେ
ଆଚରଣ ପାଇଁ ମଧ ଇଚ୍ଛା ଜଣାଇଲେ
ଇନ୍ଦ୍ରଙ୍କଠାରୁ ବିଦାୟ ଘେନି ଋଷିଈଶ
ହିମବନ୍ତ ଗୃହେ ବେଗେ ହୋଇଲେ ପ୍ରବେଶ
ବେତସ ଲତାରେ ଘେରା ସେ ପୁରର ଦ୍ୱାର
ଦିଶୁଥିଲା ଆହେ ଭୀଷ୍ମ ଅତ୍ୟନ୍ତ ରୁଚିର
ଦ୍ୱାରର ରକ୍ଷକ ଯେଉଁ ବିପ୍ର ଥିଲା ତହିଁ
ନାରଦଙ୍କ ଆଗମନ ଜଣାଇଲା ଯାଇ
ଶୁଣି ହିମବାନ ଉଠି ସେକ୍ଷଣି ଆସିଲେ
ଭକ୍ତିଭରେ ନାରଦଙ୍କ ଚରଣ ବନ୍ଦିଲେ
କୁଶଳ ପ୍ରଶ୍ନ ପଚାରି ପର୍ବତ ରାଜନ
ଦେଖାଇଲେ ବସିବାକୁ ଉଚିତ ଆସନ
ଅତି ପ୍ରୀତିଭରେ ଶୈଳରାଜ ତଦପରେ
ଦରଶାଇଲେ ସ୍ୱଗୃହ ହରଷ ଅନ୍ତରେ
ପୃଥିବୀର ଭୂଷଣ ସେ ଶଇଳ ନିବାସ
ଦେଖି ଋଷି ମନେମନେ ହେଲେ ଅତିତୋଷ
ପରେ ଭିତରକୁ ନେଇ ଦେଲେ ସ୍ୱର୍ଣ୍ଣାସନ
ଅନୁପମକାନ୍ତି ଋଷି ଦିଶିଲେ ଶୋଭନ
ବିଶ୍ରାମ କରାଇ ପରେ ପାଦ୍ୟ ଅର୍ଘ ଦେଇ
ଧାତା ସୁତଙ୍କ ସଂତୁଷ୍ଟ କଲେ ଗିରସାଇଁ
ଯଥାବିଧି ମୁନିବର ହୋଇଣ ଅର୍ଚ୍ଚିତ
ଶୁଣ ଭୀଷ୍ମ ହୋଇଗଲେ ଅତ୍ୟନ୍ତ ମୋହିତ
ବିକଶିତ ହେଲା ତାଙ୍କ ନୟନ କମଳ
ଗ୍ରହଣ କରି ଅର୍ଚ୍ଚନା ଅତି ସୁବିମଳ
ଶୈଳରାଜ ମଧ ହେଲେ ଅତ୍ୟନ୍ତ ପ୍ରସନ୍ନ
ସବିଧି ଅର୍ଚ୍ଚିତ ଯେଣୁ ହେଲେ ତପୋଧନ
ତଦପରେ ଯୋଡ଼କରେ ଶୈଳ ନୃପବର
ପ୍ରକାଶ କଲେ ବଚନ ଥିଲା ଅତି ଧୀର

ହେଉଛି କି ଶୁଭେ ମୁନି ତପ ଆଚରଣ
ସର୍ବଶୁଭ କହି ମୋର ଶାନ୍ତକର ମନ
ଶୁଣି ତାହା ମୁନିବର ସଂତୁଷ୍ଟ ହୋଇଲେ
କହି ସ୍ୱମଙ୍ଗଳ ପୁଣି ତାଙ୍କୁ ପଚାରିଲେ
କହନ୍ତୁ ହେ ଗରିରାଜ କୁଶଳ ତୁମ୍ଭର
ମୁନିଙ୍କର ଧ୍ୟେୟ ଅଟେ ସଦା ତୁମ୍ଭଘର
ମନ ତୁମ୍ଭର ବିଶାଳ କନ୍ଦରା ସମାନ
ଅଟଇ ତୁମ୍ଭ ଗୌରବ ତୁମ୍ଭର ସୁଗୁଣ
ସ୍ଥାବର ଅପେକ୍ଷା ମଧ ତା ଅଟେ ଅଧିକ
ଋଷି ପ୍ରସାଦରେ ତାହା ଅଟେ ସମଧିକ
ତପସ୍ୟା କରନ୍ତି ଏଥି ଯେଉଁ ମୁନୀବ୍ରାତ
କରନ୍ତି ସେ ତୁମ୍ଭ ଗୁଣ ତ୍ରିଲୋକରେ ଖ୍ୟାତ
ତାହାଙ୍କର ପ୍ରସନ୍ନତା ତୁମ୍ଭର ପ୍ରସାଦ
ଏସ୍ଥାନେ କାହାର କେବେ ନରହେ ବିଷାଦ
ସୂର୍ଯ୍ୟସମ ଦୀପ୍ତିବନ୍ତ ମୁନି ଛନ୍ତି ଯହିଁ
ଅବିନୟତ ସେଠାରେ ପାରିବକି ରହି
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଶୁଣି ନାରଦଙ୍କ ସେହି ବାଣୀ ସୁମଧୁର
ବାହାରିଲେ ମେନା ତାଙ୍କ ଦରଶନ ପାଇଁ
କନ୍ୟାକୁ ସଙ୍ଗତେ ଧରି ଅତି ତୋଷ ହୋଇ
କେତେଜଣ ସଖୀମଧ ଥିଲେ ସଙ୍ଗତରେ
ବେଷ୍ଟିତା ହୋଇଣ ଦାସୀ ଗଣଙ୍କ ମଧରେ
ଲଜ୍ଜା ହେତୁ ଅଙ୍ଗଲତା ହୋଇଥିଲା ନତ
ପ୍ରଣୟରେ ମୁଖ ଦିଶୁଥିଲା ପଦ୍ମବତ
ଗିରିରାଜ ସହ ମୁନୀ ବସିଥିଲେ ଯହିଁ
ଧୀରପଦ ନ୍ୟାସେ ସର୍ବେ ପ୍ରବେଶିଲେ ତହିଁ
ଆଦିତ୍ୟ ପରାୟେ ତେଜ ତପୋଧନଙ୍କର
ସେ ସମୟେ ହେଲା ମେନା ନୟନଗୋଚର
ବଦ୍ଧାଞ୍ଜଳି ହୋଇ ମେନା ମଥାକରି ନତ
ମୁନିଙ୍କ ପଦ କମଳେ କଲେ ପ୍ରଣିପାତ
ଦେବର୍ଷି ନାରଦ ଯେବେ ମେନାଙ୍କୁ ଦେଖିଲେ
ଆଶୀଷ ବଚନ ସୁଦା ସମାନ ଭାଷିଲେ
ଗିରିରାଜ ଜେମା ଦେଖି ଅତି ଆଶ୍ଚର୍ଯ୍ୟରେ
ନାରଦଙ୍କୁ ନିରେଖିଲେ ଅତ୍ୟନ୍ତ ସାଦରେ
ଅଦ୍ଭୁତ ସେ ରୂପ ଦେଖି ଧାତା ସୁତଙ୍କର
ହୃଦୟରେ ଭକ୍ତିଭାବ ଆସିଲା ସତ୍ୱର

ପାର୍ବତୀଙ୍କ କମନୀୟ ରୂପ ମୁନି ଦେଖି
ଆଶ୍ଚର୍ଯ୍ୟ ଭରେ ଚାହିଁଲେ ନପିଛାଡ଼ି ଆଖି
କହିଲେ ତାପରେ ସ୍ନେହେ ମଧୁର ବଚନ
ପାର୍ବତୀଙ୍କୁ ଚାହିଁ ଧାତାସୁତ ତପୋଧନ
ଆସ ମା ବସ ମୋ ପାଶେ ଛାଡ଼ିଦିଅ ଭୟ
ମଙ୍ଗଳ କରିବି ମାଲୋ ତୋହାର ନିଶ୍ଚୟ
ବଶବର୍ତ୍ତୀ ହୋଇ ମେନା ସୁଧୀ ସ୍ୱଭାବରେ
ଗଣ ପୋଛା ପାଇଁ ଭାବିଥିଲେ ମାନସରେ
ଇଙ୍ଗୀତରୁ ନଗନୃପ ପାରିଲେ ତା ଜାଣି
ପାର୍ବତୀଙ୍କୁ ଋଷିପାଶେ ବସାଇଲେ ଆଣି
ଯୌବନ ତାହାଙ୍କ ଦେହେ କରିବାକୁ ଘରଂ
ପାଦଟେକି ବସିଥିଲା ହୋଇ ତତପର
ତଦପରେ ଗିରି ନାରୀ ଭିତରକୁ ଗଲେ
ସଖୀଙ୍କ ହାତେ ଋଷିଙ୍କୁ ଡାକି ପଠାଇଲେ
ଝିଅକୁ ଦେଖାଇ ପଚାରନ୍ତେ ଶୁଭାଶୁଭ
କହିଲେ ଧାତା ନନ୍ଦନ ମନେ ବହିଭାବ
ଏହା ପତି ଜଗତରେ ଜନ୍ମ ହୋଇନାହିଁ
ଆବର ସବୁ ଲକ୍ଷଣେ ବିବର୍ଜିତ ସେହି
ବ୍ୟଭିଚାରୀ ଅଟେ ମେନା ଚରଣ ତାହାର
ଖୋଲା ରହିଥିବ ତାର ନିରନ୍ତରେ କର
ତିନି ଜଗତରେ ଛାଇପରି ସେ ହୋଇବ
ଏଥିରୁ ଅଧିକ କହି ଆଉ କି ହୋଇବ
ଶୁଣି ତାହା ଭ୍ରମହେଲେ ପର୍ବତ ଈଶ୍ୱର
ନରହିଲା ଧୈର୍ଯ୍ୟ ବୋଲି କିଛି ତାହାଙ୍କର
ସାଶ୍ରୁ ନେତ୍ର ସହ ତାଙ୍କ କଣ୍ଠ ରୋଧ ହେଲା
ତୁଣ୍ଡକୁ ତାଙ୍କର ଆଉ କଥା ନ ଆସିଲା
ରହିଲା ଅବସ୍ଥା ଏହିପରି ବହୁ କ୍ଷଣ
ତାପରେ କହିଲେ ଦୁଃଖ ଭରେ ହିମବାନ
ଜାଣୁଛି ତୁମ୍ଭ କଥାରୁ ଭଲ ନୁହେ କିଛି
କହ ଭବିଷ୍ୟକୁ ଶୁଭ ଅଛି କି ନା ଅଛି
ପୃଥକ ଫଳ ତାହାର କହନ୍ତୁ ବିଚାରି
ଦୟାବହି ମୋ ଉପରେ ଆହେ ତପଚାରୀ
ପୁଲସ୍ତ୍ୟ କହିଲେ ଶୁଣ ଗଙ୍ଗାଙ୍କ ନନ୍ଦନ
ଅତି ଦଃଖପୂର୍ଣ୍ଣ ଶୈଳ ନୃପତି ବଚନ
ଶୁଣି ବିହସି କହିଲେ ଧାତାଙ୍କର ସୁତ
ସୁର ନର ଋଷିଗଣେ ସଦା ଯେ ପୂଜିତ

ହରଷର ସ୍ଥାନ ଏହା ହେ ଶୈଳ ରାଜନ
କିପାଇଁ ଭାବିଲ ଯାକୁ ଶୋକର କାରଣ
କିପାଇଁ କହିଲ ଦୁଃଖ ପୂର୍ଣ୍ଣ ଏହି ବାଣୀ
ତାହାର କାରଣ କିଛି ନପାରେ ମୁଁ ଜାଣି
ଜାଣୁଛି ମୋ କଥା ତୁମେ କିଛି ନ ବୁଝିଲ
ସେଥିପାଇଁ ଦୁଃଖେ ନେତ୍ରୁ ଲୁହ ବୁହାଇଲେ
ନିର୍ମଳ ଅଟଇ ଅର୍ଥ ମୋର ଏ କଥାର
ବୁଝାଇ ଦେଉଛି ଶୁଣ ପର୍ବତ ଈଶ୍ୱର
ରହସ୍ୟପୂର୍ଣ୍ଣ ମୋ ବାଣୀ ଜାଣିନପାରିଲ
ବିଚାରି ଅଶୁଭ ହୃଦ ଦୁଃଖପୂର୍ଣ୍ଣ କଲ
ସାରସାର ଜଣାଯିବ କଲେ ତା ବିଚାର
ତାର ମହତ୍ୱ ଜାଣିବ ଆହେ ଗିରିଶ୍ୱର
କହିଲ ଆଗ ତା ପତି ଜନ୍ମ ହୋଇ ନାହିଁ
ବିଚାରକର ଏଥିରେ ମିଛି କିଛି ନାହିଁ
ଯାଠାରୁ ହୋଇଛି ଜନ୍ମ ଭୂତ ଭବ୍ୟ ଭବ
କିପରି ହୋଇବ କହ ତାହାର ଉଦ୍ଭବ
ସେହି ଶଙ୍କର ଅଟନ୍ତି ଦେବଙ୍କର ଦେବ
ତେଣୁ ସେ ଅଜନ୍ମା ଏହା ମନେ ରଖିଥିବ
ସର୍ବ ଶରଣଦ ଗିରି ଅଟନ୍ତି ଶଙ୍କର
ଚଳୁଛି ଏ ତ୍ରିଜଗତ ଶାସନେ ତାଙ୍କର
ବ୍ରହ୍ମା ଇନ୍ଦ୍ର ମୁନି ଆଦି ଏହାଙ୍କ ଗର୍ଭଜ
ଅମର ଶାଶ୍ୱତ ପୁଣି ଅଟନ୍ତି ସେ ଆଜ
ତାଙ୍କ କ୍ରୀଡ଼ନକ ବିଶ୍ୱେ ଯା ହୁଏ ଦର୍ଶନ
ତାହାଙ୍କ ଇଚ୍ଛାରେ ଚଳୁଅଛି ତ୍ରିଭୁବନ
ବ୍ରହ୍ମାଙ୍କ ଅଣ୍ଡରୁ ଯେଣୁ ଜନମ ଏହାର
ପ୍ରକାଶ ବ୍ରହ୍ମାଣ୍ଡ ନାମ ହୋଇଛି ଧରାର
ଯୁଗେ ଯୁଗେ ଧରୁଥାନ୍ତି ହରି ଅବତାର
ସ୍ୱମୁଖେ କହନ୍ତି ସେ ମୁଁ ମାୟାର ଆଧାର
ସ୍ଥାବରଜଙ୍ଗମ ଅଟେ ଆତ୍ମାର ନିବାସ
ଆତ୍ମାର କେବେ ଭୂଧର ନୁହଇ ବିନାଶ
ମରେ ସେହି ସଂସାରରେ ଯେହୁ ଜନ୍ମ ହୁଏ
ଦେହଗଲେ ମଧ୍ୟ ଆତ୍ମା ସେହିପରି ଥାଏ
ଆବ୍ରହ୍ମସ୍ତମ୍ଭ ଜଗତେ ଯେତେ ପ୍ରକାଶିତ
ଜନ୍ମ ମୃତ୍ୟୁରେ ସମସ୍ତେ ହୁଅନ୍ତି ଦୁଃଖିତ
ମାତ୍ର ଅଚଳ ଅଜନ୍ମା ସ୍ଥାଣୁ ସଦା ଶିବ
ତାଙ୍କର ଜନକ କିଏ କେ କହି ପାରିବ

ଜରାରୁ ରହିତ ଶିବ ଜାଣ ଗିରିବର
ମନେରଖ ସେହି ହେବ ଜ୍ୱାଇଁ ତୁମ୍ଭର
ଅଟନ୍ତି ସେ ଜଗତର ନାଥ ନିରାମୟ
ଏ ମୋ ସତକଥା ଏଥି ନମଣ ସଂଶୟ
ପାର୍ବତୀଙ୍କ ଲକ୍ଷଣରୁ ପାରିଛି ମୁଁ ଜାଣି
ଏହାଙ୍କର ପତି ହେବେ ଦେବ ଶୂଳପାଣି
ତ୍ରିଭୁବନପତି ହରଙ୍କର ଏ ଘରଣୀ
ମନେରଖ ଅଟନ୍ତି ଏ ତ୍ରିଲୋକ ଜନନୀ
ଦୟାର ଆଧାର ଏହି ସବୁ ପ୍ରାଣୀଙ୍କର
ଜଗଦମ୍ବା ଏହି ଜନ୍ମିଛନ୍ତି ତୁମ୍ଭଘର
ଭାବାନୀ ଏ ଆସିଛନ୍ତି ଶୁଣ ନରପତି
ଦୀପ୍ତି କରିବେ ସ୍ୱ ତେଜେ ସ୍ୱର୍ଗ ଆଦି କ୍ଷିତି
ଏହାଙ୍କ ଯୋଗୁଁ ପୃଥିବୀ ପବିତ୍ର ହୋଇବ
ସଂଦେହ ଏଥିରେ କିଛି ମନେ ନ ଧରିବ
ନିକଟରେ ହେବେ ଏହି ବୃଷଧ୍ୱଜ ବାମା
ଜଗତେ କି ଅଛି ହେବ ଏହାଙ୍କ ଉପମା
ଏହାଙ୍କର ଯୋଗୁ ଗିରି ତୁମେ ହେବପୂତ
ସ୍ୱକ୍ଷେତ୍ରେ କରିବ ଏହି ତ୍ରିପୁର ପବିତ୍ର
ଏହାଙ୍କର ଜନ୍ମ ତେଣୁ ହେଲା ତୁମ ଘରେ
ଏହାଙ୍କୁ ତୁରିତେ ଗିରି ଦିଅ ଶିବକରେ
ପର୍ବତ ଗଣର ନୃପ ଆହେ ହିମବର
ତୁମ୍ଭ ଦୁହିତା ଲକ୍ଷଣ ଅଟେ ଏ ପ୍ରକାର
ବିଧି ବିଧାନରେ କର ବିଭା କାର୍ଯ୍ୟ ଶେଷ
ସାଧିତ ହୋଇବ କାର୍ଯ୍ୟ ସୁରଙ୍କ ଅଶେଷ
କହିଲେ ପୁଲସ୍ତ୍ୟ ଶୁଣ କୁରୁକୁଳବୀର
ନାରଦ ବଚନ ଶୁଣି ପର୍ବତ ଈଶ୍ୱର
ପାର୍ବତୀଙ୍କ ପିତାରୂପେ ଗୌରବ ମଣିଲେ
ଜନ୍ମେ ଜନ୍ମେ ମୁହିଁ ମେନା ଭର୍ତ୍ତା ବିଚାରିଲେ
ଆନନ୍ଦ ଯୁକତ ହୋଇ ତେବେ ଗିରିବର
କହିଲେ ଧାତାତନୟେ କରି ନମସ୍କାର
କରିଛ ଆପର ମୋର ବହୁ ଉପକାର
ଦୁସ୍ତର ସନ୍ଦେହୁ ମୋତେ କରିଛ ଉଦ୍ଧାର
ରସାତଳେ ପଡ଼ିଥିଲି ମୋତେ ନିସ୍ତରିଲ
ସପ୍ତଦ୍ୱୀପା ପୃଥ୍ୱୀ ଭୋଗ ମତେ ପ୍ରଦାନିଲ
ହିମାଚଳ ରୂପେ ମୋର ଗୌରବ ଯା ଥିଲା
ତୁମ୍ଭ ଯୋଗୁଁ ଶତଗୁଣେ ବର୍ଦ୍ଧିତତା ହେଲା

କହିଲେ ପୁଲସ୍ତ୍ୟ ଶୁଣ କୁରୁକୁଳ ବୀର
ହିମାଚଳ ବାଣୀ ଶୁଣି ଋଷି କୁଳବର
କହିଲେ ସଂତୋଷେ ଶୁଣ ଭୂଧର ଈଶ୍ୱର
ମୋ କହିବା କଥା ଥରେ ହୃଦରେ ବିଚାର
ମୋହର କର୍ତ୍ତବ୍ୟ ମୁହିଁ କରିଅଛି ଶେଷ
ସିଦ୍ଧହେବ ଦେବକାର୍ଯ୍ୟ ଏଥିରୁ ଅଶେଷ
ଏହାମଧ୍ୟ ଆପଣଙ୍କ ଅଟେ ପ୍ରୟୋଜନ
ବିଳମ୍ବ ନକର ତେଣୁ ପର୍ବତ ରାଜନ
କହି ଏହା ଦେବଋଷି ଅନ୍ତରୀକ୍ଷେ ଗଲେ
ଅମରାବତୀରେ ବେଗେ ଯାଇ ପହଞ୍ଚିଲେ
ଭେଟିଲେ ସେଠାରେ ଯାଇ ଶଚୀଙ୍କ ରମଣ
ବସିଲେ ଇନ୍ଦ୍ରଙ୍କ ପାଶେ ଲଭି ସୁ ଆସନ
ହିମାଚଳ ସଙ୍ଗେ କଥା ଯାହା ହୋଇଥିଲେ
ଇନ୍ଦ୍ରଙ୍କ ଆଗରେ ତାହା ବିସ୍ତାରି କହିଲେ
ତାପରେ କହିଲେ ଋଷି ଶୁଣ ମଘବାନ
ମୋର ଯାହା କାର୍ଯ୍ୟ ମୁହିଁ କଲି ସମାପନ
ଏଠାରେ ମୋହର ଆଉ କାର୍ଯ୍ୟ କିଛିନାହିଁ
ସମର୍ଥ ହୋଇବେ କାମ କାର୍ଯ୍ୟସିଦ୍ଧି ପାଇଁ
ଆବଶ୍ୟକ ଏବେ କନ୍ଦର୍ପର ପଞ୍ଚଶର
ତା ସନ୍ଧାନେ ଯତ୍ନକର ଏବେ ସୁନାଶିର
ପୁଲସ୍ତ୍ୟ କହିଲେ ଶୁଣ ଶାନ୍ତନୁ ନନ୍ଦନ
କହି ଏହା ଅନ୍ୟ କାର୍ଯ୍ୟେ ଗଲେ ତପୋଧନ
ଶୁଣ ଭୀଷ୍ମ ଦେବଋଷି କହି ଏହା ଗଲେ
ତେବେ ବସି ଇନ୍ଦ୍ର ରତିପତିଙ୍କୁ ସ୍ମରିଲେ
ଚ ତାଙ୍କୁର ଅସ୍ର ତାହା ଜାଣି ସେହିକ୍ଷଣି
ଆସି ପ୍ରଣମିଲେ ମୋଦଭରେ ବଜ୍ରପାଣି
ବିଳାସନୟନା ରତି ଥିଲେ ସଙ୍ଗତରେ
ଦୃଷ୍ଟି ନିନ୍ଦା କରୁଥିଲା କୁରଙ୍ଗ ଶିଶୁରେ
ମୀନଧ୍ୱଜରଥେ କରିଥିଲେ ଆରୋହଣ
ହାତେ ଥିଲା ଫୁଲଧନୁ ସହ ପୁଷ୍ପବାଣ
ମନମଥଙ୍କୁ ମଘବା ସମ୍ମୁଖେ ଦେଖିଲେ
ପାଖରେ ବସାଇ ତାଙ୍କୁ ଗଉରବ କଲେ
କହିଲେ ଅତି ଆଦରେ ଆହେ ରତିପତି
ଉପଦେଶ ଅଟେ ଏହା ମୋର ତୁମ୍ଭ ପ୍ରତି
ଉପକାର ପାଇଁ ସ୍ୱର୍ଗବାସୀ ଦେବଙ୍କର
ମୋ ବାକ୍ୟ ପାଳିବା ଅଟେ କର୍ତ୍ତବ୍ୟ ତୁମ୍ଭର।
ହିମବାନ ଦୁହିତାଙ୍କ ସଙ୍ଗେ ଶିବଙ୍କର
ସଂଯୋଗ ହେବ ଯେପରି କରନ୍ତୁ ସତ୍ୱର
ଯାଅ ଏହିକ୍ଷଣି ତୁମେ ରତି ସଙ୍ଗତରେ
ସଙ୍ଗେଥାନ୍ତୁ ଋତୁରାଜ ସହାୟ ରୂପରେ
ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ଇନ୍ଦ୍ରଙ୍କ ବଚନ
କଲା କାମ ହୃଦୟରେ ଭୟ ଉତ୍ପାଦନ
ଶୁଣି ତାହା ଅତି ଭୀତ ହୋଇ ପଞ୍ଚଶର
କହିଲା ଯାହା ତା ଶୁଣ ଗଙ୍ଗାଙ୍କ କୁମର
ଆହେ ଦେବରାଜ ଶୁଣ ବିନୟ ମୋହର
ଜଗତର ମୁନିଗଣ ସହ ସୁରା ସୁର
ଶଙ୍କର ହୃଦେ ବିକାର ଆଣି ନ ପାରିବେ
ଯଦି ତାଙ୍କ ପାଶେ ଯିବେ ପ୍ରାଭବ ପାଇବେ
ଅସୁର ମୁନୀ ପରାଏ ନୁହନ୍ତି ଶଙ୍କର
ନୋହିବ ଜାତ ତାହାଙ୍କ ହୃଦରେ ବିକାର
ଏ କଥା ତ ଭଲଭାବେ ଜାଣନ୍ତି ଆପଣ
ମୋତେ ତହିଁ ପଠାଇବା ଅଛି କି କାରଣ
ଅବ୍ୟୟ ପଦ ସେ ହେଉ ଶଙ୍କର କୋପରେ
ଟଳିପଡିବ ମଘବା ଘେନ ସୁଚିତ୍ତରେ
ପ୍ରମାଦ ହେବ ପୃଥ୍ୱୀରେ ସେ ହେଲେ କୁପିତ
ପରିଣାବେ ତିନିପୁର ହେବ ଭୟଭୀତ
ବିଚାରନ୍ତୁ ଫଳ ତାର ଏପରି ହୋଇବ
ସାମାନ୍ୟ କଥାରୁ ସ୍ୱର୍ଗପୁର ନାଶ ଯିବ
ଶୁଣି ଇନ୍ଦ୍ର ସେହି ବାଣୀ ରତିପ୍ରିୟଙ୍କର
କହିଲେ ଯାହା ତା ଶୁଣ ଶାନ୍ତନୁ କୁମର
ନିକୃଷ୍ଟ କର ସ୍ୱଶକ୍ତି ବୃଥାରେ କିପାଇଁ
ଯତନ ନକରି ଥରେ ଆହେ ରତିସାଇଁ
ଦେଖିବି ତୁମ ସାମର୍ଥ୍ୟ କରିଛି ମୁଁ ଆଶ
ତେଣୁ କର ଯାଇ ତୁମ ସାମର୍ଥ୍ୟ ପ୍ରକାଶ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଇନ୍ଦ୍ରଙ୍କେ ପ୍ରେରିତ ହୋଇ ରତିଦେବୀ ବର
ସଖୀଙ୍କ ସହାୟେ ରତି ଧରି ସଙ୍ଗତରେ
ଗଲେ ଓଷଧି ପ୍ରସ୍ଥକୁ ଭୟ ଧରି ଉରେ
ଯାଇତହିଁ ପୂର୍ବ କୃତ କରମ ଚିନ୍ତିଲେ
ସବୁଠୁ କଠୋର ଏହା ମନେ ବିଚାରିଲେ
ନିଷ୍କାମ ପୁରୁଷ ଏହି ମହାତ୍ମା ଶଙ୍କର
ବିକାର ଆଣିବା ହୃଦେ ଅସାଧ୍ୟ ମୋହର

ଏହାଙ୍କୁ ଜିଣିବା ଅଟେ କାଠିକର ପାଠ
ବୋଲ ନ କରିବ ଏଥି ମୋହର ବିପାଠ
ସ୍ଥାନକୁ ସଂକ୍ଷୁବ୍‌ଧ ଯେବେ ଆଗେ ନ କରିବି
ମନକୁ କଦାପି ଜୟ କରି ନ ପାରିବି
ଉଚ୍ଚାଟ କରିବ ଆଗେ ମନକୁ ତାଙ୍କର
ହୃଦୟରେ ଏ ସିଦ୍ଧାନ୍ତ କଲା ପଞ୍ଚଶର
ଦୃଢ଼କରି ଏହା ତେବେ ଶାଳୀନାମେ ଶର
ସନ୍ଧାନ କଲା ପ୍ରଥମେ କେଳତୀର ବର
ସ୍ଥାଣୁ ସେ ହେଉ ଏ ଶର ଯଦ୍ୟପି ବାଜିବ
ସେହିକ୍ଷଣି ଅକ୍ଳେଶରେ ମୋହିତ ହୋଇବ
ଏ ଶରର ଅନ୍ୟ ନାମ ଅଟେ ବିମୋହନ
ମନେ ରଖିଥିବ ଏହା ଶାନ୍ତନୁ ନନ୍ଦନ
ବିମୋହନ ଶର ଭୀଷ୍ମ କାମ କରୁ ଗଲା
ନିଷ୍କମ୍ପ ଭବ ହୃଦକୁ ଯାଇ ଭେଦକଲା
ଧୈର୍ଯ୍ୟଶାଳୀ ଶିବ ହେଲେ ମଦନ ଉନ୍ମତ୍ତ
ସନ୍ଧିଲା ଆବେଶ ନାମେ ଶର ମନମଥ
ଯେବେ ବିନ୍ଧିଲା ଆବେଶ ନାମରେ ସାୟକ
ପ୍ରଭୁବ ଯୋଗୁଁ ଶିବଙ୍କ ନୋହିଲା ବାଧକ
ଆବେଶ ନିଜର ନିଯେ ସେ ଦେଖି ପାରିଲେ
ଧିକ୍‌କାର ବଚନ ନିଯେ ନିଜକୁ କହିଲେ
କ୍ରୋଧାଗ୍ନିରେ ପରେ ଦୀପ୍ତ ହୋଇଣ ଶଙ୍କର
ପ୍ରକାଶ କଲେ ସେ କ୍ଷଣି ସୁଘୋର ହୁଂକାର
ମୁଖ ଦିଶିଲା ସେ କାଳେ ଅତ୍ୟନ୍ତ ଭୀଷଣ
ପ୍ରଜ୍ଵଳିତ ହେଲା ଅତି କପାଳ ଈକ୍ଷଣ
ସେକାଳେ ରୌଦ୍ରତା ପୂର୍ଣ୍ଣ ରୁଦ୍ର କଳେବର
ଦିଶିଲା ସେ କରିବ ବା ଜଗତ ସଂହାର
ସେହି ନେତ୍ରକୁ ଧୂର୍ଜଟୀ ତେବେ ଫିଟାଇଲେ
ଆଗେ ଥିଲା କାମଦେବ ତାହାକୁ ଚହିଁଲେ
ଖୋଲନ୍ତେ ନେତ୍ରରୁ ଅଗ୍ନିକଣା ହେଲା ଜାତ
ଦେଖି ତାହା ସୁରଗଣ ହେଲେ ସ୍ତମ୍ଭୀଭୂତ
ଶିବଙ୍କ ନୟନ ଜାତ ସେହି ବୈଶ୍ୱାନର
ଭସ୍ମକଲା ସେହିକ୍ଷଣି କନ୍ଦର୍ପ ଶରୀର
ଶାନ୍ତହୁଅ ପ୍ରଭୁ ବୋଲି ଦେବେ ଡାକୁଥିଲେ
ତଥାପି ଦର୍ପକ ଦର୍ପ ରଖି ନ ପାରିଲେ
ରତି ପାଶେ ଥିଲା ହର ହୁଂକାର ଶୁଣିଲା
ଦେଖିଲା ଆବର ପତି ଅଙ୍ଗ ଭସ୍ମହେଲା
କାନ୍ଦିଲା ଅତି ଆତୁରେ ବସନ୍ତ ସଙ୍ଗରେ
ନିଜ ପତିର ସୁଗୁଣ ଭାବି ମାନସରେ
ଅତ୍ୟନ୍ତ ଦୁଃଖ ଦାୟକ ବିଳାପ ରତିର
ଶୁଣି ତା ବସନ୍ତ ହେଲା ଶୋକରେ ଜର୍ଜର
ତାହାକୁ ଶାନ୍ତ୍ୱନା ଦେଇ ଧରି ସଙ୍ଗତରେ
ଉପସ୍ଥିତ ହେଲା ଚନ୍ଦ୍ରମୌଳୀଙ୍କୁ ପାଶରେ
ତ୍ରିଲୋଚନଙ୍କ ପୟରେ କରି ପ୍ରଣିପାତ
କହିଲେ ରଖ ଶରଣ ହେ ପ୍ରମଥନାଥ
ଶରଣାଗତି ତାହାଙ୍କୁ ଜାଣି ମହେଶ୍ୱର
ଶାନ୍ତ ହୋଇ ପ୍ରକାଶିଲେ ବାଣୀ ସୁ ମଧୁର
କହିଲେ ଗୋ ରତି ଆଉ ନକର ତୁ ଶୋକ
ଅଳପ ଦିନେ ତୋହର ଦୂର ହେବ ଦୁଃଖ
ଜୀବିତ ହୋଇ ଫେରିବ ତୋହର ପାଶରେ
ଆଜୁ ସେ ଖ୍ୟାତ ହୋଇବ ଅନଙ୍ଗ ନାମରେ
ଏ ନାମରେ ବଢ଼ିଯିବ ପ୍ରସିଦ୍ଧି ତାହାର
ସଂଶୟ ଏଥିରେ ମନେ କିଛି ହିଁ ନଧର
ଆଶୁତୋଷ ହୋଇ ତୋଷ କହନ୍ତେ ଏପରି
ସାଷ୍ଟାଙ୍ଗ ପ୍ରଣାମ କରି ଗଲା କାମନାରୀ
ଘରକୁ ନଯାଇ କଇଳାସେ ଉପବନେ
ରହିଲା ସେଦିନୁ ଧ୍ୟାୟି ଶଙ୍କରଙ୍କୁ ମନେ
ସେଦିନୁ ଦେଖିଲେ ରତି ରମଣୀୟ ସ୍ଥାନ
ପତିଙ୍କୁ ସମରି କରେ ବିକଳେ ରୋଦନ
ପତି ମୃତ୍ୟୁ ଦେଖି ରତି ପାଞ୍ଚିଥିଲା ମନେ
ଜୀବନହାରୀ ଯିବାକୁ ଶମନ ସଦନେ
ମାତ୍ର ଶିବ ଅନୁଜ୍ଞାନକୁ ହୃଦୟରେ ଧରି
ସହମରଣ କାମନା ଦେଲା ଦୂରକରି
ଯା ହେଲା ତାପରେ ଭୀଷ୍ମ ମନଦେଇ ଶୁଣ
ନାରଦ ବାକ୍ୟ ଗିରିଶ କରିଣ ସ୍ମରଣ
ନାନାରତ୍ନ ଅଳଙ୍କାରେ କନ୍ୟାକୁ ମଣ୍ଡିଲେ
ମଙ୍ଗଳ କୌତୁକ ସୂତ୍ର କରେ ବାନ୍ଧିଦେଲେ
ସୁବାସିତ ଫୁଲ ମାଳେ କରି ସୁଶୋଭିତ
ଦିବ୍ୟ ସୁକ୍ଷ୍ମୀନ ବସନେ କରିଣ ଆବୃତ
ସଖୀଗଣରେ ବେଷ୍ଟିତା କନ୍ୟା ସଙ୍ଗେ ଧରି
ଆନନ୍ଦରେ ହୃଦୟକୁ ପ୍ରଫୁଲ୍ଲିତ କରି
ଯୋଗବାର ଭଲଦେଖି ଅନୁକୁଳେ ଗଲେ
ବହୁ ଗିରି ନଦୀ, ବନ ଅତିକ୍ରମ କଲେ

ବାଟେ ଯାଉ ନାରୀ ଜଣେ ଦୃଷ୍ଟିରେ ପଡ଼ିଲା
ସୁନ୍ଦରତା ଅବା ନିଯେ ରୂପ ଧରିଥିଲା
ସୁନ୍ଦରୀ ମସ୍ତକ ଶିର ଗଢା ସେ ନବୀନା
ନଥିବେ ତା ସମ କେହି ତ୍ରିପୁରେ ଲଳନା
କୁରରୀ ପରାୟେ କାନ୍ଦୁଥିଲା ସେ ଯୁବତୀ
ଦେଖିଲେ ଗିରୀଶ ସଙ୍ଗେ ତାର କେ ନାହାନ୍ତି
ଦେଖି ତାକୁ ହିମବାନ ଚକିତ ହୋଇଲେ
କୌତୁକ ବଶେ ହୃଦରେ ଏ ବିଚାର କଲେ
ପରିଚୟ ନେବି ୟାର ଉଚିତ ଏ ମୋର
ହୃଦୟରେ ହିମବାନ କରି ଏ ବିଚାର
ଅତିଧୀରେ-ଦୁଃଖଭରେ ତା ସମୀପେ ଯାଇ
ପଚାରିଲେ ଧୀରେ ତାକୁ ପାଖରେ ବସାଇ
କିଏ ତୁମ୍ଭେ କଲ୍ୟାଣୀ ଗୋ କର ତା ପ୍ରକାଶ
କିଏ ପତି କିପାଁ ସେହି ନାହିଁ ତୁମ୍ଭ ପାଶ
କି କାରଣେ କରୁଅଛ ଏପରି ରୋଦନ
ତ୍ରିଲୋକ ସୁନ୍ଦରୀ ତୁମେ ନାରୀଙ୍କ ରତନ
ତୁମ୍ଭ ରୋଦନ କାରଣ ଅତି ଗୁରୁତର
ହୋଇଥିବ ନିଶ୍ଚେ ଏହା ଅଟେ ମୋ ବିଚାର
ବାଧା ଯଦି ନାହିଁ ତେବେ ତା କହ ବୁଝାଇ
ପଚାରନ୍ତେ ଏହିପରି ଗିରି କୁଳ ସାଇଁ
ବସନ୍ତ ସହିତ ଅତି ଦୁଃଖିତ ହୋଇଲା
ଦୀର୍ଘଶ୍ୱାସ ଛାଡ଼ି ଏହି ବାଣୀ ପ୍ରକାଶିଲା
କହିବା ବେଳେ ତା ଶୋକ ହୋଇଣ ପ୍ରବଳ
ଭୂଧର ନେତ୍ରରେ ମଧ୍ୟ ସୃଷ୍ଟିକଲା ଜଳ
କହିଲା ନବୀନା ତେବେ ଶୁଣ ହେ ସୁବ୍ରତ
ମୋନାମ କେତକୀ କାମ ଅଟନ୍ତି ମୋ କାନ୍ତ
ଏ ପର୍ବତେ ତପେ ରତ ଅଛନ୍ତି ଶଙ୍କର
ଦେଖି ସେ ତପସ୍ୟା ଭୀତ ହୋଇ ପୁରନ୍ଦର
ଡ଼କାଇ ମୋର ସ୍ୱାମୀଙ୍କୁ ବୁଝାଇ ସୁଝାଇ
ପଠାଇଦେଲେ ଶିବଙ୍କ ତପ ଭଗ୍ନ ପାଇଁ
ତପେ ବିଘ୍ନ ଜାଣି ଶିବ ଅତିକ୍ରୋଧ ହେଲେ
ତୃତୀୟ ନୟନେ ମୋର କାନ୍ତେ ନିରେଖିଲେ
ସେ ନେତ୍ରର ଅଗ୍ନିଶିଖା ପ୍ରବଳ ହୋଇଲା
ମୋ କାନ୍ତଙ୍କୁ ଭସ୍ମ ଅବଶେଷରେ ରଖିଲା
ମୋହର ବଚନ ଏବେ ଶୁଣ ମତିମାନ
କେତେକାଳ ଏ ଦେହ ମୁଁ କରିବି ଧାରଣ

ଶୈଳେନ୍ଦ୍ର ରତି ମୁଖରୁ ସେକଥା ଶୁଣିଲେ
କ୍ଷଣେ ମୌନେ ରହି ନିଜ ମନେ ବିଚାରିଲେ
ଭ୍ରମଯୁକ୍ତ ହେଲା ତେବେ ହୃଦୟ ତାଙ୍କର
କି କରିବି ଏହା କରିଣ ବିଚାର
ତନୟାର ବେନି କର ଧରିଣ ସ୍ୱକରେ
କହିଲେ ଯା ଶୁଣିଲୁ ତା ଚିନ୍ତା କର ଥରେ
ବାହୁଡ଼ି ଚାଲ ଏଠାରୁ ସ୍ୱଭବନେ ଯିବା
ଅକାରଣ ପରିଶ୍ରମ କାହିଁକି କରିବା
ଗିରି ଜେମା ଲାଜେ କିଛି କହି ନ ପାରିଲେ
ସଖୀ ମୁଖରେ ପିତାଙ୍କୁ ପରେ ଶୁଣାଇଲେ
ଦୁର୍ଭାଗୀ ମୁଁ ଏ ଦେହରେ କି ଅଛି କାରଣ
ଶଙ୍କର ନୋହିଲେ ପତି ହେଉ ମୋ ମରଣ
ଶଙ୍କର ଯଦ୍ୟପି ତାତ ହୋଇଲେ ଏପରି
ଜାଣୁଅଛି ଅଟେ ଏହା ଦୁର୍ଭାଗ୍ୟ ମୋହରି
ଶଙ୍କର କିପରି ମୋର ହୋଇବେ ଭରତା
ସେହିକଥା ଏବେ ମୋତେ ଶିକ୍ଷାଦିଅ ପିତା
ଶୁଣିଛି ହେ ତାତ ଭବେ ତପ ଅଟେ ଶ୍ରେଷ୍ଠ
ତପସ୍ୟା କରିବା ଲୋକ ଲଭଇ ଅଭିଷ୍ଟ
ତପସ୍ୟାର ଅଭାବ ଏ ବିଶ୍ୱେ କିଛି ନାହିଁ
ତପସ୍ୟା ବଳେ ଦୁର୍ଭାଗ୍ୟ ଯାଏ ଆଡ଼ ହୋଇ
ତପସ୍ୟାରେ ଶଂକାଯାର ହୋଇଥିବ ଦୂର
ପୂରଣ ହୁଅଇ ନିଶ୍ଚେ କାମନା ତାହାର
ତେଣୁ ହେ ତାତ ଏବେ ମୁଁ ବିଚାରେ ଚିତ୍ତରେ
ସଂତୁଷ୍ଟ କରିବି ହର ଘୋର ତପସ୍ୟାରେ
ଶୈଳେନ୍ଦ୍ର ତନୟା ମୁଖୁ ଶୁଣି ଏହି ଗୀର
କଣ୍ଠରୋଧ ହେଲା ନେତ୍ର ବୁହାଇଲେ ନୀର
କହିଲେ ପରେ ଭୂଧରପତି ଦୁଃଖ ଭରେ
ମାଗୋ ଏ ତୋ ଚପଳତା ଭାବେ ମୁଁ ମନରେ
ମାଗୋ ସୁକୁମାର ଏହି ଶରୀର ତୋହର
ଜାଣିନାହିଁ କଷ୍ଟ ଯାହା ତପଶ୍ଚରଣର
ମନେରଖ ଏହା ମୋର ଲାବଣ୍ୟ ପ୍ରତିମା
ତୋ ଦେହ ଛୁଇଁ ନପାରେ ତପସ୍ୟାର ସୀମା
ତପସ୍ୟା ପାଇଁ ରଚିତ ଯେବଣ ମନୁଷ୍ୟ
ସେମାନେ ସିନା ସହିବେ ତପସ୍ୟାର କ୍ଲେଶ
କାର୍ଯ୍ୟକରଣ ନ ଭାବି ତପେ କରି ଆଶ
କାହିଁକି ମୋ ଆଗେ ମାଗୋ କଲୁ ତୁ ପ୍ରକାଶ

ଜାଣେ ତପେ କାର୍ଯ୍ୟହୁଏ ଅବଶ୍ୟ ସାଧନ
କିନ୍ତୁ ଏବେ ତୋର ଏଥି କିବା ପ୍ରୟୋଜନ
ଚାଲ ମାଗୋ ଏବେ ନିଜ ଭବନକୁ ଯିବା
ସେଠାକୁ ଗଲେ ଯା କିଛି ବିଚାର କରିବା
ପିତାଙ୍କ ନିଷେଧ ଶୈଳସୁତା ନ ମାନିଲେ
ତପସ୍ୟା କରିବାପାଇଁ ଚିତ୍ତ ଦୃଢ଼କଲେ
ନିମ୍ନଗାମୀ ଜଳଧାର ପରି ତାଙ୍କ ମନ
ପିତାଙ୍କ ବଚନ ଭୀଷ୍ମ ନକଲା ଗ୍ରହଣ
ତପସ୍ୟା କଷ୍ଟ ବିଚାରି ହେଲେହେଁ ଦୁଃଖିତ
ସୁତାର ପଣ ନିରେଖି ଗିରି ହେଲେ ତୃପ୍ତ
ପ୍ରଶଂସା କଲେ ତାପରେ ଦୃଢ଼ତା ତାଙ୍କର
ତଦପରେ ଯାହା ହେଲା ଶୁଣ କୁରୁବୀର
ସେହିକାଳେ ଅଦଭୂତେ ଶୂନ୍ୟବାଣୀ ହେଲା
ଆଜୁ ଉମା ବୋଲି ଶୈଳସୁତା ନାମ ହେଲା
ତ୍ରିଜଗତେ ସେହି ନାମେ ସେ ହେଲେ ପ୍ରଚାର
ନମଣ ଏଥି ସଂଶୟ ଶାନ୍ତନୁ କୁମାର
ପୁଣି ଶୁଭିଲା ଶୂନ୍ୟରୁ ହେ ଶୈଳରାଜନ
ତାହାଙ୍କ ସିଦ୍ଧିରେ ମନେ ସଂଶୟ ନ ଆଣ
ସ୍ୱୟଂ ସିଦ୍ଧ ଅଟନ୍ତି ଏ ଦୁହିତା ତୁମର
ପୂର୍ଣ୍ଣ ହେବ ତାଙ୍କ ଇଚ୍ଛା ସଂଦେହ ନକର
ଶୁଣି ତାହା ନରପତି ସଂତୁଷ୍ଟ ହୋଇଲେ
ତପସ୍ୟା ପାଇଁ ଉମାଙ୍କୁ ଅନୁମତି ଦେଲେ
କାନନେ ଉମାଙ୍କୁ ଛାଡ଼ି ସଖୀ ସଙ୍ଗତରେ
ତଦପରେ ହିମବାନ ଗଲେ ନିଜ ଘରେ
ଖୋଜି ଖୋଜି ସେ ପର୍ବତେ ଅଗମ୍ୟ ଯେସ୍ଥାନ
ଗଲେ ତହିଁ ଶୈଳସୁତା ତପସ୍ୟା କାରଣ
ତପସ୍ୟାକୁ ଦୃଢ଼କରି ହୃଦରେ ଧଇଲେ
ଦୁଇଗୋଟି ସଖୀ ମାତ୍ର ସଙ୍ଗତରେ ଥିଲେ
ହିମବନ୍ତେ ଶୃଙ୍ଗ ଏକ ଅତ୍ୟନ୍ତ ଶୋଭିତ
ଥିଲା ତାହା ନାନାବିଧ ଧାତୁରେ ପୂରିତ
ବିବିଧ ପୁଷ୍ପ ଲତାରେ ହୋଇଣ ବେଷ୍ଟିତ
ହରଇ ସବୁ ଋତୁରେ ଦର୍ଶକଙ୍କ ଚିତ୍ତ
ଆବିରତେ ଶୁଭେ ତହିଁ ଭ୍ରମର ଗୁଞ୍ଜନ
ପକ୍ଷୀଙ୍କ କୂଜନ ହରି ନେଉଥିଲା ମନ
ପୁଣ୍ୟମୟ ସେହି ଶୃଙ୍ଗ ଶୋଭା ବର୍ଣ୍ଣନରେ
ଅକ୍ଷମ ହୋଇବ କବି ଜାଣ ନିଶ୍ଚୟରେ

ଲତା ପାଦପ ପତ୍ରରେ ଶୃଙ୍ଗ ମନେ ହର
ସାନ୍ଦ୍ରତା ଭେଦି ନପାରେ କେବେ ରବିକର
ଗିରିରାଜ ସୁତା ସେହି ଶୃଙ୍ଗେ ପ୍ରବେଶିଲେ
ବଉଳି ବାସ ଭୂଷଣ ବଳ୍କଳ ପିନ୍ଧିଲେ
ସୁସଞ୍ଜ କଟୀ ଶୋଭିଲା କୁଶ ଦଉଡ଼ିରେ
ପବିତ୍ର କଲେ ଶ୍ରୀ ଅଙ୍ଗ ତ୍ରିକାଳ ସ୍ନାନରେ
ପାଟଳୀ ବୃକ୍ଷର ପତ୍ର ହୋଇଲା ଆହର
ଏହି ଭାବେ ଗତହେଲା ଶହେଟି ବର୍ଷର
ତଥାପି ତାପରେ ତାଙ୍କ ତୃପ୍ତି ନ ଆସିଲା
ପରେ ପାଟଳୀ ପଲ୍ଲବ ଖାଦ୍ୟ ବନ୍ଦହେଲା
ଗଛତଳେ ପଡ଼ିଥିବା ଶୁଖିଲା ପତର
ଖାଦ୍ୟ ହେଲା ପୁଣି ଆଉ ଶହେଟି ବର୍ଷର
ଅନାହାରେ ଆଉ ଶହେ ବର୍ଷ ହେଲା ଗତେ
ଦିଶିଲେ ଶୈଳଜା ତେବେ ଗାୟତ୍ରୀ ସମିତ
ଅଗ୍ନି ସଦୃଶ ଅଟଇ ତପସ୍ୟା ତାଙ୍କର
ଉଦ୍‌ବେଳିତ ହେଲେ ପ୍ରାଣୀ ପ୍ରଭାବେ ତାହାର
ଦେଖି ତପ ମଘବାନ ସଂତୋଷ ହୋଇଲେ
ସପତ ଋଷିଙ୍କୁ ମନେ ମନେ ସୁମରିଲେ
ଇନ୍ଦ୍ରଙ୍କ ସ୍ମରଣେ ଋଷି ହୋଇ ସୁ ପ୍ରସନ୍ନ
ଭେଟିଲେ ସେ କ୍ଷଣି ଯାଇ ଶଚୀଙ୍କ ରମଣ
ମହେନ୍ଦ୍ର ପୂଜିଲେ ତାଙ୍କୁ ବିଧି ଅନୁସାରେ
ସ୍ମରଣ କାରଣ ଋଷି ପୁଛିଲେ ତା ପରେ
କହିଲେ କହନ୍ତୁ ଥିଲା କେଉଁ ପ୍ରୟୋଜନ
ତେଣୁ ଆମ୍ଭଙ୍କୁ ସ୍ମରିଲ ହୋ ପାକଶାସନ
କହିଲେ ମଘବା ଶୁଣ ତୁମ୍ଭେ ଋଷିଗଣ
ମୋର ଏ ସ୍ମରଣେ ଅଛି ଯେଉଁ ପ୍ରୟୋଜନ
ଗିରିରାଜ ସୁତ ହିମବନ୍ତ ପର୍ବତରେ
ରତ ହୋଇ ରହିଛନ୍ତି ଘୋର ତପସ୍ୟାରେ
ତାହାଙ୍କ ଅଭିଷ୍ଟ ଯାହା ଆହେ ଋଷିଗଣ
ଭାବେ ତୁମ୍ଭ ଯୋଗୁଁ ତାହା ହୋଇବ ପୂରଣ
ଉମାଙ୍କର ତପ ଯେବେ ବେଗେ ହେବ ଶେଷ
ତ୍ରିପୁର ଲଭିବ ତହୁଁ ମଙ୍ଗଳ ଅଶେଷ
ତେଣୁ ଯାଇ କର ଶୀଘ୍ର ସେ କାର୍ଯ୍ୟ ସାଧନ
ଆହେ ସପ୍ତଋଷି ଘେନ ମୋର ନିବେଦନ
ତଥାସ୍ତୁ ସେ ପଦ ଋଷି ମୋଦେ ଉଚ୍ଚାରିଲେ
ସିଦ୍ଧ ସେବିତ ସେ ଗିରିଶୃଙ୍ଗେ ପ୍ରବେଶିଲେ

ତପୋରତା ଶୈଳସୁତା କରି ଦରଶନ
ପ୍ରକାଶିଲେ ସୁଧାସମ ସୁମିଷ୍ଟ ବଚନ
କଠୋର ଅତି ଏ ତପ ଅଟଇ ତୁମ୍ଭର
କହ ପଦ୍ମନେତ୍ରୀ ଥରେ କାରଣ ତାହାର
କହ ସେ କାମନା ଯାହା ଧରି ହୃଦୟରେ
ଶରୀରକୁ କୃଶ କଲ ମଜ୍ଜି ତପସ୍ୟାରେ
ପ୍ରଶ୍ନ ସପ୍ତଋଷିଙ୍କର ଶୁଣିଣ ଭବାନୀ
ଆଦର କରିଣ ତାଙ୍କୁ କହିଲେ ଏ ବାଣୀ
ଆପଣମାନେ ତପସ୍ୱୀ ଜାଣୁଅଛି ମୁହିଁ
ମୋ ତପ କାରଣ ଜ୍ଞାତେ ଶ୍ରଦ୍ଧା ଅଛି ରହି
ତେଣୁ ମୁଁ ମଉନ ବ୍ରତ କରିଣ ବର୍ଜନ
କହୁଛି ଯେ କଥା ବରେ ଶୁଣ ଋଷିଗଣ
ତୁମ୍ଭର ବନ୍ଦନା ପାଇଁ ଯାହା ଅଛିକରି
ଭାବେ ବାଧକ ନୋହିବ ତାପରେ ମୋହରି
ଆପଣମାନେ ମୋପ୍ରତି ହୋଇ ସୁପ୍ରସନ୍ନ
ଗ୍ରହଣ କରନ୍ତୁ ମୋର ପ୍ରଦତ୍ତ ଆସନ
ବସିବାପରେ ଆସନେ ଶୁଦ୍ଧଚିତ୍ତ ହୋଇ
ସଂତୁଷ୍ଟକରିବ ତପ କାରଣ ଶୁଣାଇଁ
ମୋତେ କିଛି ପଚାରିବା ଇଚ୍ଛା ଯେବେ ଥିବ
ଅକାତରେ ତାହା ମୋତେ ପଚାରି ବୁଝିବ
ଏହିପରି କହି ଗିରି ରାଜଙ୍କ ନନ୍ଦିନୀ
ଆଚରିଲେ ତାଙ୍କ ପୂଜା ହୃଦେ ହର୍ଷ ଘେନି
ମୌନ ଭଙ୍ଗ ଦେଖି ଋଷି ନଗଯେମାଙ୍କର
ଗୌରବେ ମନ ଆନନ୍ଦ ହୋଇଲା ଅପାର
ଦଜର ଗୌରବ ଏହା ହୃଦରେ ବିଚାରି
ନଗ ନନ୍ଦିନୀ ଋଷିଙ୍କୁ କହିଲେ ଏପରି
ଶାରୀରିକ କଦର୍ଥନା ପ୍ରାଣୀଙ୍କର ଯାହ
ସୁବିଜ୍ଞ ଆପଣମାନେ ଜାଣିଛନ୍ତି ତାହା
ଅତ୍ୟଧିକ କଦର୍ଥନା ହେଲେ ପ୍ରାଣୀଙ୍କର
ଉଦ୍ୟମେ ତା ଦୂରକରେ ଯେ ହୁଏ କୁଶଳ
ଉପାୟ କରିଣ କେହି ହୋଇ ଅତନ୍ଦ୍ରିତ
କୁଶଳ ଲଭେ ହେ ଋଷି ଅଟେ ଏ ମୋ ମତ
ଅଛନ୍ତି କେତେ ବିବିଧ ଉପକ୍ରମ କରି
ସିଦ୍ଧି ନପାଇ ଜୀବନ୍ତେ ଯାନ୍ତି ଯମପୁରି
ଏପରି ଅଛନ୍ତି ଦୁଇ ପ୍ରକାରେ ପୁରୁଷ
ଏହାମୋର ମତ ଶୁଣ ଆହେ ଋଷିଈଶ

ଆହେ ଋଷି ଖର୍ବପରି ହସ୍ତ ଅଟେ ମୋର
ଭାବିଛ ସ୍ପର୍ଶ କରିବି ବିନ୍ଧ୍ୟଗିରି ଶିର
ବାରମ୍ବାର ତହିଁପାଇଁ ହେଉଛି ପ୍ରସ୍ତୁତ
ଭାବେ ଆକାଶ କୁସୁମେ ହେବି ସୁଶୋଭିତ
ବୁଦ୍ଧିମୋର ଋଷିଗଣ ଅଟେ ଏହିପରି
ଅସଂଭବକୁ ସଂଭବ କରିବା ବିଚାରି
ହୁଅନ୍ତୁ ଭବ ମୋ ପତି ଏହି ଆଶା ଧରି
କରୁଛି ଏହି ତପସ୍ୟା ଆହେ ତପଚାରୀ
ପ୍ରକୃତରେ ଦୁରାରାଧ୍ୟ ଅଟନ୍ତି ଶଙ୍କର
ତାଙ୍କ ପ୍ରାପ୍ତି ପାଇଁ ଏବେ ଏ ତପସ୍ୟା ମୋର
ସୁର ଅସୁରଙ୍କ ଦ୍ୱାରା ହୋଇନି ନିର୍ଣ୍ଣିତ
ଏହି ପରମାର୍ଥ କର୍ମ ଆହେ ଋଷିବ୍ରତ
ଜାଣନ୍ତି ଆପଣ ଏହା ବିରାଗୀ ଶଙ୍କର
ଭସ୍ମ କରିଛନ୍ତି କନ୍ଦର୍ପର କଳେବର
ଅବଳା ମାତ୍ରକ ମୁହିଁ କହନ୍ତୁ କିପରି
ସନ୍ତୋଷ କରିପାରିବି ପ୍ରଭୁ ତ୍ରିପୁରାରି
ଯେ ରୀତିରେ ଦେବୀ ସବୁ କହିଲେ ବିସ୍ତାରି
ଶୁଣିଲେ ସୁସ୍ଥିରେ ବସି ସବୁ ତପଚାରୀ
କହିଲେ ବିଚାରି ପରେ ସାର୍ଥକ ବଚନ
ପାର୍ବତୀଙ୍କ ପ୍ରତି ମନେ ହୋଇ ସୁ ପ୍ରସନ୍ନ
ଏ ଲୋକ ଯା ସୁଖ ମିଳେ ତା ଦୁଇପ୍ରକାର
ଶରୀର ସଂଯୋଗ ପୁଣି ନିବୃତ୍ତି ଚିତ୍ତର
ଦେଖିଲେ ଶିବ ପ୍ରକୃତି ଅଟଇ ଏପରି
ଲଙ୍ଗଳା ହୋଇ ସେ ବୁଲୁଥାଏ ବାୟାପରି
ଅଟେ ପୁଣି ଭୟଙ୍କର ଆକୃତି ତାହାର
ସଦା ଭସ୍ମ ବିଲୋପିତ ଅଟେ ତା ଶରୀର
ମଲା ମଣିଷର ହାଡ଼ ଅଟେ ତା ଭୂଷଣ
ବିଚାର ଥରେ କିପରି ଅଟେ ତା ଦୂଷଣ
ତିନି ତିନି ସେହି ଶିବ ଭିଖ ମାଗି ଖାଏ
ବସନା ନ ମିଳେ ଯେଣୁ ଦିଗମ୍ବର ରହେ
ଜାଣିଥିବ ତୁମେ ଆଖି ତିନିଟା ତାହାର
ଅସ୍ଥିର କାର୍ଯ୍ୟ ତାର ସେ ବିରୂପର ଘର
ଉନ୍ମଦରେ ମତ୍ତ ହୋଇ କରୁଥାଏ ନାଟ
କପର୍ଦକ ହୀନ ସେହି ଅଟଇ ଉଭଟ
ତାପରି ବିଭସ୍ସ ଭବେ ଆଉ କିଏ ନାହିଁ
ତୁମପତି ପାଇଁ ଯୋଗ୍ୟ କେବେ ସେ ନୁହଇ

ସେ ଶିବ ଅଟଇ ସବୁ ଅନର୍ଥର ମୂଳ
କାହିଁକି ତାପାଇଁ ହୁଅ ଏପରି ବ୍ୟାକୁଳ
ସୁସ୍ଥିର ଶରୀର ବହି ସୁଖ ଯେବେ ଲୋଡ଼
ଶିବକୁ ପତି କରିବା ଆଶା ବେଗେ ଛାଡ଼
ଯେଉଁ ଶିବ ସଦା ଭୂତ ସଙ୍ଗେ ରହିଥାଏ
ନିନ୍ଦିତ କରମ ସଦା ତା ହୃଦରେ ଥାଏ
ଏହି କଥା ତୁମେ ନିଜ ହୃଦେ ବିଚାରିବ
ଦେହଜ ସୁଖ ତାଠାରୁ କିପରି ମିଳିବ
କହିଲେ ପୁଲସତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଶୁଣି ଋଷି ମୁଖୁ ଶିବ ନିନ୍ଦିତ ବଚନ
ଅତିଶୟ କ୍ରୋଧହେଲେ ଗିରୀଶ ନନ୍ଦନୀ
କପାଳ ପର୍ଯ୍ୟନ୍ତ ନେତ୍ର ହୋଇଗଲା ଟାଣି
ଅତ୍ୟନ୍ତ ହୋଇଲା ଓଷ୍ଠ ପୁଟ ଥରହର
ନେତ୍ରର ବର୍ଣ୍ଣ ହୋଇଲା ଯେସନେ ମନ୍ଦାର
ଋଷିଙ୍କୁ କହିଲେ ତେବେ ନଗରାଜ ପୁତ୍ରୀ
କହି କି ଅଟେ ଅସଦ୍ ଗ୍ରହଣର ନୀତି
ବ୍ୟସନ ଯନ୍ତ୍ରଣା କହ ରହେ କେଉଁଠାରେ
ଜାଣେ ମୁଁ ପାରଗ ତୁମ୍ଭେ ବିରୁଦ୍ଧ ଅର୍ଥରେ
ସତପଥେ ଆପଣଙ୍କୁ କିଏ ଜୁଟାଇଲା
ଏ ଦୁଷ୍ଟ ବୁଦ୍ଧିରେ କହ କିଏଯୁକ୍ତ କଲା
ତୁମ୍ଭ ଦୁଷ୍ଟ ବୁଦ୍ଧି ଏବେ ଜାଣିଗଲି ମୁହିଁ
ମୋ ଆଗେ ନକହି କିଛି ରହ ତୁନୀହୋଇ
ପ୍ରକାଶ ନକର କିଛି ତୁମ୍ଭର ବିଚାର
ଦୃଢ଼ତା ଅଛି ଅଭୀଷ୍ଟ ପ୍ରାପ୍ତିରେ ମୋହର
କାର୍ଯ୍ୟ ହୋଇପାରେ ଭଲ ଲୋକଙ୍କ ମତରେ
ଅନୁରୂପ ଶଙ୍କା ହେଲା ଶୈଳେନ୍ଦ୍ର ମନରେ
ସତ୍ୟପାଇଁ ହେଉଥାନ୍ତି ସର୍ବେ ଉତ୍କଣ୍ଠିତ
କାର୍ଯ୍ୟ କରିବାକୁ ତେବେ ହୁଏ ଯେ ଉଦ୍ୟତ
ମହାନ୍ ଆତ୍ମା ସେହେତୁ ଶୈଳ ନରପତି
ଉପସ୍ଥିତ କାର୍ଯ୍ୟପାଇଁ ବ୍ୟଗ୍ର ହେଲା ମତି
ବିଶେଷ ଦର୍ଶନେ ଯେବେ କେବେ ହୁଏ ମନ
ଯାତ୍ରୀରୂପେ ଗମି କରେ ସେ ଧର୍ମ ଅର୍ଜନ
ମହାବ୍ରତଧାରୀ ଯେତେ ଅଛନ୍ତି ବିଶ୍ୱରେ
ସେମାନେ ଏହା ପ୍ରମାଣ ଶୁଣ ସୁଚିତ୍ତରେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
କହି ଏହା ସପ୍ତଋଷି ହୋଇ ତ୍ୱରତର
ଗିରିରାଜ ହିମବାନ ପାଖରେ ଗଲେ
ଭୂଧର ନୃପତି ଦେଖି ବହୁ ପୂଜା କଲେ
ସୁପ୍ରସନ୍ନେ ଋଷିଗଣ ଉତ୍ସାହଯୁକ୍ତ ହୋଇ
କହିଲେ ହିମବନ୍ତଙ୍କୁ ଅତି ପ୍ରୀତ ବହି
ଇଚ୍ଛନ୍ତି ତୁମ୍ଭ କନ୍ୟାଙ୍କୁ ଶିବ ଭଗବାନ
ଅଟେ ଉମା ହେମହୂତ ଆହୁତି ସମାନ
ପ୍ରଦାନୀ ତାହାଙ୍କୁ ଆପେ ହୁଅନ୍ତି ପବିତ୍ର
ବିଳମ୍ବ କରିବା ଏଥି ନୁହଇ ଉଚିତ
ପୁଲସ୍ତ୍ୟ କହିଲେ ଶୁଣ ଶାନ୍ତନୁ କୁମର
ଶୈଳରାଜ ଶୁଣି ବାଣୀ-ସପ୍ତଋଷିଙ୍କର
ଅତି ଆନନ୍ଦରେ ହୋଇଗଲେ ମୁହ୍ୟମାନ
ଉତ୍ତର ଦେବ କୁ ମୁଖେ ନଆସେ ବଚନ
କଣ୍ଠରୁଦ୍ଧ ହେଲା କିଛି କହି ନ ପାରିଲେ
ଭାବବେଶ ହେତୁ କ୍ଷଣେ ମଉନେ ରହିଲେ
ତଦପରେ ମେନା ତହିଁ ହୋଇ ଉପସ୍ଥିତ
ଭକ୍ତିଭରେ ଋଷିପାଦେ ହୋଇଲେ ପ୍ରଣତ
ଅର୍ଚ୍ଚନା କଲେ ଋଷିଙ୍କୁ ବହୁତ ଭାବରେ
ପାଦ୍ୟ ଅର୍ଘ୍ୟ ଆଦି ଉପଚାର ବିଧାନରେ
କନ୍ୟାର ସ୍ନେହରେ ଉମା ହୋଇଣ ବିକଳ
ଲୋତକରେ ବେନି ନେତ୍ର କରି ଛଳଛଳ
କହିଲେ ମୋ କନ୍ୟା ଜନ୍ମ ହେଲା ଯହିଁପାଇଁ
କରିଛି ମୁଁ ଇଚ୍ଛା ଋଷି ସେହିଫଳ ପାଇଁ
ଉପସ୍ଥିତ ହୋଇଅଛି ଏବେ ସେ ସମୟ
ବିବାହରେ ଦେବାତାକୁ ଅଟଇ ନିଶ୍ଚୟ
ଧନେ ମାନେ ରୂପେ ଗୁଣକୁଳେ ଶ୍ରେଷ୍ଠ ଯେବେ
ନ ମାଗିଲେ ହେଲେକନ୍ୟା ଯାଚିଦେବ ତେବେ
ଅନୁଚିତ ହେଲେ ମଧ୍ୟ ଏହା କରଣୀୟ
କହିଛନ୍ତି ବିଜ୍ଞମାନେ କରିଣ ନିଶ୍ଚୟ
ଅଟନ୍ତି ଶଙ୍କର ଋଷି ସଦା ଦିଗମ୍ବର
ମହତ ଜଟାରେ ଶୋଭା ପାଏ ଯାର ଶିର
ତ୍ରିଶୂଳଟାଏ ସର୍ବଦା ଧରିଥାନ୍ତି କରେ
କନ୍ଦର୍ପକୁ ଭସ୍ମକେଲ ନେତ୍ର ପାବକରେ
ସର୍ବଦା କାମନା ପ୍ରଦାନରେ ଥାନ୍ତି ରତ
ନଜାଣିଲେ କନ୍ୟା ତପେ ହୋଇ ଉପସ୍ଥିତ
ମେନାଙ୍କର ସେହି ବାଣୀ ଋଷିଗଣ ଶୁଣ
କହିଲେ ଶିବ ବିଭୂତି ଶୁଣ ଗିରିରାଣୀ

ତିନିପୁରେ ରହିଛନ୍ତି ଯେତେ ସୁରାସୁର
ସମସ୍ତେ ଶିବଙ୍କ ପଦ ସେବାରେ ତତ୍ପର
ତହିଁରୁ ଲାଭ ହୁଅଇ ଆନନ୍ଦ ଅପାର
ପରମ ଶାନ୍ତିରେ ହୃଦ ହୁଏ ଭରପୁର
ଆବଶ୍ୟକ ଯେବେ ଯାହା ହୁଅଇ ଯାହାର
ସୁଚରୁ ଭାବରେ ତାହା ଦେଇଥାନ୍ତି ହର
ଯେଉଁ ଯୋଗୀ ତାଙ୍କୁ ଭାବେ ଯେବଣ ରୂପରେ
ଦେଖାଦେଇଥାନ୍ତି ଶିବ ତାକୁ ସେ ରୂପରେ
ଉତ୍ତମବ୍ରତ ଯାହାର ହୁଏ ସମାପନ
ତାଙ୍କପାଶେ ଯାଇ ସେହି ଲଭଇ ଆସନ
କହିଲେ ଋଷିଏ ମୋଦେ ଶୁଣି ଗିରିବର
ଆଗମନ ତାହାଙ୍କର ଦର୍ଶନେ ଆମ୍ଭର
ନାୟକ ସେହି ଅଟନ୍ତି ସମସ୍ତପୁଣ୍ୟର
ତାହାଙ୍କ ଦର୍ଶନେ ନାଶ ହୁଅଇ ପାପର
ଋଷିଗଣ ଶଙ୍କରଙ୍କ ଦରଶନ ପାଇଁ
ପ୍ରବେଶ ହୋଇଲେ ଭୀଷ୍ମ କୈଳାସରେ ଯାଇ
ବୀରକ ନାମରେ ଥିଲେ ଦ୍ୱାରପାଳ ତହିଁ
କହିଲେ ଋଷିଏ ତାଙ୍କ ସମୀପକୁ ଯାଇ
କହିଲେ ଶିବଙ୍କୁ ଯାଇ କର ନିବେଦନ
ଆସିଛନ୍ତି ଦରଶନ ପାଇଁ ମୁନିଗଣ
ଅଟତୁମ୍ଭେ ଗତି ଏବେ ଆମ୍ଭମାନଙ୍କର
କହୁଛ ବୃଥାରେ ଆଉ ନକର ଉଚ୍ଛୁର
ଋଷିଗଣ କଲେ ତାଙ୍କୁ ଏପରି ପ୍ରାର୍ଥନା
ଅତି ବିନୟରେ ଶୁଣ ଭୀଷ୍ମ ମହାମନା
ବୀରକ ମୁନିଙ୍କ ମୁଖୁ ଶୁଣି ଏହି ବାଣୀ
କହିଲା ଗୌରବଭରେ ଶୁଣ ମୁନିଶ୍ରେଣୀ
ଶଙ୍କର ନାହାନ୍ତି ଏହିକ୍ଷଣି ଆସ୍ଥାନରେ
ସନ୍ଧ୍ୟା କରି ଯାଇଛନ୍ତି ମନ୍ଦାକିନୀତୀରେ
ଅପେକ୍ଷା କରନ୍ତୁ କ୍ଷଣେ ଆହେ ବିପ୍ରଗଣ
ତାରେ କରିବ ଯାଇ ଶିବଙ୍କୁ ଦର୍ଶନ
ଶୁଣି ତାହା ଋଷିଗଣ ଜଗିଲେ ସେଠାରେ
ଶୁଣ ଭୀଷ୍ମ ଶିବ ଦରଶନ ଅପେକ୍ଷାରେ
ତୃଷିତ ଚାତକ ଯଥା ବର୍ଷାଜଳ ପାଇଁ
ଅତି ଆତୁର ହୋଇଣ ରହିଥାଏ ଚାହିଁ
ଅଳ୍ପକ୍ଷଣପରେ ବୀରାସନରେ ଅସୀନ
ପ୍ରତୀବଆଗୃୟୀ ମୃଗଚର୍ମ ଆଚ୍ଛାଦନ

ଜଗତର ଏକମାତ୍ର ଦେବ ମହେଶ୍ୱର
ପାଶକୁ ଯାଇ ବୀରକ କହିଲେ ଏ ଗୀର
ଶୁଣପ୍ରଭୁ ଶିବ ତବ ଦରଶନ ପାଇଁ
ସାତଜଣ ଋଷି ଦ୍ୱାରେ ଉଭାଛନ୍ତି ହୋଇ
ଆଜ୍ଞା ହେଲେ ସର୍ବେ ଆସି କରିବେ ଦର୍ଶନ
ଯେ ଆଜ୍ଞା ହେବ ମୁଁ ତାହା କରିବି ପାଳନ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ବିରକର କଥାଶୁଣି ପ୍ରଭୁ ବୀଶ୍ୱମ୍ଭର
ଧ୍ୟାନ ଭଙ୍ଗ କରିଦେବେ କନ୍ଦର୍ପ ଅରି
କହିଲେ ଆଣ ତାହାଙ୍କୁ ସମାଦର କରି
ଶିର ନୁଆଇଁବୀରକ-ସେହିଠାରୁ ଗଲେ
ନିକଟରେ ସ୍ଥିତ ମୁନିମାନଙ୍କୁ କହିଲେ
ଆହେ ଋଷିଗଣ ଆଜ୍ଞା ହେଲା ପ୍ରଭୁଙ୍କର
ବିଳମ୍ବ ନକରି ଯାଇ ଦରଶନ କର
ଶୁଣି ମୁନି ମାନେ ଶୀଘ୍ର ଆସନୁ ଉଠିଲେ
ସଜାଡ଼ି ସ୍ୱଜଟା ଶିରପରେ ବାନ୍ଧିଦେଲେ
କୃଷ୍ଣ ଜୀନାମ୍ବର ଦିବ୍ୟ ବେଦୀପରେ ସ୍ଥିତ
ମହାଯୋଗୀ ଶଙ୍କରଙ୍କୁ କଲେ ନେତ୍ରଗତ
ଦେଖିତାଙ୍କୁ ସପ୍ତଋଷି ଯୋଡ଼କର ହେଲେ
ସ୍ୱର୍ଗ ପୁଷ୍ପ-ପାରିଜାତ ଉପହାର ଦେଲେ
ଶଙ୍କରଙ୍କ ସମ୍ବର୍ଦ୍ଧନା ବିଚାରେ ଚିତ୍ତରେ
ଆଣିଥିଲେ ସେ କୁସୁମ ଋଷି ସଙ୍ଗତରେ
ସ୍ନେହ ଦୃଷ୍ଟିରେ ଋଷିଙ୍କୁ କରି ନିରୀକ୍ଷଣ
ବସ କହି ଦେଖାଇଲେ ଉପଳ ଆସନ
ଉପଯୁକ୍ତ ବ୍ୟବହାର ପାଇ ଶିବଙ୍କର
ସ୍ତୁତିଗାନ ଆରମ୍ଭିଲେ ସର୍ବ ଋଷିବର
ଆହେ ଶିବ ଏହା ଅଟେ ସୁଭାଗ୍ୟ ଆମ୍ଭର
ତପ ଧନ୍ୟ ହେଲା ପାଇ ଦର୍ଶନ ତୁମ୍ଭର
ଇନ୍ଦ୍ରାର୍ଚ୍ଚିତ ପଦକଞ୍ଜ ଦେଖିଲୁ ନୟନେ
ଭାଗ୍ୟବାନ ତେଣୁ ସର୍ବେ ବିଚାରୁଛୁ ମନେ
ତୁମ୍ଭର ବଚନ ଗୁଣ ଗୌରବ ବର୍ଦ୍ଧକ
ଶୁଣିବା ନିମନ୍ତେ ଇଚ୍ଛା ବଳିଛି ଅଧିକ
ଆହେ ପ୍ରଭୁ କହୁ ଏବେ ସେହି କଥାକର
ଯାହା ବଳରେ ରକ୍ଷିତ ହେବ ତିନିପୁର
କହିଲେ ପୁଲସ୍ତ୍ୟ ଶୁଣ ଗଙ୍ଗାଙ୍କ ନନ୍ଦନ
ସପ୍ତଋଷି ମୁଖୁ ଶୁଣି ବଚନ ଏସନ

କହିଲେ ଶଙ୍କର ମୋଦେ ଆହେ ଋଷି ସାଇଁ
ଯା ଭାବୁଛ କର ମୋ ସମ୍ମତି ଅଛି ତହିଁ
ଶୁଣ ଭୀଷ୍ମ ଯେବେ ଶିବ ଦେଶ ପାଇଲେ
କହି ନୋହିବ ଯେ ହର୍ଷ ସର୍ବେ ଲାଭକଲେ
ସର୍ବମୁନି ଉପଗତ ହେଲେ ସେହିଠାରେ
ତପସ୍ୟାରତା ଶୈଳଜାଥିଲେ ଯେଉଁଠାରେ
ବିଭକ୍ତିତ ସେହି ଗିରି ଗୁହା ମଧ୍ୟେ ଗଲେ
ମୋଦଭରେ ଗିରିଜାଙ୍କୁ ଏପରି କହିଲେ
ସୁରମ୍ୟ ପ୍ରୀୟ ସୁନ୍ଦର ଏ ରୂପ ତୁମ୍ଭର
ଘୋରତପେ ନଷ୍ଟ ଆଉ ଏପରି ନକର
ହୋଇଅଛନ୍ତି ପ୍ରସନ୍ନ ଶିବ ଭଗବାନ
ତୁମ୍ଭ ପାଣି ଗ୍ରହଣରେ ବଳାଇଲେ ମନ
ତୁମ୍ଭ ପିତାଙ୍କ ପାଶକୁ ଆମ୍ଭେ ଯାଇଥିଲୁ
ଶିବ ସଙ୍ଗେ ତୁମ ବିଭା ପ୍ରସ୍ତାବ ବାଢ଼ିଲୁ
ଏବେ ତୁମେ ଯାଅ ଘରେ ପିତାଙ୍କ ସଙ୍ଗରେ
ଆମ୍ଭେ ମଧ ଯାଉଅଛୁ ଯେ ଯାହା କୁଟୀରେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଋଷିଙ୍କ ମୁଖୁ ଗିରିଜା ଶୁଣି ସେ ବଚନ
ତପସ୍ୟା ସଫଳ ହେଲା ବୋଲି ବିଚାରିଲେ
ମିଥ୍ୟାର କାରଣ କିଛି ଚାହିଁ ନ ଦେଖିଲେ
ତେଣୁ ପିତାଙ୍କ ସଙ୍ଗରେ ହରଷ ଅନ୍ତରେ
ଚଳିଗଲେ ତେବେ ଭୀଷ୍ମ ଆପଣା ନବରେ
ପିତୃଗୃହେ ସେ ରାତିକୁ ମଣିଲେ ଭବାନୀ
ଶତବର୍ଷ ପରିମିତ ଅବା ସେ ରଜନୀ
ଶିବ ଦର୍ଶନ ଇଚ୍ଛାରେ ମନ ତାହାଙ୍କର
ଧଇଁଥିଲା ଯେଣୁ ଶୁଣ ଶାନ୍ତନୁ କୁମର
ବ୍ରାହ୍ମୀ ମୁହୂର୍ତ୍ତରେ ବନ୍ଧୁ ବାନ୍ଧବେ ଆସିଲେ
କ୍ରମେ ବିବାହମଙ୍ଗଳ କାର୍ଯ୍ୟେ ମନଦେଲେ
ଗନ୍ଧ ମାର୍ଦନ ଗୁହାରେ ଏ ଦିଗେ ଶଙ୍କର
ବିବାହ ଉତ୍ସବ ପାଇଁ ହୋଇଲେ ତତ୍ପର
ବିବାହ ଉତ୍ସବେ ଯୋଗ ଦେବାର କାରଣ
ଯୋଗେଶ୍ୱର ଶିବ ପଠାଇଲେ ନିମନ୍ତ୍ରଣ
ଦେବଋଷି ଯକ୍ଷ ନାଗ ଗନ୍ଧର୍ବ କିନ୍ନର
ଆସିଲେ ସମସ୍ତେ ମୋଦେ ପାଇ ଏ ଖବର
ଶିବଙ୍କର ବରବେଶ କରି ନେତ୍ରଗତ
ଯତ୍ନେ ଆଭରଣେ ସର୍ବେ ହେଲେ ସୁସଜ୍ଜିତ

ଚନ୍ଦ୍ରଖଣ୍ଡ ଆଣି ବ୍ରହ୍ମା ସେହି ସମୟରେ
ବାନ୍ଧିଦେଲେ ମୋଦଭରେ ଶଙ୍କର ଜଟାରେ
ସେ ସମୟେ ବ୍ରହ୍ମାଙ୍କର ଆଠୋଟି ନୟନ
ମୁକ୍ତହୋଇ ପ୍ରଣୟରେ ହୋଇଗଲା ପୂର୍ଣ୍ଣ
ସେ କାଳେ ଚାମୁଣ୍ଡା ଦିବ୍ୟ ସୁମନର ହାର
ଶିବଙ୍କ ଗଳାରେ ଦେଲେ ହୋଇ ହର୍ଷଭର
କାଳିକା ସେକାଳେ ଆସି କହିଲେ ଶଙ୍କରେ
ପୁତ୍ର ଯେବେ ଜନ୍ମ ହେବ ତୁମ୍ଭର ବୀର୍ଯ୍ୟରେ
ଦୈତ୍ୟଙ୍କୁ ଯୁଦ୍ଧେ ସେ ସୁତ କରିବ ନିଧନ
ତୃପ୍ତହେବି ମୁହିଁ ତେବେ ରକ୍ତ କରି ପାନ
ତେବେ ଅଳ୍ପ ଉଷ୍ଣହୋଇ ପବନ ବହିଲା
ହିମଗିରର ପ୍ରଭାବ ସଂକୁଚିତ କଲା
ବୃଷଭ ହୋଇଲା ନାନା ପୁଷ୍ପେ ବିଭୂଷିତ
ଗତି ହୋଇଲା ତାହାର-କ୍ରମ ବିବର୍ଦ୍ଧିତ
ଶିବ ନେତ୍ର ଆଗେ ବିଶ୍ୱ ସ୍ରଷ୍ଟା ଚତୁର୍ମୁଖ
ସପତ୍ନୀକ ହୋଇଗଲେ ମନେ ବହିସୁଖ
ଯେବେ ସର୍ବେ ପହଞ୍ଚିଲେ ଯାଇ କୈଳାସରେ
ସ୍ୱାଗତକଲେ ପର୍ବତରାଜ ସରାଗରେ
ବିଧି ପ୍ରକାରେ ପ୍ରଥମେ ଅର୍ଘ୍ୟଦାନ କରି
ବରଯାତ୍ରୀଗଣେ ସ୍ନେହେ ନେଲେ କରଧରି
ପୁରାରି ହରଷଭରେ ସେ ଦିନ ରାତ୍ରିରେ
ବାସକଲେ ଶୁଣ ଭୀଷ୍ମ କନ୍ୟା ପିତା ଘରେ
ଉତ୍ସବ ହେଲା ସେ ନିଶି ଅପ୍ସରା ନାଚିଲେ
ଗନ୍ଧର୍ବେ ବିବିଧ ତାଳେ ବାଜା ବଜାଇଲେ
ଦେବଦୈତ୍ୟ ମିଶି ସର୍ବେ କଲେ ସ୍ତୁତିଗାନ
ସବିବୁଧ ସ୍ତୁତିପାଠ କଲେ ମଘବାନ
ଆସିଥିଲେ ସର୍ବେ ନଗରାଜ ନିମନ୍ତ୍ରଣ
ସସ୍ତବକ ହୋଇଣ ହର ବିବାହ ଦର୍ଶନ
ବୃଷଭ ପୃଷ୍ଠ ଆରୋହି ଶିବ ତଦପରେ
ମନ୍ଦର ପର୍ବତେ ଗଲେ ପାର୍ବତୀ ସଙ୍ଗରେ
ଲୋଡ଼ା ହୋଇ ଯେତେବନ୍ଧୁ ତହିଁ ଆସିଥିଲେ
ତାଙ୍କ ପାଶେ ହିମବାନ ମଉନେ ବସିଲେ
ଅତି ଆର୍ତ୍ତ ହୋଇଥିଲେ ଭୂଧର ରାଜନ
ଜଗତର ଭୀଷ୍ମ ଏହା ଅଟଇ ନିୟମ
ପ୍ରାଣପ୍ରିୟ କନ୍ୟା ଶାଶୁ ଘରକୁ ପଠାଇ
ଜଗତେ କେ ନ କାନ୍ଦିଛି କହ ଦୁଃଖୀ ହୋଇ

ସ୍ୱାଭାବିକ ଯାହା ତାର କିଲୋଡ଼ା ବର୍ଣ୍ଣନା
ଦୁଃଖ ତଥାପି ଦୁଃଖେ ସେ ନହୁଏ ଗଣନା
ଆହେ ଶିବ ସଦାଶିବ ବିରହି ଚିତ୍ତରେ
ରାଜ ମୋର ହୃଦୟରେ ନିଶି ଦିବସରେ
ଏତିକି ଗୋପୀନାଥର ବିନତି ଘେନିବ
ଜୀବ ଥିବା ଯାଏ ହୃଦୁ ଅନ୍ତର ନୋହିବ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସଂବାଦେ
ସର୍ବଦେବ କୃତ ବ୍ରହ୍ମା ସ୍ତୁତି ନାମ
ଊନବିଂଶୋ ଧ୍ୟାୟଃ ।

❑

## ବିଂଶ ଅଧ୍ୟାୟ

### କାର୍ତ୍ତୀକେୟଙ୍କ ଜନ୍ମ ଓ ବିଜୟ

ପୁଲସ୍ତ୍ୟ ମହର୍ଷି ହୃଦେ ପୂର୍ଣ୍ଣ ମୋଦ ଭରି
କହିଲେ, କୃତ୍ତିକା ପ୍ରଶ୍ନେ ପର୍ବତ କୁମାରୀ
ଆନନ୍ଦିତ ଥିଲା ତେବେ ତାଙ୍କ କଳେବର
ପୁଣି ବଦନ ହୋଇଲା ହର୍ଷରେ ବିଭୋର
ଦେଖି ସେହିକାଳେ ପଦ୍ମପତ୍ର ସ୍ଥିତଜଳ
କୃତ୍ତିକା ସହର୍ଷେ ତାହା ଆଣି ତତକାଳ
ଶୈଳ-ସୁତାଙ୍କୁ ମୋଦେ ପାନ କରାଇଲା
ସେ ଜଳ କ୍ରମେ ଗିରିଜା ଗର୍ଭସ୍ପର୍ଶ କଲା
ଜଳପାନ ମାତ୍ରେ କୁକ୍ଷୀ ଶୈଳସୁତାଙ୍କର
ଆନ୍ଦୋଳିତ ହେଲା ଆହେ ଶାନ୍ତନୁ କୁମର
ଦକ୍ଷିଣ ପଟର କୁକ୍ଷୀ କରି ବିପାଟନ
ଶୁଣ ଭୀଷ୍ମ ଜାତହେଲା ଗୋଟିଏ ନନ୍ଦନ
ରୋଗ ଶୋକ ନିବାରକ ଥିଲା ସେ କୁମର
ତେଜେ ନିନ୍ଦା କରୁଥିଲା ଶତ ସୂର୍ଯ୍ୟଙ୍କର
ଅଙ୍କୁଶ, ଅନଳ, ଶୂଳଶକ୍ତି ତାର କରେ
ସୁଶୋଭିତ ହୋଇଥିଲା ଜନମ କାଳରେ
ଦୀପ୍ତିମନ୍ତ ଥିଲେ ମଧ ଆୟୁଧ ସକଳ
ଜାଣ ମୋର କହିବାର ଶାନ୍ତନୁ ଦୁଲାଳ
ତପ୍ତ ହାଟକ ପରାୟେ ଶିଶୁ ଅଙ୍ଗ କାନ୍ତି
ଦୈତ୍ୟନାଶେ ଠିଆହେଲେ ତୋରାହୋଇ ଅତି
ଏହିସବୁ କାରଣରୁ ନାମ ତାହାଙ୍କର
ମନେରଖିଥାଅ ଭୀଷ୍ମ ହୋଇଲା କୁମାର

ଉମା ବାମ କୁକ୍ଷୀ ପୁଣି କରିଣ ବିଦୀର୍ଣ୍ଣ
ସୌମ୍ୟ ଆଉ ଏକ ଶିଶୁ ହେଲା ଉତପନ୍ନ
ଅନିଳ ପରାୟେ ଦୀପ୍ତ ସ୍କନ୍ଧରେ ତାହାର
ଦିଶୁଥିଲା ଷଡ଼ମୁଖ ଅତି ସୁରୁଚିର
ଶତ୍ରୁନାଶ ଶକ୍ତିଥିଲା ତାହାର ଅଙ୍ଗରେ
କୃତ୍ତିକା ପ୍ରଦତ୍ତ ସେହି ଜଳର ଯୋଗରେ
ଷଟ୍ ଶାଖା ହୋଇ ଜନ୍ମିଲେ ରକ୍ଷ କୁଳାନ୍ତକ
ତେଣୁ ସେ ଶିଶୁର ନାମ ହୋଇଲା କାର୍ତ୍ତିକ
ଷଣ୍ମୁଖେ ବିସ୍ତୃତ ଥିଲା ସେ ଶିଶୁର ଯେଣୁ
ଶିବା ବୋଲି ଭୀଷ୍ମ ତାର ନାମ ହେଲା ତେଣୁ
ଛଅଟି ମୁଖ ଥିବାରୁ ଆହେ କୁରୁବୀର
ଷଡ଼ାନନ ଶାଖୀ ନାମେ ଲଭିଲା ପ୍ରସାର
ସ୍କନ୍ଧ, ବିଶାଖ, ଷଡ଼ବକ୍ତ୍ର ଆବର କାର୍ତ୍ତିକ
ଏତେ ନାମରେ ପ୍ରସିଦ୍ଧ ହେଲା ସେ ବାଳକ
ବହୁଳ ପକ୍ଷେ ମଧୁର ପଞ୍ଚଦଶୀ ତିଥି
ମହାବଳ ସେହି ଶିଶୁ ଛୁଇଁଲା ଧରିତ୍ରୀ
ସହସ୍ର ସୂର୍ଯ୍ୟର ତେଜ ଧରି ଶରବଣେ
ସୁର ଶତ୍ରୁ ଅସୁରଙ୍କ ବିନାଶ କାରଣେ
ସେହିପରି ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ
ବେନି ଅଙ୍ଗ ଏକହେଲା ଶର୍ବରୀ ଯୋଗରେ
ଦିବ୍ୟ ବିଭୂତିରେ ତାଙ୍କୁ କରି ବିମଣ୍ଡିତ
ଆଚରିଲେ ଅଭିଷେକ ସର୍ବ ଦଇବତ
ଦେବ ସେନାପତିରୂପେ ଅଭିଷିକ୍ତ ହୋଇ
ଦୀପ୍ତିରେ ଦେଲେ ସେ ଭୀଷ୍ମ ଜଗତକୁ ମୋହି
ସବୁ ଦେବତା ସହିତ ବ୍ରହ୍ମା ମଘବାନ
ଉପେନ୍ଦ୍ର ସହିତ ଆସିଥିଲେ ବିବସ୍ୱନ
ଗନ୍ଧ ମଲ୍ୟ ଦିବ୍ୟଧୂପ କ୍ରୀଡ଼ାନକ ଛାତ୍ର
ଭୂଷ, ଚାମର ପ୍ରଲେପେ ସେ ହେଲେ ଭୂଷିତ
ଦେବ ସେନା ନାମେ ଥିଲା ଇନ୍ଦ୍ରଙ୍କ ଦୁଲାଳି
ତ୍ରିପୁରେ ସୁନ୍ଦରୀ କେହି ନଥିବେ ତା ପରି
କାର୍ତ୍ତିକେୟ ସଙ୍ଗେ ତାଙ୍କ ରଚିଲେ ବିବାହ
ଇନ୍ଦ୍ରାଦି ଦେବତା ସର୍ବେ ହୃଦେ ଭରି ସ୍ନେହ
ବିଷ୍ଣୁ ଦେଲେ ତୋଷେ ତାଙ୍କୁ ଆୟୁଧ ନିଜର
ଦଶଲକ୍ଷ ଯକ୍ଷ ମୋଦେ ଅର୍ପିଲେ କୁବେର
ସ୍ୱତେଜକୁ ହୁତାଶନ ତାଙ୍କୁ କଲେଦାନ
ଯୋଗାଇ ଦେଲେ ମରୁତ ଉତ୍ତମ ବାହନ

ଖେଳନା ରୂପରେ ଦେଲେ ତ୍ୱଷ୍ଟା ପ୍ରଜାପତି
କାମରୂପୀ କୁକୁଟକୁ ମନେ ବହି ପ୍ରୀତି
ଏପରି ଭାବରେ ଥିଲେ ଯେତେ ଦେବଗଣ
ଷଣ୍ମୁଖ କୁଟୁମ୍ବ ରୂପେ ହୋଇଲେ ଗଣନ
ଶତସୂର୍ଯ୍ୟ କାନ୍ତି ଜିତ ପ୍ରଭୁ ସ୍କନ୍ଦଙ୍କର
ମାନସ ତୋଷିଲେ ଦାନେ ସମସ୍ତ ଅମର
ଜାନୁପାତି ଭୂମିପରେ ବସି ସୁରଗଣ
କାର୍ତ୍ତିକଙ୍କ ତୁଷ୍ଟିପାଇଁ କଲେ ସ୍ତୁତିଗାନ
ସଂତୁଷ୍ଟ ହୋଇଣ ସ୍କନ୍ଦ ଦେବଙ୍କ ସ୍ତୁତିରେ
କହିଲେ ତାହାଙ୍କୁ ଚାହିଁ ଅତି ଆନନ୍ଦରେ
ତୁମ୍ଭର କାମନା ଯାହା କହ ସୁରଗଣ
ଜାଣିଲେ ତା ନିଶ୍ଚୟ ମୁଁ କରିବି ପୂରଣ
ସ୍ତୁତିରୁ ନିବର୍ତ୍ତିରହି କର ତା ପ୍ରକାଶ
ସୁଫଳ ଲଭେ ସଂଦେହ ନକରିବ ଲେଶ
ଚରିକାଲୁ ଅଛି ଯାହା ତୁମ୍ଭର ହୃଦୟେ
ସେ ସବୁ କର ପ୍ରକାଶ ମୋ ପାଶେ ନିର୍ଭୟେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଅଭୟ ସେ ବାଣୀ ଶୁଣି କାର୍ତ୍ତିକେୟଙ୍କର
ସୁରେ ତାଙ୍କ ଚରଣରେ ମଥା କରି ନତ
ପ୍ରସନ୍ନତା ଧରି ହୃଦେ କହିଲେ ଏମନ୍ତ
ଶୁଣନ୍ତୁ ଦୁଃଖ ଆମ୍ଭର ଆହେ ଭଗବାନ
ତାରକ ନାମରେ ଅଛି ଅସୁର ରାଜନ
କୁଳବୃଦ୍ଧ ଅଟେ ସେହି ଅମର ଗଣର
ବଳରେ ସେ ତ୍ରିପୁରବୁ ନକରେ ଖାତର
ଦୁର୍ଜୟ କ୍ରୋଧୀ ଆବର ଅଟେ ଦୁରାଚାରୀ
ଭୟବୋଲି କାହାଠାରେ ନଥାଏ ତାହାରି
ଦୁର୍ଦ୍ଧର୍ଷ ପଣରେ ସେହି ତାର ପଟାନ୍ତର
ଡ଼ରି ରହିଛନ୍ତି ପ୍ରଭୁ ତାକୁ ଚରାଚର
ଆମ୍ଭର ବିନୟ ଘେନି ଆହେ ଭଗବାନ
ସେ ଦୁଷ୍ଟ ଦୈତ୍ୟର ବଧ କରନ୍ତୁ ସାଧନ
ଭୟାବହ କୃତ୍ୟ ତାର ସବୁ ଏହିଥର
ପ୍ରଭୁ ଏ ସମୟ ଅଟେ ଉପଯୁକ୍ତ ତାର
ହିରଣ୍ୟ କଶିପୁ ନାମେ ଦୁର୍ଦ୍ଧର୍ଷ ଦଇତ
ତା ବଳେ ହୁଅନ୍ତି ଦଳି ସର୍ବ ଦଇବତ
ଅଟେ ସେହି ତିନିପୁରେ ଯଜ୍ଞ ଧ୍ୱଂସକାରୀ
ପାପକର୍ମ କେତେ କହି ନୋହିବ ତାହାରି

ତାପିତ ହୁଅନ୍ତି ଧାତା ବଳରେ ତାହାର
ସେ ରକ୍ଷ ସଂହାର ଇଚ୍ଛା ଅଟେ ଦେବଙ୍କର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ତନୟ
ଶୁଣି ଗୁହ ଦେଇ ସୁର ଗଣଙ୍କୁ ଅଭୟ
ଶ୍ରୀମୁଖେ କହିଲେ ତାହା ସେପରି ହୋଇବ
ମୋର କରେ ସୁର ଶତ୍ରୁ ନିଶ୍ଚୟ ମରିବ
ଶୁଣି ତାହା ସୁରଗଣ ଅତି ହର୍ଷଭରେ
ପ୍ରଣାମ କଲେ ଷଣ୍ମୁଖ ଚରଣ ପ୍ରାନ୍ତରେ
ଏହିପରିଭାବେ ହୋଇ ସୁରଗଣେ ସ୍ତୁତ
ହୋଇଲେ ସେହି କାର୍ତ୍ତିକ ଜଗତର ନାଥ
ଜଗତ କଣ୍ଟକ ତାରକାର ବଧ ପାଇଁ
ଉଦ୍ୟତ ହୋଇ ଚଳିଲେ ଦେବସୈନ୍ୟ ସାଇଁ
ଷଣ୍ମୁଖ ଆଶ୍ରୟ ଲଭି ଶଚୀଙ୍କ ରମଣ
କଲେ ଅସୁର ପାଶକୁ ଦୂତେକ ପ୍ରେରଣ
କଠୋର ଭାଷଣେ ଦୂତ ମହା ପାରିବାର
ନିର୍ଭୟ ପୁଣି କଥନେ ସେ ଅଟେ ଚତୁର
ଇନ୍ଦ୍ରଙ୍କେ ପ୍ରେରିତ ହୋଇ ସେହି ଦୂତଗଲା
ନିର୍ଭୟ ହୋଇଣ ରକ୍ଷ ରାଜକୁ କହିଲ
ପଠାଇ ଅଛନ୍ତି ମୋତେ ଅମରଈଶ୍ୱର
ଦେବଙ୍କର ଶ୍ରେଷ୍ଠ ଇନ୍ଦ୍ର ଶଚୀଦେବୀ ବର
ହେ ତାରକା ସୁର ଆସ ତାହାଙ୍କ ଅଗ୍ରତେ
ଯେତେଛନ୍ତି ସୈନ୍ୟତବ ଧରିଣ ସଙ୍ଗତେ
ଯେତେ ତୋର ବଳଅଛି କର ପ୍ରଦର୍ଶନ
ଏ ସଂଦେଶ ଦେଇଛନ୍ତି ନମୁଚୀ-ସୂଦନ
ଜଗତକୁ ଦେଉଅଛୁ ରକ୍ଷ ବହୁ ତାପ
ତୋ ଘେନି ସମସ୍ତେ ଦୁଃଖ ପାଇଲେ ଅମାପ
ଦୁଷ୍ଟପଣେ ହୋଇଅଛୁ ତ୍ରିପୁର ଈଶ୍ୱର
ସେହି ପାପ ଫଳ ଆଜି ଭୋଗିବୁ ଅସୁର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଅଦ୍ଭୁତ ସେ ଦୂତବାକ୍ୟ ଶୁଣି ଯାତୁଧନ
ଅତିକ୍ରୋଧ ବେନି ନେତ୍ର ରକ୍ତବର୍ଣ୍ଣ କଲା
ପାଇବା ଐଶ୍ୱର୍ଯ୍ୟ ନଷ୍ଟ ସମ ବିଚାରିଲା
ଦୁଷ୍ଟ ଆତ୍ମା ସେ ଦୂତକୁ ଆହେ କୁରୁରାଣ
ସଂଧାନ କଲା ତାରକ ତୀକ୍ଷ୍ଣ ବାକ୍ୟ ବାଣ
ଦେଖିଛି ପୌରୁଷ ମୁହିଁ ତୋ ରାଜା ଇନ୍ଦ୍ରର
ଥରେ ନୁହେଁ ଯୁଦ୍ଧେ ତାହା ଅଟେ ଶହେଥର

ଆରେ ଦୁଷ୍ଟବୁଦ୍ଧି ଦୂତ ତୁ ଅଟୁ ନିର୍ଲଜ
କେଉଁଠୁ ପାଇଲୁ ତୁହି ଏହିପରି ଧୈର୍ଯ୍ୟ
ଆଜିଯାଏଁ ତୁହି ଯେଣୁ ଚିହ୍ନିନାହୁଁ ମୋତେ
ଜାଣୁଅଛି ତେଣୁ ଲାଜ କିଛି ନାହିଁ ତୋତେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ କୁମର
ଦୂତକୁ କହି ଏପରି ଦୁଷ୍ଟ ନିଶାଚର
ଦୂତ ଗଲାପରେ ପୁଣି ବିଚାରିଲା ମନେ
ଇନ୍ଦ୍ରର ଏହି ବିଚାର ଆସିଲା କେମନେ
ଶକ୍ତିବନ୍ତ କେହିତାର ହୋଇଛି ସହାୟ
ଦୂତର କଥାରୁ ମିଳେ ସେହି ପରିଚୟ
ତେଣୁ ମଘବା ହୋଇଛି ଏତେ ଭୟହୀନ
ଏତେକାଳ ଯାହା ହୋଇଥିଲା ମୋ ସ୍ୱପନ
ଜଣାଯାଉଅଛି ଏହା ସୁତ ଶିବଙ୍କର
ଶୁଣିଛି ଜନ୍ମିଛି ସ୍କନ୍ଧ ନାମ ତାହାଙ୍କ
ସେହି ଅବା ହୋଇଥିବେ ଇନ୍ଦ୍ରର ସହାୟ
ତେବେ ଦେଖିଲା ଅଶୁଭ ଶକୁନ ନିଶ୍ଚୟ
ଆକାଶ ମାର୍ଗରୁ ବହୁ ଧୂଳି ବରଷିଲା
ତା ସଙ୍ଗରେ ରକ୍ତ ମଧ୍ୟ ଭୂମିରେ ପଡ଼ିଲା
ତାରକାର ନାମ ନେତ୍ର ହୋଇଲା ସ୍ଫୁରଣ
ମୁଖ ସୁଖିଯାଇ ହେଲା ପାଣ୍ଡୁର ବରଣ
ମହାଭୟ ଚିହ୍ନ ତାର ମୁଖେ ଉକୁଟିଲା
ବରଡ଼ା ପତର ପରି ତା ଛାତି ଥରିଲା
ମ୍ଳାନପଦ୍ମ ଛବି ତାର ଦିଶିଲା ମୁଖରେ
ସମସ୍ତଙ୍କୁ ଚଳିଦେଲା ଦୁଷ୍ଟ ପ୍ରକୃତିରେ
ଛୋଟ ଲୋକଠାରେ ହେଲା ଅତ୍ୟନ୍ତଭୀଷଣ
ବୃଥାରେ କଲା ତାହାକୁ ବହୁତ ଧର୍ଷଣ
କୁଶକୁନ ଦେଖି ମଧ୍ୟ କିଛି ନ ଜାଣିଲା
ମଦଗର୍ବେ ସେ ସବୁକୁ ତୁଚ୍ଛ ମନେକଲା
କ୍ଷଣକାଳ ପାଇଁ ମାତ୍ର ବସିଲା ମଉନେ
ତଦପରେ ଡକାଇଲା ସେନାପତି ଗଣେ
ବାଜିଗଲା ଯୁଦ୍ଧ ଘଣ୍ଟି ସମସ୍ତେ ଜାଣିଲେ
ଆଗତ ଯୁଦ୍ଧ ବିଚାରି ପକ୍ଷେ ସଜ ହେଲେ
ହାତୀ ଘୋଡ଼ା ସୈନ୍ୟରଥ ବିବିଧ ପ୍ରକାରେ
କ୍ଷଣକରେ ଆସି ରୁଣ୍ଡ ହେଲେ ତା ପାଶରେ
ଧ୍ୱଜ ପତାକା ଶୋଭିତ ରଥ ଅଗଣିତ
ସୈନ୍ୟସହ ଅଶ୍ୱେ ବିଜେ ହୋଇ ମୁଖରିତ

ଅଦଭୂତେ ଆକାରରେ ବହୁତ ବିମାନ
ନାନାବର୍ଣ୍ଣ ପତାକାରେ ଥିଲା ଶୋଭାମାନ
ହୋଇଥିଲେ ସେନା ବହୁ ଭୂଷଣେ ଭୂଷିତ
ସୁସ୍ୱରେ କିନ୍ନରୀମାନେ ଗାଉଥିଲେ ଗୀତ
ପିକ କଣ୍ଠୀ କଣ୍ଠଜାତ ସଙ୍ଗୀତ ସୁସ୍ୱନ
ସୃଷ୍ଟିକଲ ନଭଦେଶେ ଅପୂର୍ବ ଗୁଞ୍ଜନ
ଅସୁର ରାଜ ତାରକ ପାଳିତ ସଇନେ
ବିମଣ୍ଡିତ ଥିଲେ ବହୁ ଅମର ସୁମନେ
ବିଦ୍ୟୁତ ଝଟକପରି ବହୁ ନିଶାଚର
ବାଦ୍ୟନାଦେ କଲେ ସ୍ୱର୍ଗପୁରକୁ ମୁଖର
ସର୍ବେ ଯାଇ ତାରକାକୁ କଲେ ଦରଶନ
ପୂର୍ବୁ ଯା ନିବାସ ଥିଲା ଇନ୍ଦ୍ରଙ୍କ ଭୁବନ
ସେନାଙ୍କୁ ଦେଖି ସମ୍ମୁଖେ ଚିତ୍ତ କରି ଶାନ୍ତ
ବିଚାରିଲା ମନେ ମନେ ଦୁରାତ୍ମ ଦଇତ
ବଳକର ହୋଇଅଛି କିଏ ସେ ତ୍ରିପୁରେ
ମୋହର ଏହି ସେନାଙ୍କୁ ଜିଣିବ ସମରେ
ଏହି ଚିନ୍ତା ଯେତେବେଳେ ଦୈତ୍ୟ କରୁଥିଲା
ବାହାରର ରୁଦ୍ଧବାଣୀ ତା କର୍ଣ୍ଣେ ବାଜିଲା
ଗାଉଥିଲେ ଉଚ୍ଚେ ସୁର ମାଗଧ ନିକର
ଅତି ଉଚ୍ଚେ ସ୍କନ୍ଦ ଗୁଣ ହୋଇ ହର୍ଷଭର
ମନେ ପଡ଼ିଗଲା ତାର ତେବେ ସେହି କଥା
ଯେଉଁବର ଦେଇଥିଲେ ତାକୁ ଚଉମଥା
ବିଧିଙ୍କୁ ସେ ସେତେବେଳେ ମାଗିଥିଲାବର
ସାତଦିନ ଶିଶୁହାତେ ମୃତ୍ୟୁ ହେବ ମୋର
ଧରମ ବିଧ୍ୱଂସୀ ସଦା ପରଙ୍କ ପୀଡ଼କ
ବହୁତ ବିଚାରକଲା ଅସୁର ନାୟକ
ଭାବି ଭାବି ତାହା ପରେ ଶୋକଗ୍ରସ୍ତ ହେଲା
ଦମ୍ଭଧରି ହୃଦେ ପୁଣି ସୈନ୍ୟ ସଙ୍ଗେ କଲା
ହିରଣ୍ୟ କଶିପୁ ପାଶେ ମିଳିଲା ସେ କ୍ଷଣି
ଦାନବ ବୀରଙ୍କ ମଧ୍ୟେ ଯେ ଅଟେ ଅଗ୍ରଣୀ
କହିଲା ତାରକ ତାକୁ ଶୁଣ ଆହେ ବୀର
ଯୁଦ୍ଧଛାଡ଼ିଗଲେ ଲଜ୍ଜା ରକ୍ଷେ ହେବ ଘୋର
ବାଳକକୁ ମାରିବାକୁ ଯେବେ ମୁହିଁ ଯିବି
ତେବେ ମଧ୍ୟ ଜାଣେ ବହୁ ନିନ୍ଦାଭାଗୀ ହେବି
ନ ମାଇଲେ ଏ ବାଳକେ ହୋଇବି ଅଯଶ
ଏଣୁ ଯଦି ନ ମାରିବି ସେ ଜୟୀ ଅବଶ୍ୟ ।

ତେଣୁ ସର୍ବେ ଆସି ସୁର ସଇନଙ୍କୁ ମାର
ଯେଉଁଠି ପାଇବ ଯାକୁ ତହିଁ ବନ୍ଦୀକର
ସଜକରି ସୈନ୍ୟ ଏବେ ଆସ ଏହିକ୍ଷଣି
ସୁରଙ୍କ ସହ ବାଳକେ ପକାଇବା ହାଣି
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ସ୍କନ୍ଦଙ୍କୁ ଭେଟିଲା ଯୁଦ୍ଧେ ଅସୁର ରାଜନ
ଭୀଷଣ କୃତି ସେ ରକ୍ଷ କହେ ଗୁହେ ଚାହିଁ
ମୋ ସଙ୍ଗେ ଯୁଝିବ ପାଇଁ ଆସିଛୁ ତୁ ଧାଇଁ
ଦେଖୁଅଛି ଅଟୁ ତୁହି ଅତି ଛୋଟ ପିଲା
ଏହି ବୁଦ୍ଧି କହ ତୋତେ କିଏ ଶିଖାଇଲା
ଯୁଦ୍ଧକୁ କନ୍ଦକ ଖେଳ ବିଚାରି ବାଳକ
ଆସିଛୁ ଜାଣିଥା ଅସ୍ତ୍ର ନୁହେ କ୍ରୀଡ଼ନକ
ଅଳପ ବୁଦ୍ଧି ତୋହର ଜାଣୁଅଛି ମୁହିଁ
ନୋହିଲେ ଯୁଦ୍ଧକୁକିପାଁ ଆସିଥାନ୍ତୁ ଧାଇଁ
ଶୁଣି ତାହା ହର୍ଷଯୁକ୍ତ ହୋଇଣ କୁମାର
କହିଲେ ଉଚ୍ଚରେ ଶୁଣ ରାକ୍ଷସପାମର
ଶାସ୍ତ୍ର ଅର୍ଥେ କରିବାର ଏ ନୁହେଁ ସମୟ
ବୀର ଯେହୁ ସଂଗ୍ରାମକୁ ନକରେ ସେ ଭୟ
ରେ କୌପଣ ଜାଣେ ମୁହିଁ ଏ ସଂଗ୍ରାମ ଭୂଇଁ
ବୀର ଯେ ତାହର ଭୟ ନ ରହଇ ତହିଁ
ଶିଶୁ ବୋଲି ମନେ ମୋତେ ନଭାବ ଅସୁର
ଭାବି ଏହି ଶିଶୁ କାଳ ଭୁଜଙ୍ଗମ ତୋର
ମନ୍ତ୍ରର ଅକ୍ଷର ଅଳ୍ପ ମାତ୍ରା ତା ସାଧନେ
ସାଧିତ ହୁଅଇ କାର୍ଯ୍ୟ ଅତି ଅଳ୍ପଦିନେ
କହନ୍ତେ ଏପରି ସ୍କନ୍ଦ ଅସୁର ଈଶ୍ୱର
କୁମର ଅଙ୍ଗରେ କଲା ମୁଦ୍‌ଗର ପ୍ରହାର
ଦେଖି ତାହା ତେଜଦୀପ୍ତ ଚକ୍ରଧରି କରେ
ଷଡ଼ାନନ କାଟିଲେ ତା ଅଳ୍ପ ଆୟାସରେ
ସନ୍ଧିଲା ଅସୁର ଯୁଦ୍ଧେ ଅସ୍ତ୍ର ଭିନ୍ଦିପାଳ
କାର୍ତ୍ତିକ ଧରି ତାକରେ ନେଲେ କରିକୋଳ
ଗର୍ଜନ କରିଣ ପରେ ଉଠିଣ କୁମାର
କ୍ରୋଧରେ ଦୈତ୍ୟକୁ କଲେ ଗଦାରେ ପ୍ରହାର
ଗଦାଘାତ ଲଭି ଦୈତ୍ୟ ଅଚଳ ପରାଏ
ଶୁଣ ଗାଙ୍ଗେୟ କମ୍ପିତ ହେଲା ଅତିଶୟେ
ଗଦାଘାତ ପରେ ଦୁଷ୍ଟ ତାରକ ଅସୁର
ବିଚାରିଣ ଶିଶୁ ଅଟେ ସାମାନ୍ୟ ବାଳକ
ଖଟାଇ ବୁଦ୍ଧି ବୁଝିଲା ସନ୍ଦେହ ନଥାଇ
ଆସିଛି ମୋ କାଳ ଏହି ବାଳକ ନୁହଇ
ଦମ୍ଭଧରି ଦୈତ୍ୟ ପରେ ବିନ୍ଧିଲା ମାର୍ଗଣ
ସେ ଘାତେ ପୀଡ଼ିତ ଅତି ହେଲେ ସୁରଗଣ
ଦୈତ୍ୟ ଶରେ ଦେବତାଙ୍କୁ ଦେଖିଣ ବ୍ୟଥିତ
ଦେବ ସେନାପତି ଗୁହ ହୋଇଲେ କୁପିତ
ଦିବ୍ୟାସ୍ତ୍ର ପ୍ରହାରି କଲେ ଦୈତ୍ୟବଳ କ୍ଷୟ
ସେ ଘାତେ ଅସୁରେ ହେଲେ ଅତ୍ୟନ୍ତ ଅଥୟ
ସୁରାରି ପ୍ରହାର କରୁଥିଲା ଯେତେ ଶର
ସ୍ପର୍ଶ କରୁନଥିଲା ତା କାର୍ତ୍ତୀକ ଶରୀର
କୁମାର ଜାନୁରେ ତେବେ ରକ୍ଷକୁଳ ସାଇଁ
କରେ ଗଦା ବର ଧରି କ୍ରୋଧେ ଗଲାଧାଇଁ
ଦେଖି ତାହା କାର୍ତ୍ତୀକେୟ ରଘୁଶର ମାରି
ପଡ଼ିବା ଆଗରୁ ଦେଲେ ଖଣ୍ଡ ଖଣ୍ଡ କରି
ଛିଡ଼ି ପଡ଼ିବା ପରାଯେ ସୁନା ଅଳଂକାର
ଭାଙ୍ଗି ପଡ଼ିଗଲା ତଳେ ସେହି ଗଦାବର
ବାହନ ସୁବର୍ଣ୍ଣ କେକୀ କାର୍ତ୍ତୀକେୟଙ୍କର
ଘାଉଆ ସେ ହେଲା ଲଭି ଅସୁରର ଶର
ମୟୁର ଦେହରୁ ହେଲା ଶୋଣିତ କ୍ଷରଣ
ସ୍ୱ ଚକ୍ଷୁରେ ଦେଖି ସ୍କନ୍ଦ ତାର ସେ କଷଣ
ମହତ ଶକତି ତେଣୁ ହାତରେ ଧଇଲେ
ତାରକକୁ ଚାହିଁ ତେବେ ଏପରି କହିଲେ
ଆରେ ଦୁଷ୍ଟ ଅଳ୍ପକ୍ଷଣ ରହ ମୋ ଆଗରେ
ଏହିକ୍ଷଣି ପଠାଇବି ତୋତେ ଯମପୁରେ
ନିଶ୍ଚୟ ମରିବୁ ପାଇ ଏହି ଶକ୍ତି ଘାତ
ଇଷ୍ଟକୁ ସ୍ମରଣ ଏବେ କରରେ ଦଇତ
ଏପରି କହିଁଣ ଦୈତ୍ୟେ ପ୍ରଭୁ ଶକ୍ତିଧର
ଉଦ୍ଦେଶି ଅସୁରେ କଲେ ଶକତି ପ୍ରହାର
ସୁବର୍ଣ୍ଣେ ମଣ୍ଡିତ ଶକ୍ତି ଗୁହ କରୁଗଲା
ବଜ୍ରଠାରୁ ବଳି ଭୀମ ଧ୍ୱନୀ ଜାତକଲା
ପର୍ବତ ପରାଯେ ଟାଣ ଦୈତ୍ୟ ହୃଦୟରେ
ଭେଦି ତାକୁ ପଠାଇଲା ଶମନ ନଗରେ
ପ୍ରଳୟ କାଳ ପର୍ବତ ପରି ଦୈତ୍ୟ ଦେହ
ଆଶ୍ରେକଲା ଧରା ଶୁଣ ଶାନ୍ତନୁ ତନୟ

ସମୁକୂଟ ଭୂଷା ଯେତେ ତା ମଥାରେ ଥିଲା
ଜଣାଗଲା ପୃଥ୍ୱୀଦେବୀ ହୋଇଣ ହର୍ଷିତ
ନିଜକୁ ସ୍ୱର୍ଣ୍ଣାଳଙ୍କାରେ କରନ୍ତି ମଣ୍ଡିତ
ସେନା ମଧ୍ୟେ ଧୁରନ୍ଧର ରକ୍ଷ ଯେତେଥିଲେ
ତାରକ ମରଣ ଦେଖି ଅତି ଦୁଃଖୀ ହେଲେ
ନରକକୁଣ୍ଡେ ପତିତ ପାପୀଙ୍କ ପରାୟେ
ନୃପ ମୃତ୍ୟୁରେ ସଂତସ୍ଥ ହେଲେ ଅତିଶୟେ
ତାରକ ମରନ୍ତେ ସୁରେ ହୋଇ ସୁପ୍ରସନ୍ନ
ଯୋଡ଼କର ହୋଇ କଲେ ସ୍କନ୍ଦଙ୍କୁ ସ୍ତବନ
ଆନନ୍ଦ ହୋଇ ନାଚିଲେ ଆଉ କେତେସୁର
ଦେଖି ତାରକାସୁରର ମୃତ କଳେବର
କ୍ଷଣ୍ମୁଖ କର୍ମରେ ଦେବେ ହୋଇ ସୁପ୍ରସନ୍ନ
ନମାଗିଲେ ହେଲେ ମୋଦେ କଲେବରଦାନ
ସିଦ୍ଧ ସାଧକ ତପସ୍ୱୀ ହୋଇଲେ ସଂତୋଷ
ପୂରଣ ହୋଇବା ଦେଖି ତାହାଙ୍କ ଇପ୍‌ସିତ
କହିଲେ ଜଗତେ ଯେହୁ ସ୍କନ୍ଦଙ୍କୁ ସ୍ମରିବ
ତାରକବଧ ଚରିତ ହରଷେ ଶୁଣିବ
ପଢ଼ି ଶୁଣାଇଲେ ଶ୍ରୋତାଗଣଙ୍କୁ ଆବର
କୀର୍ତ୍ତୀ ତାରଜଗତରେ ହୋଇବ ଅମର
ଆବର ସେ ଦୀର୍ଘଜୀବି ହେବ ଜଗତରେ
ଶୋଭିତ ହୋଇବା ସଦା ସବୁ ସୌଭାଗ୍ୟରେ
ଅମଙ୍ଗଳ ବୋଲି ତାର କେବେ ନ ହୋଇବ
କେବେ କାହାଠାରୁ କିଛି ଭୟ ନପାଇବ
ସ୍କନ୍ଦଙ୍କ ଚରିତ ଅଟେ ଅତି ପୁଣ୍ୟମୟ
ଶୁଣିବ ଏହା ଯେ ଲୋକ ହୋଇଣ ତନ୍ମୟ
ଅଥବା ଅନ୍ୟକୁ ଯେବେ ପଢ଼ି ଶୁଣାଇବ
କଥିତ ସମସ୍ତ ଫଳ ଅବଶ୍ୟ ଲଭିବ
ତ୍ରିସନ୍ଧ୍ୟାରେ କ୍ଷଣ୍ମୁଖଙ୍କୁ କରି ଉପାସନା
ଏ ସ୍ତୋତ୍ର ଶୁଣି ଯେ ତାଙ୍କୁ କରିବ ବନ୍ଦନା
ଧନ ଧାନ୍ୟେ ପରିପୂର୍ଣ୍ଣ ହୋଇବ ସେ ନର
ଧନାଢ଼୍ୟ ପଣେ ତାହାଙ୍କୁ ହାରିବେ କୁବେର
ଶେଷହେଲା ଏହିଠାରେ କାର୍ତ୍ତୀକ ବିଜୟ
ଆହେ ସୀତାପତି ହୋଇ ମୋଠାରେ ସଦୟ
ନିଶି ଦିବସରେ ପ୍ରଭୁ ରାଜ ମୋହୃଦରେ
ଗୋପିନାଥ ମାଗେ ଭିକ୍ଷା ତୁମ୍ଭ ଶ୍ରୀ ପୟରେ

ଇତି ଶ୍ରୀପଦ୍ମପୁରାଣ ସୃଷ୍ଟିଖଣ୍ଡେ
ପୁଲସ୍ତ୍ୟ ଭୀଷ୍ମ ସମ୍ବାଦେ କାର୍ତ୍ତିକ
ଜନ୍ମ ତଥା ବିଜୟ ବର୍ଣ୍ଣନେ ନାମ
ବିଂଶୋଅଧ୍ୟାୟଃ

❑

## ଏକବିଂଶ ଅଧ୍ୟାୟ

### ନୃସିଂହାବତାର ବର୍ଣ୍ଣନ

କହିଲେ ଶାନ୍ତନୁ ସୁତ କରି ନମସ୍କାର
କୃତାର୍ଥ ହେଲି ମୁଁ ଶୁଣି ଚରିତ ସୁନ୍ଦର
ହିରଣ୍ୟ କଶିପୁ ବଧ ହେଲା କେଉଁପରି
ଶୁଣିବି କହନ୍ତୁ ଋଷି ବାରେ ଦୟାକରି
ଶ୍ରୀ ନରସିଂହ ମହାତ୍ମ୍ୟ ପାପ ବିନାଶକ
ଶୁଣିବାକୁ ଇଚ୍ଛା ଅଛି ହେ ମୁନି ତିଳକ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
କୃତ ଯୁଗ କଥା ଏହା ଅତି ପୁରାତନ
ହିରଣ୍ୟ କଶିପୁ ନାମ ପ୍ରଭୁ ରକ୍ଷଙ୍କର
କାନନକୁ ଯାଇ ତପ ଆଚରିଲା ଘୋର
ଏଗାର ହଜାର ବର୍ଷ ଘୋର ତପକଲା
ଜଳମଧ୍ୟେ ରହି ମୌନବ୍ରତ ଆଚରିଲା
ଶମ ଦମ ଆଦି ବ୍ରତ କଲା ସେ ଧାରଣ
ବ୍ରହ୍ମଚର୍ଯ୍ୟ ରକ୍ଷାରେ ତା ଥାଏ ଅତି ଧ୍ୟାନ
କଠୋର ତା ତପସ୍ୟାରେ ଅତି ତୋଷହୋଇ
ସ୍ୱୟଂ ବିଧାତା ସେ ସ୍ଥାନେ ପ୍ରବେଶିଲେ ଯାଇ
ସ୍ୱୟଂପ୍ରଭୁ ବସିଥିଲେ ଯେଉଁ ବିମାନରେ
ନିନ୍ଦୁଥିଲା ତାହା ଶତ ସୂର୍ଯ୍ୟଙ୍କୁ ତେଜରେ
ଶୁଭ୍ର ମରାଳ ମାନଙ୍କେ ସେ ଥିଲା ବାହିତ
କହିଲେ ଦୈତ୍ୟକୁ ଡାକି ତେବେ ଚଉମାଥ
ଯାହା ଇଚ୍ଛା ଅଛି ଭଦ୍ର ମାଗିନିଅ ବର
ସନ୍ତୋଷ ହୋଇଛି ଦେଖି ତୋର ତପଘୋର
ଯେପରି ତୋ ଇଚ୍ଛାହେବ ମାଗ ସେହିପରି
ବିଚାରି କହତେ ଶୁଭ ହୋଇବ ଯେପରି
ବ୍ରହ୍ମାଙ୍କ ଶ୍ରୀମୁଖ ବାଣୀ ଶୁଣି ସେ ଅସୁର
କହିଲା ହେ ପ୍ରଭୁ ଯେବେ ଦେବ ମୋତେ ବର
ସୁର ନର ଯକ୍ଷ ରକ୍ଷ ଉରଗ କିନ୍ନର
ଗନ୍ଧର୍ବ ପିଶାଚ କରେ ମୃତ୍ୟୁ ନୋହୁ ମୋର

ମୁନୀ ଋଷି ଦ୍ୱିଜ ଶାପ ମୋତେ ନ ବାଧିବ
ଯଦ୍ୟପି ମୋଠାରେ ପ୍ରୀତି ଏହି ବର ଦେବ
ଅସ୍ତ୍ର ଶସ୍ତ୍ର ପରବତ ପାଦପ ପଥର
ଶୁଖିଲା ଓଦା ଯାହୁଏ ନୟନ ଗୋଚର
ଏଥିରେ ମୋହର ବଧ କଦାପି ନୋହିବ
ବିଚାରି ହେ ପ୍ରଭୁ ମୋତେ ଏହିବର ଦେବ
ସୂର୍ଯ୍ୟଚନ୍ଦ୍ର ବାୟୁ ନଭ ନକ୍ଷତ୍ର ସଲିଳ
ଦିଗ ବିଦିଗ ସହିତେ ଦଶ ଦିଗପାଳ
ହେ ପ୍ରଭୁ ରହିବେ ହୋଇ ମୋହର ଅଧୀନ
ବରୁଣ କୁବେର ଯମ ସଶଚୀରମଣ
ପ୍ରଦାନ କରନ୍ତୁ ପ୍ରଭୁ ମୋତେ ଏହି ବର
ନିବେଦନ କଲି ପ୍ରଭୁ ଏ ଇଚ୍ଛା ମୋହର
ଶୁଣି ହସି ପିତାମହ କହିଲେ କୁମର
ଆନନ୍ଦେ ଦେଲି ତୁ ଏବେ ମାଗିଲୁ ଯେ ବର
କହି ଧାତା ଏହିପରି ଅନ୍ତର୍ଦ୍ଧ୍ୟାନ ହେଲେ
ସିଦ୍ଧ ସେବିତ ବୈରାଜ ନବରକୁ ଗଲେ
ହିରଣ୍ୟ କଶିପୁ ପ୍ରତିଧାତା ହୋଇ ତୋଷ
ଦେଲେ ବର, ତା ଜାଣିଲେ ସମସ୍ତ ତ୍ରିଦଶ
ଜାଣିଲେ ଗନ୍ଧର୍ବ ଋଷି ଚାରଣ ସହିତେ
ଧାତାଙ୍କ ସମୀପେ ସର୍ବେ ଗମିଲେ ତୁରିତେ
ପ୍ରଣାମ କରି କହିଲେ ଆହେ ବେଦବର
ଅସୁରକୁ ଦେଲେ କିପାଁ ଏହିପରି ବର
ବଳକର ହୋଇ ଦୈତ୍ୟ ଆମ୍ଭଙ୍କୁ ମାରିବ
ନିଃସଂଶୟ ଏହାଜାଣ ସାବିତ୍ରୀଙ୍କ ଧବ
ସ୍ୱୟଂପ୍ରଭୁ ତୁମେ ଧାତା ତିନି ଜଗତରେ
ପ୍ରଦାନିଲ ଏହି ବର କିପରି ଅସୁରେ
ଏ କଥା ଅଟଇ ପ୍ରଭୁ ଅତି ଆଚମ୍ବିତ
କୌଣସିମତେ ତା ବଧ ନୋହିବ ସାଧିତ
ତାପ୍ରତି କରୁଣା ଏତେ ଯଦ୍ୟପି ତୁମ୍ଭର
ତଥାପି କରନ୍ତୁ ତାର ମୃତ୍ୟୁର ବିଚାର
ହବ୍ୟ କବ୍ୟ ସ୍ରଷ୍ଟା ତୁମେ ପ୍ରକୃତିରୁ ଭିନ୍ନ
ଅବ୍ୟକ୍ତ ତୁମ୍ଭେ କରନ୍ତୁ ଲୋକଙ୍କ କଲ୍ୟାଣ
ସର୍ବଲୋକ ହିତ ବାକ୍ୟ ଶୁଣି ସୁରଙ୍କର
କହିଲେ ଆଶ୍ୱାସି ତାଙ୍କୁ ସାବିତ୍ରୀଙ୍କ ବର
କର୍ଣ୍ଣ ପ୍ରୀତିକର ସେହି କୋମଳ ବଚନ
ମୋ ବାରତା ତପସ୍ୟାର ଫଳବୋଲି ଜାଣ
ତପଫଳ ଭୋଗପରେ ଶ୍ରୀହରିଙ୍କ କରେ
ମରିବ ଅସୁର ମନେରଖ ସବୁ ସୁରେ
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ବ୍ରହ୍ମାଙ୍କ ମୁଖରୁ ସୁରେ ଶୁଣି ସେ ବଚନ
ପରମ ପ୍ରସନ୍ନ ହୋଇ ନମି ଧାତା ପାଦେ
ଯେ ଯାହାର ବାସେ ଗଲେ ମୋଦଧରିହୃଦେ
ତଦପରେ ବ୍ରହ୍ମ ବରେ ଦୁରାତ୍ମା ରାକ୍ଷସ
ତ୍ରିପୁର ବିଜୟ ପାଇଁ କରି ଅଭିଳାଷ
ମନେ ଗର୍ବଧରି ଦେଲା ପ୍ରାଣୀଙ୍କୁ କଷଣ
ତା ଯୋଗୁଁ ସହିଲେ ବହୁ କଷ୍ଟ ଋଷିଗଣ
ବ୍ରତ ନିୟମ ତପସ୍ୟା ସବୁ ଭ୍ରଷ୍ଟହେଲା
ସତ୍ୟଧର୍ମ ବୋଲି ବିଶ୍ୱେ କିଛି ନରହିଲା
ଦୈତ୍ୟଙ୍କ ଦମନ ନୀତି ହୋଇଲା କଠୋର
ତା ଫଳେ ଲଭିଲେ ସର୍ବେ କଷଣ ଅପାର
ମାଇଲେ ବିପ୍ରଙ୍କୁ ରକ୍ଷେ ଯେଉଁଠି ଦେଖିଣ
ଋଷିଙ୍କର ଆଶ୍ରମକୁ ଭାଙ୍ଗି ଫିଙ୍ଗି ଦେଲେ
ସୁରଙ୍କ ସହ ତ୍ରିପୁରେ କରି ପରାଜିତ
ହିରଣ୍ୟ କଶିପୁ ବଳେ କଲା ପଦାନତ
ବାସକଲା କ୍ରମେ ଦୈତ୍ୟ ଯାଇ ସୁରପୁରେ
ବ୍ରହ୍ମାବରେ ନ ଆଣିଲା କାହାକୁ ନଜରେ
ବଳପଣେ ମଦମତ୍ତ ହୋଇଣ ରାକ୍ଷସ
ଯଜ୍ଞ ହୋମ ଯହିଁ ହେଲା ସବୁକଲା ନାଶ
ଯଜ୍ଞିକଥା ଭୟେ ଯଜ୍ଞ କରି ନ ପାରିଲେ
ସୁରେ ଯଜ୍ଞ ଭାଗ ହୀନେ ବ୍ୟଥିତ ହୋଇଲେ
ଇନ୍ଦ୍ର ଆଦି ଦେବଗଣ ସହିତ ଶଙ୍କର
ବସୁ ଯକ୍ଷ ଦେବଦ୍ୱିଜ ତପସ୍ୱୀ ନିକର
ସିଦ୍ଧସାଧ୍ୟ ଆଦି ସର୍ବେ ତ୍ରାହି ତ୍ରାହି କହି
ଗଲେ ଯହିଁ ରହିଥିଲେ କମଳାଙ୍କ ସାଇଁ
ଦେବଦେବ ଯଜ୍ଞମୟ ପ୍ରଭୁ ବାସୁଦେବ
ନାରାୟଣ ସନାତନ ବିଶ୍ୱର ବାନ୍ଧବ
ପ୍ରଣମିଲେ ଯାଇ ସର୍ବେ ତାଙ୍କ ଶ୍ରୀ ଚରଣେ
କହିଲେ ରକ୍ଷ ବୃତାନ୍ତ ଅତି ଦୁଃଖମନେ
କହିଲେ ପରମ ଦେବ ଆପଣ ଆମ୍ଭର
ତୁମ୍ଭେ ପ୍ରଭୁ ଅଟ ଆମ୍ଭ ସୁଖର ମନ୍ଦିର
ପରମ ଗୁରୁ ଆପଣ ଶ୍ରେଷ୍ଠ ଜଗତରେ
ଅଟନ୍ତି ତୁମ କିଙ୍କର ସମସ୍ତ ଅମରେ

ତୁମ୍ଭେ ପ୍ରଭୁ ଅଟ ଆମ୍ଭ ପରମ ମଙ୍ଗଳ
କହିଲେ ତା ଶୁଣି ପରେ ପ୍ରଭୁ ଆଦିମୂଳ
ରହ ଯାଇଣ ଅମରେ ହୋଇ ଭୟହୀନ
ହରିବି ମୁଁ ଏବେ ଯାଇ ତୁମ୍ଭର କଷଣ
ବର ପାଇ କଉଣପ ହୋଇଛି ଗର୍ବିତ
ଉଦ୍ଧତ ହୋଇଣ ପୀଡ଼ ଦେଲାଣି ବହୁତ
ଜାଣିଅଛି ମୁହିଁ ତାହା ଆହେ ସୁରଗଣ
ନିକଟରେ ରଚିବି ମୁଁ ତାହାର ନିଧନ
ସସୈନ୍ୟ ମାରିବି ତାକୁ କରିଣ ସମର
ନିର୍ଭୟ ହୋଇଣ ସୁରେ ଯାଅ ନିଜପୁର
ଅବ୍ୟୟ ଅକ୍ଷୟ ବିଶ୍ୱବ୍ୟାପୀ ଭଗବାନ
ଶ୍ରୀମୁଖ ବାଣୀରେ ସୁରେ ହୋଇ ହୃଷ୍ଟମନ
ମନସୁଖେ ଗଲେ ସର୍ବେ ନିଜନିଜ ପୁର
ଶ୍ରୀହରି ପଦ୍ମ ପୟରେ ନତକରି ଶିର
କହିଲେ ପୁଲସ୍ତ୍ୟ ଶୁଣ ଶାନ୍ତନୁ ନନ୍ଦନ
ଦେବଙ୍କୁ ଅଭୟ ଦେଇ କମଳା ରମଣ
ହିରଣ୍ୟ କଶିପୁ ଯହିଁ ଥିଲା ତହିଁ ଗଲେ
ସଭାକରି ବସିଥିଲା ଦୈତ୍ୟକୁ ଦେଖିଲେ
ଶଶିସୂର୍ଯ୍ୟ ଜିଣି କାନ୍ତି ଲକ୍ଷ୍ମୀପତିଙ୍କର
ଶରୀରରୁ ଅଧେ ସିଂହ ଆଉ ଅଧେ ନର
କରେ କର ଛନ୍ଦି ନରସିଂହ ବପୁଧାରୀ
ଉଭାହେଲେ ସୁବିଶାଳ ଦିବ୍ୟ ବପୁଧରି
ଶୁଭ୍ର କାମଦ ସଭାରେ ଦୈତ୍ୟ ବସିଥିଲା
ନରସିଂହ ବପୁ ତେବେ ତହିଁ ପ୍ରକାଶିଲା
ବିସ୍ତୀର୍ଣ୍ଣ ସେହି ସଭାର ଶତେକ ଯୋଜନ
କାର୍ଯ୍ୟ ଅଟଇ ତାହାର ଅବ୍ୟର୍ଥ ସାଧନ
ଇଚ୍ଛାକଲେ ସେହି ସଭା ଉଠେ ଆକାଶରେ
ପାଞ୍ଚ ଯୋଜନ ପର୍ଯ୍ୟନ୍ତ ଅତି ଅକ୍ଳେଶରେ
ଜରା ଶୋକ କ୍ଷୟହୀନ ସେ ସଭା ଅଟଇ
ଏ ବାଧା ସଭାର ସଭ୍ୟେ କିଛି ନ ବାଧଇ
ଅସୁରର ସଭା ଶୁଭ ମଙ୍ଗଳର ଘର
ହେ ଭୀଷ୍ମ ଏଥିରେ ତିଳେ ସନ୍ଦେହ ନକର
କହିଲେ ପ୍ରହ୍ଲାଦ ତେବେ ଶୁଣ ମହାରାଜ
ଆଜାନୁ ଲମ୍ବିତ ଅଟେ ତୁମ୍ଭ ବେନି ଭୁଜ
ଦୈତ୍ୟଙ୍କର ଆଗୁଁ ଅଟେ ତୁମ୍ଭର ଜନମ
ଆଜିଯାଏଁ କରିନାହଁ ମୋ କାନ ଶ୍ରବଣ
ଅଧେନର ଅଧେ ସିଂହ ବପୁ ଏ ପ୍ରକାର
ଆଜିଯାଏଁ କରିନାହିଁ ମୋ ନେତ୍ର ଗୋଚର
ଭ୍ରମିବ ଯଦ୍ୟପି ଯାଇ ଅଖିଳ ବିଶ୍ୱରେ
ଏ ରୂପ ଆସିବ ନାହିଁ ନୟନ ଗୋଚରେ
ହିରଣ୍ୟ କଶିପୁ ଶୁଣି ପ୍ରହ୍ଲାଦଙ୍କ ବାଣୀ
କହିଲା ତାହାଙ୍କୁ କ୍ରୋଧେ ହୋଇ ଟାଣିଟୁଣି
ଗଣ ଗଣାଧିପସହ ସମସ୍ତ ଅସୁର
ଶୁଣୁଥିଲେ ସେହି କଥା କହେ କୁରୁବୀର
ଅପୂର୍ବ ଦେହଧାରୀ ଏ ମୃଗେନ୍ଦ୍ରକୁ ଧରି
ସର୍ବେ ମିଶି ଏହିକ୍ଷଣି ଆଣ ବାନ୍ଧିକରି
ସେଥିପାଇଁ ଯଦି ତୁମେ ସମର୍ଥ ନୋହିବ
ଅସ୍ତ୍ରରେ ଏକ୍ଷଣି ତାକୁ ପ୍ରାଣେ ମାରିଦେବ
ରାଜାର ଶ୍ରୀମୁଖ ବାଣୀ ଶୁଣି ରକ୍ଷଗଣ
ଭୀମ ବେଗରେ ତାହାକୁ କଲେ ଆକ୍ରମଣ
ପ୍ରହାରିଲେ ବହୁ ଅସ୍ତ୍ର ମୃଗେନ୍ଦ୍ର ଅଙ୍ଗରେ
କେହିବା ହାଣିଲା ଯାଇ ଶାଣିତ ଖଡ଼୍‌ଗରେ
ସିଂହ ନାଦ କରି ତେବେ ପ୍ରଭୁ ନରସିଂହ
ସଭାକୁ ଭାଙ୍ଗି ତ୍ରାସିଲେ ମନେ ବହି କୋହ
ନୃସିଂହଙ୍କ ବଳ ଦେଖି ତ୍ରିପୁରର ଲୋକ
କହିଲେ ଏ ହେବେ ରକ୍ଷକୁଳର ଅନ୍ତକ
ସଭାଭଙ୍ଗ ଯେବେ ଦୁଷ୍ଟ ଅସୁର ଦେଖିଲା
ପ୍ରଭୁଙ୍କ ଅଙ୍ଗରେ ଦିବ୍ୟ ଅସ୍ତ୍ର ପ୍ରହାରିଲା
କ୍ରୋଧରେ ମନ୍ଦର ନିନ୍ଦା କଲା ନେତ୍ରତାର
ନୃସିଂହ ଅଙ୍ଗେ ପ୍ରହାର କଲା ବହୁଶର
ଅସ୍ତ୍ରଙ୍କ ମଧ୍ୟରେ ଶ୍ରେଷ୍ଠ ଅସ୍ତ୍ର ଯେଉଁ ଦଣ୍ଡ
ପ୍ରହାରିଲା ରକ୍ଷ କ୍ରୋଧେ ହୋଇ ପରଚଣ୍ଡ
କାଳଚକ୍ର ବିଷ୍ଣୁଚକ୍ର ଆଦି ପ୍ରହାରିଲା
ବ୍ରହ୍ମାସ୍ତ୍ର ମଧ୍ୟ କ୍ରୋଧରେ ସନ୍ଧାନ ସେ କଲା
ପ୍ରହାର କଲାତ ପରେ ବିଚିତ୍ର ଅଶନି
ନରସିଂହଙ୍କର ବଧ ମନମଧ୍ୟେ ଗୁଣି
ସେହିକାଳେ ଥିଲେ ଯେତେ ଅସୁର ସଇନ
ତ୍ରସ୍ତ ହୋଇଗଲେ ଦେଖି ନୃସିଂହଙ୍କ ରଣ
ଶରଣ ନେଲେ ହିରଣ୍ୟ କଶିପୁ ପୟରେ
ତ୍ରାହିକର ଆହେ ନୃପଣ କହିଣ ମୁଖରେ
ଅସୁରନୃପତା ଦେଖି ହେଲା ପ୍ରଜ୍ୱଳିତ
ଉଜାଡ଼ିଦେବ ବା ଏବେ ଏହି ତ୍ରିଜଗତ

ତା କ୍ରୋଧରେ ତିନିପୁର ହେଲା ଅନ୍ଧକାର
ଅଣଚାଶ ମୂର୍ତ୍ତିଧରି ବହିଲା ସମୀର
ସାତୋଟି ରୂପ ବାୟୁର ଆବହ ପ୍ରବାହ
ଶବଦ ଉଦ୍‌ବାହ ଭୀଷ୍ମ ପୁଣି ପରାବହ
ସଞ୍ଚରିଲା ନଭଦେଶେ ଏ ସାତ ସମୀର
ଉତ୍ପାତର ଲକ୍ଷଣ ଏ କୁରୁକୁଳ ବୀର
ସର୍ବଲୋକ କ୍ଷୟକାଳେ ହୁଏ ଯେ ଉତ୍ପାତ
ସେକାଳକୁ ଚାହିଁ ସବୁ ହେଲା ସଙ୍ଘଟିତ
ପ୍ରଳୟ କାଳ ହୋଇଲେ ହୁଏ ଏହିପରି
ଗ୍ରହଗଣ ହୋଇଥାନ୍ତି ଗଗନ-ସଞ୍ଚାରୀ
ଅଯୋଗରେ ଦେଖାଦିଏ ନଭେ ନିଶାଚର
ମେଘରୁ ପାଉଁଶ ବର୍ଷା ହୁଅଇ ଅପାର
ଶତ୍ରୁନାଶକାରୀ ଛନ୍ତି ଯେଉଁଗ୍ରହ ପୁଞ୍ଜ
ନକ୍ଷତ୍ର ସଙ୍ଗତେ ଭଜି ଥାଆନ୍ତି ନିସ୍ତେଜ
ରବି ଶଶି ମଧ ତେବେ ଦିଶନ୍ତି ମଳିନ
ନାଶକାଳ ଯେତେବେଳେ ହୁଏ ସମାଗମ
ଧୂଆଁଳିଆ ହୋଇ ରବି ତେଜ ପ୍ରକାଶଇ
କୃଷ୍ଣବର୍ଣ୍ଣର କବନ୍ଧ ନେତ୍ରକୁ ଦିଶଇ
ନଭୋଦେଶେ ଉତପାତ ବହୁ ଦେଖାଦିଏ
ବିଭାବସୁଙ୍କ କିରଣ ଊଣା ହୋଇଯାଏ
ଶତ୍ରୁ ବୃହସ୍ପତି ରହେ ବାମ ଦକ୍ଷିଣରେ
ଶୃଙ୍ଗ-ଗାମୀ ହୁଏ ଶଶି ରହି ଆକାଶରେ
ରକ୍ତବର୍ଣ୍ଣ ଶନିଶ୍ଚର ହୁଏ ହଳଦିଆ
ଦେଖିବା ଲୋକର ଚିତ୍ତ ହୁଅଇ ଛାନିଆ
ଆକାଶଚର ଯେତେକ ଗ୍ରହ ଦେଖାଯାଏ
ସମାଧିରୋହଣ ଗତି ସଭିଙ୍କର ହୁଏ
ଯୁଗାନ୍ତରେ ଗ୍ରହଗଣ ହୁଅନ୍ତି ଏପରି
ଚନ୍ଦ୍ରର କିରଣ ମଧ ଯାଏ ଅପସରି
ବିନାଶ ଚରାଚରର ଯେଉଁ କାଳେ ହୁଏ
ସେ କାଳେ ରୋହିଣୀ ଶଶି ସଙ୍ଗରେ ନରହେ
ଚନ୍ଦ୍ରମା ସେହିକାଳରେ ରାହୁଗ୍ରସ୍ତ ହୋଇ
ଉଲ୍‌କାପିଣ୍ଡ ଶହ ଶହ ପ୍ରକାଶ କରଇ
ପ୍ରଜ୍ୱଳିତ ଉଲ୍‌କାପିଣ୍ଡ ଚନ୍ଦ୍ର ମଣ୍ଡଳରେ
ଆହେ ଭୀଷ୍ମ ସେ ସମୟେ ବିଚରଣକରେ
ଦେବଙ୍କ ଅଧିପ ଦେବ ହୋଇ କ୍ରୋଧଭର
ବୃଷ୍ଟିକରନ୍ତି ଗଗନ ମଣ୍ଡଳୁ ରୁଧିର

ଉତ୍ପାତ ଯେତେପ୍ରକାର ଉପରେ କଥିତ
ତାଠାରୁ ବେଶି ହେଲାହେ ଶାନ୍ତନୁଙ୍କ ସୁତ
ହିରଣ୍ୟକଶିପୁ ନାଶ ସମୟକୁ ହେରି
ସେକାଳେ ଉତ୍ପାତ ସବୁରହିଥିଲେ ଘେରି
ସେ କାଳକୁ ଚାହିଁ ଧରା ହେଲା କମ୍ପମାନ
ଉପୁଡ଼ି ଭୂମି ଭଜିଲା ବହୁ ସାନୁମାନ
ବହୁ ଉରଗ ଆସିଲେ ମୁଖେ ଭରି ବିଷ
ତେଜ ତାଙ୍କ ଦିଶୁଥିଲା ଅନଳ ସଦୃଶ
ଉରଗ ଯେତେକ ଦୃଶ୍ୟ ହେଲେ ସେ କାଳରେ
କେତେ ତହୁଁ ଶୋହୁଥିଲେ ତିନୋଟି ଫଣାରେ
ଆଉ କେତେ ଅହି ଯାର ଫଣା ପଞ୍ଚଗୋଟୀ
ଫଣଥିଲା ଆଉକେତେ ସାପଙ୍କ ସାତୋଟା
ବାସୁକୀ ତକ୍ଷକ କର୍କୋଟକ ଧନଞ୍ଜୟ
ବୀର୍ଯ୍ୟବାନ କଳାମୁଖ ସୁଦାମ କାଳୀୟ
ମହାପଦ୍ମ ହେମ ତଳ ଶେଷ ସପ୍ତଫଣା
ମହାନାଗ ଅନନ୍ତ ଯେ ଶ୍ରେଷ୍ଠେ ଯାଏ ଗଣା
ଯା ଦେହେ ଦେଖା ନ ଯାଏ କଦାପି କମ୍ପନ
ଏକାଳେ ଭୀଷ୍ମ ସେମାନେ ହେଲେ କମ୍ପମାନ
ଜଳ ମଧରେ ବିବରେ ଏ ସମସ୍ତେ ଯାଇ
ଭୟରେ ପଶିଲେ ମାର୍ଗ କେଉଁଠି ନପାଇ
ଦୈତ୍ୟପତି କ୍ରୋଧହେବ ଯେକାଳେ ଜାଣିଲେ
ଚଉଦଭୁବନ ଭୀଷ୍ମ ଭୟରେ ଥରିଲେ
ହିରଣ୍ୟ କଶିପୁ ତେବେ ଧରାକୁ ଚାହିଁଲା
କ୍ରୋଧଭରେ ତା ଉପରେ ପଦଘାତ କଲା
ଆକ୍ରମଣ କଲା ଘୋର ଘନ ନିର୍ଘୋଷରେ
ତାର ଯେତେ ସୈନ୍ୟଥିଲେ ତା ସଙ୍ଗେ ମିଶିଲେ
ନରସିଂହ ଦେହେ ସର୍ବେ କଲେ ଅସ୍ତ୍ରାଘାତ
ରକ୍ଷର ସେ ରୀତି ଜାଣି ଚରାଚର ତାତ
ଭୀଷଣ ମୁରତୀ ନରସିଂହ ଭଗବାନ
ହିରଣ୍ୟ କଶିପୁ କରି କରେ ଆକର୍ଷଣ
ନିଜ ଜାନୁ ପରେ ଦଇତକୁ ପକାଇଲେ
ସୁତୀକ୍ଷ୍ଣ ନଖେ ତା ବୁକୁ ବିଦାରଣ କଲେ
ହିରଣ୍ୟ କଶିପୁ ଯେବେ ପରାଣ ତେଜିଲା
ସବୁ ଉତପାତ ସେତେବେଳେ ଶାନ୍ତହେଲା
ଏ ଅଧ୍ୟାୟ ରବି ଏହି ସୁମମୟ ଜାଣି
ଅତି ଆନନ୍ଦରେ ଯାଇ ଆଶ୍ରିଲେ ବାରୁଣୀ

ଆହେ ଦେବ ସୀତାଧବ ଅଯୋଧ୍ୟା ଈଶ୍ୱର
ରାଜ ମୋର ହୃଦୟରେ ନିଶି ଓ ବାସର
ଏତିକି ମାତର କୃପା ମୋଠାରେ କରିବ
ଜନ୍ମେ ଜନ୍ମେ ତୁମ୍ଭ ନାମ ମୋ ହୃଦେ ରହିବ
ଗୋପୀନାଥ କହେ-ପ୍ରଭୁ କୋଶଳ ଈଶ୍ୱର
ସାମାନ୍ୟ ଏ ଇଚ୍ଛା ପ୍ରଭୁ ମୋର ପୂର୍ଣ୍ଣକର
ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ ପୁଲସ୍ତ୍ୟ
ଭୀଷ୍ମ ସମ୍ବାଦୋନୃସିଂହବତାର ବର୍ଣ୍ଣନୋ
ନାମ ଏକବିଂଶୋଧ୍ୟାୟଃ

❑

## ଦ୍ୱାବିଂଶ ଅଧ୍ୟାୟ

### ବ୍ରାହ୍ମଣ ଲକ୍ଷଣ ଓ ଗାୟତ୍ରୀ ମହିମା

ପଚାରିଲେ ପୁଲସ୍ତ୍ୟଙ୍କୁ ଗଙ୍ଗାଙ୍କ କୁମର
ବ୍ରାହ୍ମଣଙ୍କର ଲକ୍ଷଣ ମହିମା ଆବର
କହନ୍ତୁ ଶୁଣିବି ଅଛି ମୋହର କାମନା
ମୋହପ୍ରତି ସୁପ୍ରସନ୍ନ ହୋଇ ମହାମନା
କହିଲେ ପୁଲସ୍ତ୍ୟ ଶୁଣ ଗଙ୍ଗାଙ୍କ ନନ୍ଦନ
ବ୍ରହ୍ମାଙ୍କୁ ଦିନେ ନାରଦ କଲେ ଏହି ପ୍ରଶ୍ନ
କହିଥିଲେ ସ୍ୱପୁତ୍ରକୁ ପିତାମହ ଯାହା
କହିବି ସେ କଥା ଶୁଣ ମନଦେଇ ତାହା
ନାରଦ ମହର୍ଷି ଦିନେ ବ୍ରହ୍ମାପଶେ ଗଲେ
ପାଦେ ପ୍ରଣିପାତ କରି ତାଙ୍କୁ ପଚାରିଲେ
କହ ପିତା ବ୍ରାହ୍ମଣର ଲକ୍ଷଣ କିପରି
ଆସିଛି ମୁଁ ତାହା ଶୁଣିବାକୁ ଇଚ୍ଛାକରି
ସମ୍ମାନ ପାଏ ବ୍ରାହ୍ମଣ କିପରି ଲୋକରେ
କେଉଁଗୁଣ ଥିଲେ ବିପ୍ରସିଦ୍ଧି ଲାଭକରେ
ଏସବୁ ବିଷୟ ମୋତେ କହନ୍ତୁ ବୁଝାଇ
କହିଲେ ତା ଶୁଣି ତୋଷେ ସାବିତ୍ରୀଙ୍କ ପାଇଁ
ଶ୍ରୋତ୍ରୀୟ ଅଟଇ ପୁତ୍ର ଯେଉଁ ବିପ୍ରବର
ହୋଇଥାଏ ସଦାଚାରେ ରତ ନିରନ୍ତର
ପୁଣି ଚରିତ୍ର ଯାହାର ଭଲ ହୋଇଥାଏ
ତାହାର ଜୀବନେ ପାପ କିଛିହିଁ ନ ରହେ
ତୀର୍ଥଙ୍କ ପରାୟେ ସେହି ଅଟେ ଅତିପୂତ
ଏ ଅଳିକ ଦେହ କିଛି ନମଣ ହେ ସୁତ

କହିଲେ ନାରଦ ତେବେ ଶୁଣହେ ପିଅର
କହ ରୀତି ଉଚ୍ଚକୁଳ ଜାତ କ୍ଷତ୍ରୀୟର
କିଏ ସେ କ୍ଷତ୍ରିୟ ଜନ୍ମଲଭି ନୀଚକୁଳେ
ସମ୍ମାନିତ ହୋଇଅଛି ଏହି ଭୂମଣ୍ଡଳେ
ନାରଦଙ୍କ ଏହି ପ୍ରଶ୍ନେ କମଳ ସମ୍ଭବ
କହିଲେ ଉଚ୍ଚ କୁଳରେ ହେଲେ ହେଁ ଉଦ୍ଭବ
କ୍ରୀୟାହୀନ ଯେବେ ସେହି ନିରନ୍ତର ହୁଏ
କଦାପିସେ ଏଲୋକରେ ସମ୍ମାନ ନପାଏ
ସତ୍‌କର୍ମ ନିରତ ହୋଇ ସୁକ୍ରିୟ ହୋଇଲେ
ପୂଜାପାଏ ନୀଚକ୍ଷେତ୍ରେ ଜନ୍ମିଥିଲେ ହେଲେ
ବ୍ୟାସ ବିଭାଣ୍ଡକ କଥା ଚିତ୍ତେ ଚିନ୍ତାକର
ନୀଚକୁଳେ ଜନ୍ମିହେଲେ ଉଚ୍ଚୁ ଉଚ୍ଚତର
କ୍ଷତ୍ରୀୟ ବଂଶରେ ବିଶ୍ୱାମିତ୍ର ଜନ୍ମହେଲେ
ସତ୍‌କର୍ମ ବଳରେ ପରେ ମହର୍ଷି ହୋଇଲେ
ସୁକ୍ରିୟାରେ ରହି ତପ କରି ଆଚରଣ
ବିଶ୍ୱ-ପୂଜିତ ହୋଇଲେ ଗାଧିଙ୍କ ନନ୍ଦନ
ଜାଣିଛତ ବେଶ୍ୟ ପୁତ୍ର ଅଟନ୍ତି ବଶିଷ୍ଠ
କ୍ରିୟା ତପସ୍ୟାରୁ ହେଲେ ଋଷିକୁଳ ଶ୍ରେଷ୍ଠ
ସେହିପରି ବହୁଲୋକ କ୍ରିୟା ପ୍ରଭାବରେ
ବିପ୍ରରୂପେ ସିଦ୍ଧି ଲଭି ଅଛନ୍ତି ଲୋକରେ
ଜଗତର ସବୁ ପାପ କରଇ ହରଣ
ତୀର୍ଥ ସ୍ୱରୂପ ଯେ ଅଟେ ଉତ୍ତମ ବ୍ରାହ୍ମଣ
ସେପରି ବିପ୍ର ଲକ୍ଷଣ କହିବି ବୁଝାଇ
ଧୀରେ ବସି ସେହିକଥା ଶୁଣ ମନଦେଇ
ବ୍ରାହ୍ମଣ ଘରେ ଜନ୍ମିଲେ କହନ୍ତି ବ୍ରାହ୍ମଣ
ଜଗତ ଜାଣଇ ଏହି ଅଟେ ସେ ଧାରଣ
କିନ୍ତୁ ସେ ବ୍ରାହ୍ମଣ ନୁହେଁ ଜାଣ ହେ କୁମର
ସବିଧିରେ ପରେ ଯେବେ ସେ ହୁଏ ସଂସ୍କାର
ତଦପରେ ପରେ ଯାଇ ବିଦ୍ୟାକରିବ ଅର୍ଜନ
ବିପ୍ରତ୍ୱ ତାହାର ତେବେ ହୁଅଇ ଅର୍ଜନ
ଏ ତିନି ଅବସ୍ଥା ପରେ ଶ୍ରୋତ୍ରୀୟ ବୋଲାଏ
କ୍ଷେତ୍ରଜ, ସଂସ୍କାର ବିଦ୍ୟା ତା କାରଣ ହୁଏ
ହେ ସୁତ ବିଦ୍ୟା ବୋଲିଣ କହିଲି ଯାହାକୁ
ବେଦ ବୋଲି ଧରିନିଅ ହୃଦୟରେ ତାକୁ
ପବିତ୍ର ସେ ହେବ ବିଦ୍ୟା, ମନ୍ତ୍ରରେ ବେଦରେ
ସ୍ନାନ କରିଥିବ ବୁଲି ସମସ୍ତ ତୀର୍ଥରେ

ତାହାକୁ ବିପ୍ର ବିଚାରି କରିବ ପୂଜନ
ଆହେ ସୁତ ଅଟେ ଏହା ସୃଷ୍ଟିର ବିଧାନ
ପୁଣି ଯାର ମତି ସଦାଥାଏ ହରିଠାରେ
ଶୁଦ୍ଧ ହୋଇଥାଏ ଯେହୁ ଅନ୍ତଃକରଣରେ
ନିଗ୍ରହ ଇନ୍ଦ୍ରିୟଙ୍କର ଯତ୍ନେ କରିଥାଏ
ହୃଦୟରେ କ୍ରୋଧ ବୋଲି କିଛିହିଁ ନଥାଏ
ବ୍ରହ୍ମଠାରୁ କୀଟ ଯାଏ ସର୍ବେ ଦେଖ ସମ
ବଚନରେ ମୋହୁଥାଏ ସମସ୍ତଙ୍କ ମନ
ପୂଜ୍ୟ ଅଟଇ ଏପରି ଲୋକ ଜଗତରେ
ଗଣାହୁଏ ମଧ ସେହି ଶ୍ରେଷ୍ଠ ବ୍ରାହ୍ମଣରେ
ପୂଜା କରୁଥିବ ଗୁରୁ ଚରଣ କମଳ
ଦେବତାଙ୍କଠାରେ ଭକ୍ତି ଯାହାର ଅଟଳ
ସେହି ବିପ୍ର ପୂଜା ତାକୁ ନିଶ୍ଚୟ କରିବ
ହେ ସୁତ ଏକଥା ଭଲେ ମନେରଖିଥିବ
ସେବା ସୁଶ୍ରୁଷା କରିବ ପିତୃ ମାନଙ୍କର
ସ୍ଥାନ ନଦେବ ମନରେ ସ୍ତିରୀଙ୍କୁ ଅନ୍ୟର
ଅତିଥି ସତ୍କାର ସଦା ଯେହୁ କରୁଥାଏ
ସେହି ବିପ୍ରଜାଣ ସବୁଠାରେ ପୂଜାପାଏ
କାମ କ୍ରୋଧ ଦୋଷୁ ଯେହୁ ହୋଇଥାଏ ମୁକ୍ତ
ରଖିଥାଏ ଇନ୍ଦ୍ରିୟଙ୍କୁ ସ୍ୱବଶେ ନିରତ
ଘରକୁ ଆସିଲେ ମଧ ପରନାରୀ ପ୍ରତି
ହୃଦୟରେ ମଧ ରଖେନାହିଁ ପାପ ମତି
ସେହି ଲୋକ ଅତିପୂଜ୍ୟ ଅଟେ ଜଗତରେ
ଶୁଣ ହେ କୁମର ଶଙ୍କା ନଧରି ମତିରେ
କହିଲେ ବ୍ରହ୍ମା ନାରଦେ ଛନ୍ଦ ଗାୟତ୍ରୀର
ଅଟନ୍ତି ସୂର୍ଯ୍ୟ ଦେବତା ଦେବତା ତାଙ୍କର
ବର୍ଣ୍ଣ ସେହି ଗାୟତ୍ରୀଙ୍କ ଶୁକଳ ଅଟଇ
ତାହାଙ୍କ ମୁଖକୁ ଅଗ୍ନିମୁଖ ବୋଲି କହି
ଶୁଣ ସୁତ ବିଶ୍ୱାମିତ୍ର ଋଷି ତାହାଙ୍କର
ଆବାସ ତାଙ୍କର ଅଟେ ବ୍ରହ୍ମାଙ୍କର ଶିର
ହରଙ୍କର ହୃଦୟରେ ସଦା ତାଙ୍କ ସ୍ଥିତି
ପ୍ରବର ଗୋତ୍ର କୌଣ୍ଡନ୍ୟ ସଂଖ୍ୟାୟନ ଯତି
ନିଯୋଗ ଅଟଇ ଉପନୟନ ତାଙ୍କର
ତ୍ରିଲୋକ ଅଟଇ ଜାଣ ପାଦ ତାହାଙ୍କର
ପୃଥିବୀ ତାଙ୍କ ଉଦର ପାଦୁ ଶିର ଯାଏ
ଚିବିଶିଟି ସ୍ଥାନ ବୋଲି ବେଦ କହୁଥାଏ

ଚବିଶି ଅକ୍ଷର ନ୍ୟାସ କଲେ ସେ ସ୍ଥାନରେ
ଚତୁର୍ଦଶାକ୍ଷରୀ ହୁଏ ସେ ଲୋକ ମୁଖରେ
ଚବିଶି ଅକ୍ଷର ନ୍ୟାସ ଯେ ବିପ୍ର କରିବ
ନିଃସଂଶୟ ଏହାବ୍ରହ୍ମ ଲୋକ ସେ ଲଭିବ
ଦେବ ଭାବନା ରଖିବ ପ୍ରତ୍ୟେକ ଅକ୍ଷରେ
ସଂଶୟ ନଥିବତେବେ ବ୍ରହ୍ମତ୍ୱ ଲାଭରେ
ଅନ୍ୟ ଗାୟତ୍ରୀ ରୂପ ଯେ ହୋଇଛି କଥିତ
କହେ ସୁତ ଶୁଣ ତାହା ଭଲେ ଦେଇ ଚିତ୍ତ
ଯଜୁ ଅଷ୍ଟଦଶ ବ୍ରହ୍ମ ଦ୍ୱାଦଶ ଅକ୍ଷର
ଅଗ୍ନି ବୀଜ ସହ ଶେଷେ ରଖିଣ ହକାର
ଜଳମଧ୍ୟେ ରହି ନିତି ଶତ ପରିମାଣ
ମନ୍ତ୍ରକଲେ ଜପ ପାପ ହୁଅଇ ମୋଚନ
ପାପ ଉପପତକ ଯାଏ କୋଟିଏ ଜନ୍ମର
ନାଶ ହୋଇ ବ୍ରହ୍ମପଦ ଲାଭହୁଏ ତାର
ବ୍ରହ୍ମହତ୍ୟା ଆଦି ମହା ପାପ ଅଛି ଯେତେ
ତହୁଁ ମୁକ୍ତ ହୋଇ ଶୋଷେଲାଭକରେ ମୋତେ
କହିଲେ ବ୍ରହ୍ମା ମନ୍ତ୍ରର ସ୍ୱରୂପଟି ଏହା
"ଓଁ ଅଗ୍ନିବାକ୍ୟଯୁନୁ-ଷ୍ଟ ସୋମପିଚସ୍ୱହା"
ଜପିବ ଏହି ଗାୟତ୍ରୀ ପ୍ରାଣାୟାମ ପରେ
ଅକ୍ଷର ଅଙ୍ଗରେ ନ୍ୟାସ କରି ଯଥାର୍ଥରେ
ପ୍ରତ୍ୟହ ଏ ମନ୍ତ୍ର ଜପ ଯେ ଜନ କରଇ
ନାଶି ପାପ ବ୍ରହ୍ମଲୋକ ନିଶ୍ଚେ ସେ ଲଭଇ
ଯେଉଁଧାମ ଅଟେ ସୁତ ପ୍ରକୃତିରୁ ପର
ସେହି ଧାମ ଶେଷେ ଲାଭ ହୁଅଇ ତାହାର
କହିଲେ ନାରଦ ତେବେ ହର୍ଷଭର ହୋଇ
ପ୍ରାଣାୟାମ ରୀତି ପିତ କହନ୍ତୁ ବତାଇ
ଦେବତା ଅଟନ୍ତି କିଏ ପ୍ରତ୍ୟେକ ବର୍ଣ୍ଣର
ତାହା ମଧ କହ ଯେଣୁ ସୁତ ମୁଁ ତୁମ୍ଭର
ସର୍ବାଙ୍ଗ ନ୍ୟାସ ତାହାର ହୋଇବ କିପରି
ସୈନ୍ୟ ସର ଫଳ ମଧ କହିବ ବିଚାରି
ନାରଦଙ୍କଠାରୁ ବ୍ରହ୍ମା ଶୁଣି ଏ ବଚନ
କହିଲେ ମନ୍ତ୍ରର ନ୍ୟାସ କରିଣ ବର୍ଣ୍ଣନ
ଅପାନ ବାୟୁର ସ୍ଥାନ ଅଟେ ଗୁହ୍ୟଦ୍ୱାର
ମାନବ ହୃଦରେ ସ୍ଥାନ ପ୍ରାଣ ପବନର
ବିଜ୍ଞାନର ଗୁଦେ ତେଣୁ କରି ସଂକୁଚିତ
ଅପାନ ବାୟୁକୁ ପ୍ରାଣେ କରିବ ଯୋଜିତ

ହୋଇଅଛି ଖ୍ୟାତ ଏହା କୁମ୍ଭକ ରୂପରେ
କରିବ ବସି ଆସନେ ଚିତ୍ତ ଶୁଦ୍ଧିପରେ
ପୂରକ ଅଟଇ ପ୍ରାଣ ବାୟୁର କର୍ଷଣ
ସଯତ୍ନେ କରିବ ପୁଣି ତାର ନିରୋଧନ
କ୍ରମେ କ୍ରମେ ତଦପରେ ଛାଡ଼ିଲେ ପବନ
ଶୁଣହେ ସୁତ ରେଚକ ଅଟେ ତାରନାମ
ପ୍ରାଣାୟାମ ତିନିବାର ଏପରି କରିବ
ମନ ସ୍ଥିର କରି ମନ୍ତ୍ର ଗାୟତ୍ରୀ ଜପିବ
ବିପ୍ର ହୋଇ ଯେବେ ଏହା କରି ନ ପାରିବ
ମହାପାପୀ ରୂପେ ସେହି ଭବେ ଗଣା ହେବ
ପ୍ରାଣାୟାମରେ ଗାୟତ୍ରୀ କଲେ ଉଚ୍ଚାରଣ
ସମସ୍ତ ପାପ ତାହାର ହୁଅଇ ଖଣ୍ଡନ
ପ୍ରତିବର୍ଣ୍ଣ ସ୍ୱର ଜାଣି ଯେ ଜ୍ଞାନୀ ମାନବ
ନିଜର ଅଙ୍ଗରେ ତାହା ବିନ୍ୟାସ କରିବ
ନିଶ୍ଚୟରେ ବ୍ରହ୍ମରୂପ ହୁଅଇ ତାହାର
ପୂର୍ଣ୍ଣ ହୁଅଇ ସମସ୍ତ କାମନା ଆବର
ପ୍ରତ୍ୟେକ ବର୍ଣ୍ଣ ଦେବତା ମନ୍ତ୍ର ଗାୟତ୍ରୀରେ
ଯେ ଅଛନ୍ତି ଶୁଣ ତାହା ସୁସ୍ଥିର ଚିତ୍ତରେ
ବିପ୍ରର ହେଲେ ଏ ଜ୍ଞାନ ନିଶ୍ଚେ ମୁକ୍ତି ପାଏ
ମାତୃସ୍ତନ ପୁଣି କେବେ ତା ମୁଖେ ନ ଯାଏ
ଦେବତା ଅଗ୍ନି ଗାୟତ୍ରୀ ପ୍ରଥମ ବର୍ଣ୍ଣର
ମରୁତ ଦେବତା ତଥା ବର୍ଣ୍ଣ ଦ୍ୱିତୀୟର
ତୃତୀୟ ଚତୁର୍ଥ ଯେଉଁ ଦୁଇଟି ଅକ୍ଷର
ଦେବ ଦିବାକର ଜାଣ ଦେବତା ତାଙ୍କର
ପଞ୍ଚମ ବର୍ଣ୍ଣ ଦେବତା ସଞ୍ଜୀବନି-ପତି
ଷଷ୍ଠାକ୍ଷରର ଦେବତା ବରୁଣ ଅଟନ୍ତି
ସପ୍ତମବର୍ଣ୍ଣ ଦେବତା ଗୁରୁ ଦେବଙ୍କର
ପର୍ଜନ୍ୟ ଅଟନ୍ତି ଦେବ ବର୍ଣ୍ଣ ଅଷ୍ଟମର
ନବମ ବର୍ଣ୍ଣ ଦେବତା ଶଚୀଙ୍କରମଣ
ଦଶମାକ୍ଷର ଦେବତା ଗନ୍ଧର୍ବଟି ଜାଣ
ଦେବତା ଅଟନ୍ତି ପୁଷା ଏକାଦଶାକ୍ଷରେ
ମିତ୍ର ଅଟନ୍ତି ଦେବତା ଦ୍ୱାଦଶ ବର୍ଣ୍ଣରେ
ତ୍ରୟୋଦଶ କ୍ଷରେ ତ୍ୱଷ୍ଟା ଅଟନ୍ତି ଦେବତା
ଚତୁର୍ଦ୍ଦଶ ବର୍ଣ୍ଣେ ଦେବ ଶଚୀଙ୍କର ଭର୍ତ୍ତା
ମରୁତ ଦେବତା ପଞ୍ଚଦଶ ଅକ୍ଷରର
ଦେବତାଅଟନ୍ତି ସୋମବର୍ଣ୍ଣ ଷୋଡ଼ଶର
ଅଙ୍ଗୀରା ଜାଣ ଦେବତା ବର୍ଣ୍ଣ ସପ୍ତଦଶେ
ଅଠର ଅକ୍ଷରେ ଦେବ ବିଶ୍ୱ ଦେବା ବସେ
ଉନବିଂଶାକ୍ଷର ଦେବ ଅଶ୍ୱିନୀ କୁମାର
ଦେବତା ଅଟନ୍ତି ପ୍ରଜାପତି ବିଂଶତିର
ଉପରେ କହିଲି ଯେତେ ଦେବଙ୍କର ନାମ
ଏକବିଂଶାକ୍ଷରେ ଦେବ ସେ ସମସ୍ତେ ଜାଣ
ଈଶାନ ଅଟନ୍ତି ଦେବି ଦ୍ୱାବିଂଶାକ୍ଷରର
ତ୍ରୟବିଂଶାକ୍ଷର ଦେବ ସାବିତ୍ରୀଙ୍କବର
ଗାୟତ୍ରୀଙ୍କ ଯାହା ଜାଣ ଚତୁର୍ଦ୍ଦଶାକ୍ଷର
ସ୍ୱୟଂ ନାରାୟଣ ଦେବ ଅଟନ୍ତି ତାହାର
ଚବିଶ ବର୍ଣ୍ଣରେ ଥାନ୍ତି ଯେତେକ ଦେବତା
ଜପକାଳେ ସେମାନଙ୍କୁ କରୁଥିବ ଚିନ୍ତା,
ସେହି ଦେବଗଣ ଜାଣି ତାହାର ଚିନ୍ତନ
ବାଞ୍ଛିତ ଫଳ ନିଶ୍ଚୟ କରନ୍ତି ପ୍ରଦାନ
ପୁଣି ସବୁ ପାପ ତାର କରିଣ ବିନାସ
ବିଧାନ କରନ୍ତି ବ୍ରହ୍ମଧାମେ ତାର ବାସ
ଆପାଦ ମସ୍ତକ ଚତୁର୍ବିଂଶତି ସ୍ଥାନରେ
ଗାୟତ୍ରୀ ମନ୍ତ୍ର ବିନ୍ୟାସ କରିବ କ୍ରମରେ
ଗାୟତ୍ରୀଙ୍କ ମନ୍ତ୍ର ଜପ ତାପରେକରିବ
ଜ୍ଞାନରେ ଗରିଷ୍ଠ ଯେଉଁ ବିପ୍ର ହୋଇଥିବ
'ଚିତ୍' ନାମେ ମନ୍ତ୍ର ଆଦ୍ୟର ଦୁଇଟି ଅକ୍ଷର
ନ୍ୟାସ କରିବ ପାଦର ଅଙ୍ଗୁଷ୍ଠେ ତାହାର
ପ୍ରଥମ ଅକ୍ଷର 'ସ' କୁରୁଗୁଳେଫ ବିନ୍ୟାସିବ
ବେନି ଜଙ୍ଘରେ ଦ୍ୱିତୀୟ 'ବି' ବର୍ଣ୍ଣେ ରଖିବ
ତୃତୀୟ ବର୍ଣ୍ଣ 'ତୁ' ନେଇ ଜାନୁରେ ସ୍ଥାପିବ
ଆହେ ସୁତ ଭଲେ ଏହା ମନେ ରଖିଥିବ
ଚତୁର୍ଥ 'ର୍ବ' ଅକ୍ଷରେ ନ୍ୟାସ ଉରୁଦେଶେ
ଗୁଦରେ ନ୍ୟାସ କରିବ 'ରେ' ବର୍ଣ୍ଣ ବିଶେଷେ
'ଣୀ' ବର୍ଣ୍ଣକୁ ନେଇ ନ୍ୟାସ କର ବୃଷଣରେ
କଟୀରେ ନ୍ୟାସ କରିବ ବର୍ଣ୍ଣ 'ୟ' କାରରେ
'ଭ' କାରକୁ ନଖ ନାଭୀ ମଣ୍ଡଳରେ ନେଇ
'ର୍ଗୋ' ବର୍ଣ୍ଣକୁ ଜଠରରେ ନ୍ୟାସିବ ଚିତୋଇ
ସ୍ତନରେ ନ୍ୟାସ କରିବ ନେଇଣ 'ଦେ' କାର
ନ୍ୟାସକରିବ ହୃଦୟରେ ଯତନେ 'ବ' କର
'ସ୍ୟ' କାରକୁ କରଯୁଗେ କରିବ ବିନ୍ୟାସ
'ଧୀ' କାରକୁ କର ନେଇ ବଦନରେ ନ୍ୟାସ

ନ୍ୟାସ କରିବ 'ମ' କାରେ ନେଇଣ ତାଳୁରେ
'ହ୍ରୀ' କାରେ ନ୍ୟାସିବ ଯତ୍ନେ ନାସିକା ବିବରେ
ଚକ୍ଷୁ ବେନିରେ ନ୍ୟାସିବ 'ଧୀ' କାରକୁନେଇ
'ୟେ' କାରେକୁ ମଧ୍ୟେନ୍ୟାସକରସ୍ଥିରହୋଇ
'ଯୋ' କାରକୁ ଯତନରେ ନ୍ୟାସ ଲଲାଟରେ
'ନ' କାରକୁ ନ୍ୟାସକର ମୁଖର ପୂର୍ବରେ
ମୁଖର ଦକ୍ଷିଣେ କର ନ୍ୟାସ 'ପ୍ର' କାରର
ପଶ୍ଚିମ ଦେଶରେ ନ୍ୟାସ କରିବ 'ଚା' କାର
ଆବର ନ୍ୟାସିବ ମୁଖ ଉତ୍ତରେ 'ଦ' କାରୋ
'ୟତ୍' କାରେ ବିନ୍ୟାସକରନେଇ ମୂର୍ଦ୍ଧନୀରେ
ବ୍ରହ୍ମା ବିଷ୍ଣୁ ଶିବାତ୍ମକ ଅଟଇ ଏ ନ୍ୟାସ
ବ୍ରାହ୍ମଣ ଏ ଅଙ୍ଗନ୍ୟାସ କରିବ ଅବଶ୍ୟ
ଯେଉଁ ଦ୍ୱିଜ ଏହି ନ୍ୟାସ ବିଧିରେ କରିବ
ପରମ ଯୋଗୀ ଓ ଜ୍ଞାନୀ ସେ ନିଶ୍ଚେ ହୋଇବ
ସନ୍ଧ୍ୟାକାଳେ ନ୍ୟାସ ତାର ହେବ ଯେଉଁପରି
କହୁଛି ହେ ସୁତ ତାହା ରଖ ହେତୁକରି
ଓ ଭୁଃ ଇତି ନ୍ୟାସ କରିବ ହୃଦରେ
ଓଁ ଭୁବଃ ଏହି ନ୍ୟାସ କରବ ଶିରରେ
ଶିଖାରେ ନ୍ୟାସ କରିବ ଓଁ ସ୍ୱଃ କହି
ତତ୍‌ସବିତୁର୍ବରେଣ୍ୟଂ ନ୍ୟାସ ଦେହେ ନେଇ
'ଭର୍ଗୋ ଦେବସ୍ୟ ଧୀମହୀ' ନେତ୍ରରେନ୍ୟାସିବ
ଧୀୟୋ ଯୋନଃ ପ୍ରଚୋଦୟାତ୍ କରରେ ରଖିବ
ନ୍ୟାସିବତାପରେ ''ଆପୋଜ୍ୟୋତିରସୋମୃତ''
ବ୍ରହ୍ମ-ଭୁଃ ଭୁର୍ବସ୍ୱରୋ ଏହି ଅଟେ ମନ୍ତ୍ର
ଯେଉଁ ବିପ୍ରାନ ଜାଣଇ ଏ ମନ୍ତ୍ର ଉତ୍ତମ
ତାହାକୁ କହନ୍ତି ଭବେ ବ୍ରାହ୍ମଣ ଅଧମ
ଦିନୁ ଦିନ ପାପ ତାର ଅର୍ଜନ ହୁଅଇ
ପ୍ରତିଗ୍ରହ ଯୋଗରୁ ତା ଅଧିକେ ବଢ଼ଇ
ଗାୟତ୍ରୀ ଅଟନ୍ତି ଚାରି ବେଦର ଜନନୀ
ଜାଣିବ ଏ ତଥ୍ୟ ଯେହୁ ହୋଇବ ସୁଜ୍ଞାନୀ
ଏହାକୁ ଜାଣିଲେ ହୁଏ ସବୁବେଦ ଜ୍ଞାତ
ସବୁ ଯଜ୍ଞଫଳ ମଧ୍ୟ ହୁଅଇ ପ୍ରାପତ
ଶୂଦ୍ରସଙ୍ଗେ ସମାନ ସେ ଯେ ଏହା ନଜାଣେ
ପାପମଧ୍ୟ ଲାଗିଯାଏ ତାହାର ସ୍ପର୍ଶନେ
ଗାୟତ୍ରୀ ବିହୀନେ ବିପ୍ର ହୁଅଇ ପତିତ
ପାର୍ବଣେ ପିତୃଏ ତାର ନୁହନ୍ତି ତୃପତ
ପାର୍ବଣ ପାଇଁ ମଧ୍ୟ ସେ ନୁହେ ଯୋଗ୍ୟପାତ୍ର
ଏଥିରେ ତିଳେ ସଂଶୟ ନାହିଁ ଆହେ ସୁତ
ସ୍ନାନ ଯେଉଁ ବିପ୍ର ପ୍ରତିଦିନ କରେ ନାହିଁ
ତା ସମାନ ନୀଚ ହୋଇ ଭବେକିଏ ନାହିଁ
ଅସ୍ନାନୀର ସବୁ କର୍ମ ହୁଅଇ ନିଷ୍ଫଳ
ବିଦ୍ୟାବିତ୍ତ ଥାଉ-ଜନ୍ମି ଥାଉ ଦ୍ୱିଜକୁଳ
କେବଳ ଗାୟତ୍ରୀ ଅଟେ ମୋକ୍ଷ ପ୍ରଦାୟକ
ଚାରି ବେଦରେ ଏ କଥା ହୋଇଛି କଥିତ
ବେଦଙ୍କ ଜନନୀ ଏହି ଗାୟତ୍ରୀ ଜପିଲେ
କୋଟି କୋଟି ଜନ୍ମ ପାପ ନାଶ ହୁଏହେଲେ
ମହିମା ଗାୟତ୍ରୀଙ୍କର ଅଟେ ଏହିପରି
ତା ସଙ୍ଗରେ ତପ ଯାଗ ଯଜ୍ଞ ନୁହେ ସରି
ଅକ୍ଷମାଳା ଧରି ଯେଉଁ ବିପ୍ର ପ୍ରତିଦିନ
ଗାୟତ୍ରୀଙ୍କ ମନ୍ତ୍ର ବସି କରଇ ମନନ
ସକାଳ ସନ୍ଧ୍ୟାରେ, ତାର ପୁଣ୍ୟନୁହେଁ ହୋଇ
କଦାପି ପାପ ତାହାକୁ ଛୁଇଁପାରେ ନାହିଁ
ପରମାର୍ଥ ମୋକ୍ଷ ଯାହା ଅଧୀନ ତାହାର
ଜନ୍ମ ମରଣ ଚକ୍ରରୁ ଲଭେ ସେ ନିସ୍ତାର
ଶେଷ ହୋଇଲେ ଏଠାରେ ଅଧ୍ୟାୟ ଦ୍ୱାବିଶ
ପଢ଼ିଲେ ଏହାକୁ ଫଳ ମିଳଇ ଅଶେଷ
କୌଶଲ୍ୟାନନ୍ଦନ ବର୍ଦ୍ଧନ କୋଶଳ ଈଶ୍ୱର
ଶର ଚାପଧର ସୀତାହୃଦରତ୍ନହାର
ରାଜ ରାଜୀବ ନୟନ ମୋହର ହୃଦରେ
ମାଗୋ ଭିକ୍ଷା ଗୋପୀନାଥ ତୁମ୍ଭ ଶ୍ରୀ ପୟରେ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ବ୍ରହ୍ମା ନାରଦ ସମ୍ବାଦେ ବ୍ରାହ୍ମଣ
ଲକ୍ଷଣ ତଥା ଗାୟତ୍ରୀ ମହିମା ବର୍ଣ୍ଣନୋ ନାମ
ଦ୍ୱାବିଂଶୋଧ୍ୟାୟଃ



## ତ୍ରୟବିଂଶ ଅଧ୍ୟାୟଃ

### ସଦାଚାର ବର୍ଣ୍ଣନ

ପଚାରିଲେ ବିଧି-ସୁତ-ବିଧି ମୁଖ ଚାହିଁ
କହ ସଦାଚାର କ୍ରମ କିପରି ଅଟଇ
ଇଚ୍ଛିବା ଲୋକ ତାହାକୁ କିପରି ପାଳିବ
ଦୟାବହି ତାହା ମୋତେ ବୁଝାଇ କହିବ

ବ୍ରାହ୍ମଣେ ତର ଜାତିର କର୍ତ୍ତବ୍ୟ ଏଥିରେ
କିପରି ଅଛି କହିବ ବିଚାରି ଚିତ୍ତରେ
ନାରଦ ବଚନେ ବ୍ରହ୍ମା ହର୍ଷଭର ହୋଇ
ଆଦରେ ଡାକି ତାହାଙ୍କୁ ପାଖରେ ବସାଇ
କହିଲେ ଦୀର୍ଘାୟୁ ସେହି ଅଛି ଯା ଆଚାର
ସବୁବେଳେ ସୁଖ ଆଚାରର ପରିଚାର
ଆଚାର ଯୋଗରେ ମିଳେ ସ୍ୱର୍ଗ ସହ ମୋକ୍ଷ
ଏ ଲକ୍ଷଣ ଅଚାରର ଅଟଇ ପ୍ରତ୍ୟକ୍ଷ
ଅନଚାରୀ ଲୋକ ନିନ୍ଦ୍ୟ ହୁଅଇ ସଂସାରେ
ସବୁ ଦୁଃଖ ଲେଖାହୁଏ ତାର କପାଳରେ
ନିରତେ ସେ ଦୁଃଖ ଭୋଗୀ ରୋଗରେ ପଡ଼ଇ
ତା ଫଳେ ଅଳପ ଦିନେ ମରଣ ଲଭଇ
ମୃତ୍ୟୁପରେ ନରକରେ ହୁଏ ତାର ବାସ
ଅନାଚାର ଯୋଗୁଁ ଏହା ଘଟଇ ଅବଶ୍ୟ
ଆଚାର ଅନାଚାରର ତତ୍ତ୍ୱ ଏବେ ଶୁଣ
ହେ ସୁତ ତୁମ୍ଭ ଆଗେ ତା କରିବି ବର୍ଣ୍ଣନ
ଅରୁଣ ଉଦୟ ଆଗୁଁ ଶେଯରୁ ଉଠିବ
ଗୋମୟ ଉଦକ ବାରୀ ଦାଣ୍ଡରେ ସିଞ୍ଚିବ
ଲିପିବ ଘରକୁ ତଦପରେ ଯତନରେ
ପିଢ଼ା ଚିତା-ପେଡ଼ି ଆଦି ଧୋଇବ ପାଣିରେ
ପାଉଁଶେ ମାଜିବ କଂସା ବାସନ ଯେତେକ
ଅମ୍ଳରେ ତମ୍ବା ପିତ୍ତଳ ମାଜିବା ଅଧିକ
ପଥୁରୀ ଇତ୍ୟାଦି ଯାହା ରଖିଥିବ ଘରେ
ନିର୍ମଳ କରିବ ତେଲ ଲଗାଇ ତହିଁରେ
ଲଙ୍ଗଳଲୁହା କୁରାଢ଼ି ଆଦି ଯାହାଥିବ
ସଜ ଗୋବରରେ ତାର ଶୁଦ୍ଧି ଆଚରିବ
ସୁନା ରୂପା ପାତ୍ର ଶୁଦ୍ଧ ଧୋଇଲେ ପାଣିରେ
ଲୁହା ପାତ୍ର ଶୁଦ୍ଧ ହୁଏ ପୋଡ଼ିଲେ ଅଗ୍ନିରେ
ମନେରଖ ସୁତ ପ୍ରତିଥର ପାକପରେ
ଧୋଇବ ରନ୍ଧନ ପାତ୍ର ଅତି ଯତନରେ
କରିବ ଏପରି ପ୍ରତିଦିନ ଶୁଦ୍ଧିପାଇଁ
ଧାତୁପାତ୍ର ଶୁଦ୍ଧି କ୍ରମ ଏପରି ଅଟଇ
ବ୍ରହ୍ମା ହର୍ଷେ ତଦପରେ ନାରଦେ କହିଲେ
ହର୍ଷ ହୋଇ ଶୁଣ ଭୂମି ଶୁଦ୍ଧିରୀତି ଭଲେ
ଖନନ, ଦାହନ, ଉପଲେପନ ଧଉତ
ଭୂମି ଶୁଦ୍ଧି ପାଇଁ ଏହା ହୋଇଛି କଥିତ

ଭୂମି ଯେବେ ଅପବିତ୍ର ହୋଇଛି ଦେଖିବ
ମାଟି ଖୋଳି ନେଲେ କାଢ଼ି ଶୁଦ୍ଧସେ ହୋଇବ
ନୋହିଲେ ବା କାଠିକୁଟା ଥୋଇ ତଥିପରେ
ବିଶୁଦ୍ଧ ହୁଅଇ ଭୂମି ଅଗ୍ନି ସଂଯୋଗରେ
ନୋହିଲେ ଗୋବର ଦେଇ ସେ ସ୍ଥାନ ଲିପିବ
ତେବେ ଅମେଧ ଯେ ଭୂମି ବିଶୁଦ୍ଧ ହୋଇବ
ତା ନୋହିଲେ ବର୍ଷାପରେ ଭୂମି ହୁଏ ଶୁଦ୍ଧ
ବିଚାରି ଏ କଥା କହି ଅଛନ୍ତି ବିବୁଧ
ମଣି ହୀରା ଆଦି ଯେତେ ଦୁର୍ମୂଲ୍ୟ ପଥର
ତେଜ ଲାଗି ବଢ଼ିଥାଏ ପ୍ରଖ୍ୟାତି ଯାହାର
ଭସ୍ମରେ ଶୁଦ୍ଧି ତାହାର ହୁଅଇ ସର୍ବଥା
ଆଗରୁ କହିଛି ସୁତ ତୁମକୁ ଏ କଥା
ଶଯ୍ୟା ଭାର୍ଯ୍ୟା, ଶିଶୁ ବସ୍ତ୍ର ପୁଣି ଉପବୀତ
କମଣ୍ଡଳୁକୁ ମିଶାଇ ଏ ସାତ ପଦାର୍ଥ
ସର୍ବଦା ବିଶୁଦ୍ଧ ଏହା କରିବ ମନନ
ତାଙ୍କ ଶୁଦ୍ଧି ପାଇଁ ଲୋଡ଼ା ନହୁଏ ଯତନ
ଅନ୍ୟ ଦ୍ୱାରା ତାର ଶୁଦ୍ଧି କଦାପି ନ ହୁଏ
ତେଣୁ ଅନ୍ୟର ଏ ଦ୍ରବ୍ୟ ଛୁଇଁ ନ ଯୋଗାଏ
ନଖାଇବ କେବେହେଲେ ଏକବସ୍ତ୍ର ହୋଇ
ଗୋଟିଏ ଲୁଗାରେ କେବେ ଗାଧୋଇବ ନାହିଁ
ସ୍ନାନକଲା  ପରେ ପରେ ପାଲଟା ବସନ
ଭୁଲରେ ମଧ୍ୟ ଅଙ୍ଗରେ ଦେବନାହିଁ ସ୍ଥାନ
ଘଷିବ ଦାନ୍ତ ସକାଳୁ ଉଠି ସାବଧାନେ
କେଶକୁ ନିର୍ମଳ କରି ରଖିବ ଯତନେ
ତାପରେ ଗୁରୁଙ୍କ ପାଦ କରିବ ବନ୍ଦନ
ଲୋକର କର୍ତ୍ତବ୍ୟ ଏହା ଅଟେ ପ୍ରତିଦିନ
ଖାଇବାକୁ ଯିବା ଆଗୁ ଏତକ କରିବ
ଦୁଇହାତ ଦୁଇ ଗୋଡ଼ ମୁହଁ ଧୋଇଦେବ
ଏ ଆଜ୍ଞା ଅଟେ ଭାର୍ଗବ ବୃହସ୍ପତିଙ୍କର
ଶତାୟୁ ହୁଏ ଏହାକୁ ପାଳେ ଯେଉଁ ନର
ଦେବତା ଗୁରୁ ନୃପତି ସ୍ନାତକ ବ୍ରାହ୍ମଣ
ଏହାଙ୍କ ଛାଇରେ ମଧ୍ୟ ନଦେବ ଚରଣ
ଜାଣି ଜାଣି ଏହା ଯେଉଁ ନର ଆଚରିବ
କହିଛନ୍ତି ବଡ଼ଲୋକେ ଧର୍ମଦ୍ରୋହୀ ହେବ
ଦେବତା ଗୋଗୋଷ୍ଠ ବିପ୍ର ଘୃତ ମଧୁଚାରି
ଯାତ୍ରା କରିବ ଏହାଙ୍କୁ ଦକ୍ଷପଟେ ହେରି

ଯାତ୍ରାବେଳେ ଯେଉଁ ଲୋକ ଶୁଭ ମନାଶିବ
ସପିପ୍ପଳ-ପଦ୍ରକ୍ଷିଣ ଏହାଙ୍କୁ କରିବ
ବିପ୍ରସଙ୍ଗେ ଗୋରୁ, ଅବା ହୁତାଶନ କରେ
ବିପ୍ରଙ୍କୁ ଅଥବା ଦୁଇ ବିପ୍ର ଏକାଥରେ
ଅଥବା ଦମ୍ପତି ତହିଁ ଏକାସଙ୍ଗେ ଥିଲେ
ସ୍ୱର୍ଗୁ ଖସିପଡ଼େ ଲୋକ-ତାଙ୍କମଧ୍ୟେ ଗଲେ
ଉଚ୍ଛିଷ୍ଟ ମୁଖରେ, ଗୁରୁ ଦେବତା ବ୍ରାହ୍ମଣ
ସ୍ୱଶିର ପୁଷ୍ପିତ ବୃକ୍ଷ ଅବା ହୁତାଶନ
ଯଜ୍ଞବୃକ୍ଷ ଯଜ୍ଞଫୁଲ କେବେ ନ ଛୁଇଁବ
ଧାର୍ମିକ ଯେ ହେବ ଏହା ନିଶ୍ଚେ ଆଚରିବ
ସେହିକ୍ଷଣି ଖାଇଥିଲେ ଅବା ପିଇଥିଲେ
କୁଳିକରି ହାତ ଗୋଡ଼ ମୁହଁ ନ ଧୋଇଲେ
ସୂର୍ଯ୍ୟ, ଚନ୍ଦ୍ର ନକ୍ଷତ୍ରଙ୍କୁ କେବେ ନଦେଖିବ
ଯେ ଦେଖିବ ନିଶ୍ଚୟ ସେ ପାପଭାଗୀ ହେବ
ଯତି, ଯୋଗୀ ଗୁରୁ ବିପ୍ର ଦେବତା ନୃପତି
କର୍ମଣିଆ ବିପ୍ର ଅବା ଧର୍ମ ଯେ କହନ୍ତି
ସଦ ଉଚ୍ଛିଷ୍ଟ ମୁହଁରେ ରହିଥିବା ଜନ
କରିବ ନାହିଁ ଏହାଙ୍କୁ କଦାପି ଦର୍ଶନ
ମଳତ୍ୟାଗ ନ କରିବ କେବେ ନଦୀକୂଳେ
ସମୁଦ୍ର ତୀରରେ ଅବା ଯଜ୍ଞ ବୃକ୍ଷମୂଳେ
ଉଦ୍ୟାନ ସମୀପେ ଅବା ପୁଷ୍ପବାଟୀ କାରେ
ବିପ୍ରନିବାସଆଗେ ବା ଜଳର ମଧ୍ୟରେ
ଗାଇଗୋଠେ ଅବା ଯେଉଁ ସ୍ଥାନ ସୁରୁଚିର
ରାଜପଥେ ମଳୋତ୍ସର୍ଗ ଅଧର୍ମରେ ସାର
ମଙ୍ଗଳବାରରେ କେବେ ନ ହେବ କ୍ଷଉର
ବିଜ୍ଞ ଯିଏ ଆହେ ସୁତ ହୃଦେ ଏହା ଧର
କୌଣସି ମନ୍ତେ ଦାନ୍ତରେ ମଳି ନରଖିବ
ଛିଣ୍ଡାଇ ଦାନ୍ତରେ କେବେ ନଖ ନ କାଢ଼ିବ
ରବିମଙ୍ଗଳରେ ଦେହେ ନ ଘେନ ତଇଳ
ବାଦ୍ୟକରି ଅଙ୍ଗ କେବେ ନ ପକାଅ ତାଳ
ନବସିବ ଗୁରୁ ବସିଥିବା ଅସାନରେ
ନହରିବ ଦେବ, ଗୁରୁ ବ୍ରହ୍ମସ୍ୱ-ସ୍ୱପ୍ନରେ
ସେହିପରି ରାଜବିତ୍ତ-ବିତ୍ତ ତପସ୍ୱୀର
ଛୋଟା, କଣା ଅନ୍ଧ, କୁଜା ଅଥବା ନାରୀର
ବିତ୍ତରେ ଲୋଭ କରି ଯେ କରିବ ହରଣ
ଜନ୍ମାଜନ୍ମାନ୍ତରେ ନର୍କହେବ ତାର ସ୍ଥାନ

ବାଟେ ଯିବା ବେଳେ ଗୋରୁନୃପତି ବ୍ରାହ୍ମଣ
ରୋଗୀ ଗର୍ଭିଣୀ, ଦୁର୍ବଳ ଭାରବାହୀଜନ
ଏହାଙ୍କୁ ଦେଖିଲେ ଆଗବାଟ ଛାଡ଼ିଦେବ
ଶୀଘ୍ର ଆଡ଼ହୋଇ ବଟୁ ପାଶେ ଠିଆହେବ
ବଇଦ, ବ୍ରାହ୍ମଣ ଅବା ନୃପତି ସଙ୍ଗରେ
ବିବାଦ କରିବ ନାହିଁ କୌଣସି ମତରେ
ଗୁରୁପତ୍ନୀ, ବ୍ରାହ୍ମଣର ସ୍ତିରୀଙ୍କୁ ବର୍ଜନ
କରିବ ଦୂରରୁ ଯିଏ ଅଟେ ବିଜ୍ଞଜନ
ପତିତ, ଚାଣ୍ଡାଳ, କୁଷ୍ଠରୋଗୀ ଗୋ ଖାଦକ
ଜ୍ଞାନହୀନ ଦୁଷ୍ଟଙ୍କର ନ ଲାଗିବ ପାଖ
ଦୁବୃତ୍ତ କଳହା ନାରୀ ଅପବାଦକାରୀ
ତାମସୀଙ୍କ ପାଶୁ ଦୂରେ ରହିବ ବିଚାରି
ନିର୍କମା, କଳିହା, ଦୁଷ୍ଟା, ପ୍ରମତ୍ତା ନିର୍ଲ୍ଲଜୀ
ଅଣ୍ଡିରାଚଣ୍ଡୀ ଜାଣିଲେ ପାଖୁ ଦେବ ତଡ଼ୀ
ବାହରେ ବୁଲେ ଯେ ନାରୀ ସଦାଛାଡ଼ିଘର
ବିଳାସରେ ଧନଖର୍ଚ୍ଚ ସ୍ୱଭାବ ଯାହାର
ଯେଉଁନାରୀ ଆଚାରରେ ହୀନା ହୋଇଥିବ
ସେପରି ନାରୀକୁ ଦୁରୁ ବର୍ଜନ କରିବ
ରଜସ୍ୱଳା ହୋଇଥିଲେ ଗୁରୁଙ୍କ ଅଙ୍ଗନ
ନକରିବ କେବେ ତାଙ୍କ ପାଦରେ ବନ୍ଦନା
ନ ଛୁଇଁବା ଗୁରୁପତ୍ନୀ ସେହି ଅବସ୍ଥାରେ
ଉଚିତ ଅଟଇ ଏହି ମେଧାବୀ ପକ୍ଷରେ
ଭୁଲରେ ଯଦିବା କେହି ତାହାଙ୍କୁ ଛୁଇଁବ
ସ୍ନାନକରି ତେବେ ଅଙ୍ଗ ଶୁଦ୍ଧି ଆଚରିବ
ବୋହୂ, ଭାବେ ହୁଅବା ଯୁବତୀ ଦୁହିତା
ଗୁରୁପତ୍ନୀ ଅବା ଅନ୍ୟ ଲୋକର ବନିତ
ଦର୍ଶନ ଏମାନଙ୍କର କେବେ ନ କରିବ
ଭୁଲେ ମଧ୍ୟ ତାଙ୍କ ଅଙ୍ଗ ସ୍ପର୍ଶ ନ କରିବ
କଦାପି ତାହାଙ୍କ ସଙ୍ଗେ ନରକିବ କଳି
ଅଲାଜୁକ କଥା ଆଗେ ନ କହିବ ଚଳି
ଏହି ଉପଦେଶ ଯେହୁ ଅନ୍ୟଥା କରିବ
ବୃଥାରେ ତାପରେ ପରେ ନିନ୍ଦା ଭାଗୀହେବ
ତଷୁନିଆଁରେ ଅଥବା ପାଉଁଶ ଗଦାରେ
ତୁଳାଗ୍ନିରେ, ଚିତାଭସ୍ମେ, ଅବା ନିର୍ମାଲ୍ୟରେ
ଗୁରୁଙ୍କ ଚିତାରେ ପାଦ କଦାପି ନ ଦେବ
ଯଦି ଦେବ ତେବେ ମହା ଅପ୍ରାଧ ଅର୍ଜିବ

ନଖାଇବ ଶୁଷ୍କମୀନ କଦାପି ଭୁଲରେ
ଦର୍ଗନ୍ଧ ଅମେଧ୍ୟ କେବେ ନ ଦେବ ମୁଖରେ
ବିଷମ ଯାହା ଅନ୍ୟର ଅଟଇଉଚ୍ଛିଷ୍ଟ
ଯେଉଁ ଖାଦ୍ୟ ଅନ୍ୟ ପାଇଁ ଅଟଇ ଉଦ୍ଦିଷ୍ଟ
ଜାଣିବା ଲୋକ ତାହାକୁ କେବେ ନ ଛୁଇଁବ
ଜାଣି ତାହାକୁ ଦୂରରୁ ବର୍ଜନ କରିବ
ଅସତ ବୋଲିଣ ଲୋକ ଯାହାକୁ ଜାଣିବ
ସବୁ ସମ୍ପର୍କ ତାଠାରୁ ଶୀଘ୍ର ତୁଟାଇବ
ତା ସଙ୍ଗରେ କେବେ କେଉଁ ଆଡ଼େ ଯିବନାହିଁ
ଯେବେ ଯିବ ଜାଣ ତେବେ ଭଲଗତିନାହିଁ
ବାହାଡ଼ା ଗଛ ତଳେ ବା ଦୀପର ଛାଇରେ
ନ ରହିବ ଜ୍ଞାନୀ ଲୋକ କଦାପି ଭ୍ରମରେ
ଅସ୍ପର୍ଶ୍ୟ, ପତିତ କ୍ରୋଧୀ ଏହାଙ୍କ ସହିତ
କ୍ଷଣେ ମଧ୍ୟ ରହିବାର ନୁହଇ ଉଚିତ
ଏମାନଙ୍କ ସଙ୍ଗେ କେବେ କଥା ହେବ ନାହିଁ
ଯେ ସଦା ଇଚ୍ଛା କରିବ ନିଜ ଭଲ ପାଇଁ
ଇହଲୋକେ କଷ୍ଟ ପାଇ ମଲେ ପରଲୋକେ
ସେହି ଦୋଷ ଘେନି ପଡ଼େ ରୌରବନରକେ
କକା ମାମୁଁ ହୋଇଥିଲେ ବୟସରେ ସାନ
ଏମାନଙ୍କୁ ଦେଖିଲେ ନ କରିବ ବନ୍ଦନ
ଆସିବା ଦେଖି ଆସନୁ ଉଠି ଠିଆହେବ
ଆସନ ଦେଇ ବସିବା ନିମନ୍ତେ କହିବ
ବନ୍ଦ୍ୟ ଯେବେ କାନ୍ଧେ ମୁଣ୍ଡେ ବହିଥିବ ଭାର
ତେଲେ ଅବା ହୋଇଥିବ ଅଙ୍ଗ ଜରଜର
ଖାଇ ବସିଥିବ ଅବା ଅଞ୍ଚୋଇ ନଥିବ
ରୋଗ ଶଯ୍ୟାରେ ଯେ ପଡ଼ି କଷ୍ଟ ପାଉଥିବ
ଏହିମାନଙ୍କୁ କରିବ ନାହିଁ ନମସ୍କାର
ଜ୍ଞାନୀ ଲୋକର ଏ ଅଟେ ଉତ୍ତମ ବିଚାର
ଓଦାଲୁଗା ପିନ୍ଧି ଆସୁଥିଲେ ସ୍ନାନପରେ
ପୋଖରୀ ତୁଠେ ବା ଉଦବିଗ୍ନ ଅବସ୍ଥାରେ
ଏତେ ସ୍ଥାନେ ଯଦି ବିଜ୍ଞ ବୈଦ୍ୟଙ୍କୁ ଦେଖିବ
କଥାହେବ ମାତ୍ର ନମସ୍କାର ନକରିବ
ବନ୍ଦନ କରିବ ଏମାନଙ୍କୁ ଶୁଦ୍ଧିପରେ
ତେବେ ସୁତ ଏହା ଗଣାଯିବ ସଦାଚାରେ
ହୋଇଥିଲେ ମାନ୍ୟଲୋକ ଯଜ୍ଞରେ ଦୀକ୍ଷିତ
ଦୈବଗଣ ହୋଇଥିବ ଯଦ୍ୟପି ପତିତ
ସ୍ତିରୀ ବାଳକ ସଙ୍ଗରେ କ୍ରୀଡ଼ା କରୁଥିଲେ
କୁଶ ଅବା ଫୁଲ ହାତେ ଧରି ଆସୁଥିଲେ
ସେହି ଅବସ୍ଥାରେ ନମସ୍କାର ନ କରିବ
ତାର ଫଳେ ସଦାଚାର ଭଙ୍ଗନ ହୋଇବ
ଆବୃତ କରିଣ ଶିର କାନ ଥିଲେ ଜଳେ
ନକରିବ ନମସ୍କାର ଶିଖା ଖୋଲିଥିଲେ
ଦକ୍ଷିଣ ମୁଖରେ ନ କରିବ ଆଚମନ
ଦେହରୁ ଯଜ୍ଞୋପବୀତ ନ କରିବ ଭିନ୍ନ
ଲଙ୍ଗଳା ନୋହିବ କେବେ ଆକଚ୍ଛ ନହେବ
ଲୁଗା ପିନ୍ଧାପିନ୍ଧି ଆଚମନ ନ କରିବ
ନ ହୋଇବ ଶୁଦ୍ଧ ଯେବେ କରିବ ଏପରି
ଅନାଚାରୀ ରୂପେ ନିନ୍ଦା ହୋଇବ ତାହାରି
ଶୁଣ ଆଚମନ ପରେ ଯାହା ଆଚରିବ
ମଧ୍ୟ ତିନି ଆଙ୍ଗୁଠିରେ ମୁଖକୁ ଛୁଇଁବ
ଏହାନାମ ନ୍ୟାସ ମନେ ରଖିବ ସୁସ୍ଥିରେ
ନାସା ସ୍ପର୍ଶିବ ଅଙ୍ଗୁଷ୍ଠ ସହ ତର୍ଜନୀରେ
ଅନାମିକା ବୃଦ୍ଧା ଯୋଗେ ନେତ୍ର ପରଶିବ
କନିଷ୍ଠା ଅଙ୍ଗୁଷ୍ଠ ଯୋଗେ କାନକୁ ଛୁଇଁବ
ନାଭୀନ୍ୟାସ ହେବ ମାତ୍ର ଅଙ୍ଗୁଷ୍ଠ ଯୋଗରେ
କରତଳେ ନ୍ୟାସ ଆଚରିବ ହୃଦୟରେ
ସଅଙ୍ଗୁଳି କରତଳ ରଖଇ ଶିରପରେ
ଯେହୁ ବିଜ୍ଞ ଆଚରିବ ନ୍ୟାସ ଏ କ୍ରମରେ
କରାଗ୍ରରେ ଆଚରିବ ଦୁଇ ବାହୁ ନ୍ୟାସ
ଏହି ନ୍ୟାସେ ବିପ୍ର ଶୁଦ୍ଧ ହୁଅଇ ଅବଶ୍ୟ
ଆଚମନ ବେଳେ ଯଦି ଏ ରୀତି ଧରିବ
ତେବେ ତାର ଅଙ୍ଗୁ ପାପ ଛାଡ଼ି ପଳାଇବ
ଏ ଦେହରେ ଲଭି ସୁଖ ମୃତ୍ୟୁ ହେଲେ ପରେ
ଅକ୍ଷୟ ସ୍ୱରଗ ବାସ ମିଳେ ନିଶ୍ଚୟରେ
ତ୍ରିପୁଟୀ ଶୃଙ୍ଗରେ ପ୍ରାଣବାୟୁ ସମାହିତ
ମୁର୍ଦ୍ଧାରେ ଅପ୍ରାନ ପ୍ରାଣ ହୋଇବ ନିହିତ
ସମାନ ତର୍ଜନୀ ବିନା ସବୁ ଅଙ୍ଗୁଳୀରେ
ନାଗ, କୂର୍ମ, ଦେବଦତ୍ତ ଧନଞ୍ଜୟାଦିରେ
କୁକର ଆଦି ଯା ପାଇଁ ଭୂମି ହୁଏ ଦାନ
ଏହିପରି କଲେ ସର୍ବେ ହୁଅନ୍ତି ପ୍ରସନ୍ନ
ଉପକାର କରନ୍ତି ସେ ନିତି ସାଧକର
ଏଥିରେ ମନରେ ତିଳେ ସଂଶୟ ନ ଧର

ଓଦା ଗୋଡ଼ରେ କଦାପି ଶଯ୍ୟା ନ ମାଡ଼ିବ
ସେପରି ଶୁଷ୍କ ପାଦରେ ଭୁଞ୍ଜି ନ ବସିବ
ନ ଶୋଇବ ନ ଖାଇବ କେବେ ଅନ୍ଧାରରେ
ନ ଘଷ ଦାନ୍ତ ପଶ୍ଚିମ ଉତ୍ତର ମୁଖରେ
ଏହିପରି କଲେ ଆୟୁ କ୍ଷୀଣ ହୋଇଯାଏ
ସ୍ୱପ୍ନ ଦୋଷ ହୁଏ, ବ୍ରହ୍ମହତ୍ୟା ଦୋଷ ପାଏ
ଦକ୍ଷିଣ ପୂର୍ବ ମୁଖରେ କରିବା ଶୟନ
ପ୍ରଶସ୍ତ ବୋଲି ରହିଛି ଶାସ୍ତ୍ରର ବିଧାନ
ଭୋଜନ କରିବ ଯେବେ ପୂର୍ବ ମୁଖ ହୋଇ
ନିଶ୍ଚୟ ଆୟୁ ତାହାର ଅଧିକ ହୁଅଇ
ପଶ୍ଚିମ ମୁଖେ ଭୁଞ୍ଜିଲେ ଧନ ହାନୀ ହୁଏ
ଦକ୍ଷିଣ ମୁଖରେ ଯଶ ଦୂର ହୋଇଯାଏ
ପୂର୍ବ ମୁଖେ ବଢ଼େ ଆୟୁ ପ୍ରେତତ୍ୱ ଦକ୍ଷିଣେ
ଶରୀରରେ ରୋଗ ବୃଦ୍ଧି ହୁଅଇ ଦାରୁଣେ
ଆୟୁ ଶ୍ରୀ ବୁଦ୍ଧି କାରକ ଅଟଇ ଉତ୍ତର
ଏଥିରେ ହୃଦରେ କେବେ ସନ୍ଦେହ ନଧର
ଆହାର କରନ୍ତି ସୁରେ ଦିନକରେ ଥରେ
ଦୁଇବାର ଦିନକରେ ମନୁଷ୍ୟ ପକ୍ଷରେ
ପେତ୍ର, ରାକ୍ଷସ ଦିନକେ ଖାନ୍ତି ତିନିଥର
ଚାରିଥର ଦିନକରେ କୌଣପ ଆହାର
ଦେବଙ୍କର ପ୍ରିୟ ଖାଦ୍ୟ ଘୃତ ନିରାମୀଷ
ମନୁଷ୍ୟର ପ୍ରିୟ ଖାଦ୍ୟ ଅଟେ ମାଛ ମାଂସ
ଅଘୋଡ଼ା, ଦୁର୍ଗନ୍ଧ ବାସି ଯେତେକ ଆହାର
ଦୁଷ୍ଟମାନଙ୍କର ତାହା ଅଟେ ପ୍ରିୟତର
ଚାରିଗୋଟି ଦେବଗୁଣ ମଝେ ଯାହା ଅଛି
ମନେରଖ ନାମ ତାର ତୁମ୍ଭଙ୍କୁ କହୁଛି
ପ୍ରଶସ୍ତଦାନ ଆବର ବାଣୀ ସୁମଧୁର
ଦେବତାଙ୍କର ପୂଜନ ତୃପ୍ତି ବ୍ରାହ୍ମଣର
ସମ୍ଭବ ଏ ଚାରିଗୁଣ ଦେବତାଙ୍କ ଠାରେ
ସେ ମଧ୍ୟ ଦେବତା ମଝେ ଥାଏ ଯାହାଠାରେ
ନରକଗାମୀ ଯେହେବ ତା ଚିହ୍ନ ଏପରି
କୃପଣତା, କୁକରଣୀ, ପରନିନ୍ଦାକାରୀ
ମଳିନ ବସ୍ତ୍ର ଧାରଣ-ନିଚୀବୁଦ୍ଧିନର
ଅଧମ ଜନରେ ଭକ୍ତି ଲୋଭୀ ଗୁରୁତର
ନରକଗାମୀ ଲୋକର ଅଟେ ଏ ବେଭାର
ଏଥିରେ ସନ୍ଦେହ ତିଳେ ଚିତ୍ତରେ ନ ଧର
ଧର୍ମବୀଜ ଜାତ ଲୋକ ଲକ୍ଷଣ ଏପରି
ତା କୋମଳବାଣୀ ମିଠା ଅଟେ ମହୁପରି
ଲବଣୀ ସମ ତା ମନ ଅଟଇ କୋମଳ
ଏ ସାଧୁ ଲକ୍ଷଣ ଶୁଣ ଋଷିଙ୍କ ଶେଖର
ଧର୍ମବୀଜ୍ଜୁ ହୋଇଥାଏ ଯେଣୁ ତା ଉଦୟ
ତା ଫଳେ ଦିଏ ସେ ନିଜେ ନିଜ ପରିଚୟ
ଦୟାହୀନ, ହୃଦହୀନ ବଚନ କର୍କଶ
ପାପବୀଜ ଜାତର ଏ ଲକ୍ଷଣ ବିଶେଷ
ଯେ ପଢ଼ଇ ତିନି ଏହି ସଦାଚାର ନୀତି
ମନେ ରଖ ତାରପରି ଭବେ କେ ନାହାନ୍ତି
ନିଜେ ପଢ଼ି ଯେହୁ ଏହା ଅନ୍ୟେ ଶୁଣାଇବ
ବିନା ଯାଗ ଯଜ୍ଞ ତପସ୍ୟାରେ ସ୍ୱର୍ଗେ ଯିବ
ବିଶୁଦ୍ଧ ହେବ ଏହାର ପଠନରେ ହୃଦ
ଶ୍ରୋତାଗଣଙ୍କୁ ନିଶ୍ଚୟ ଏ ଦେବ ପ୍ରମୋଦ
ଯତନେ ପାଳିବ ଯେହୁ ଏହି ସଦାଚାର
ସ୍ୱଦେହେ ଦେଖିବ ଯାଇ ନାରାୟଣପୁର
ରାଜା ମୋ ହୃଦରେ ପ୍ରଭୁ ରାମ ଦୟାମୟ
ସଦା ହୃଦେ ରହୁ ଏହି ନୀତି ଜ୍ୟୋତିର୍ମୟ
ଦୋଷ ଯଦି ଏଥି ଥିବା ସୁଜନେ ଜାଣିବ
ଗୋପୀନାଥେ କ୍ଷମାଗୁଣେ ଦୟା ଆଚରିବ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟିଖଣ୍ଡେ
ବ୍ରହ୍ମା ନାରଦ ସମ୍ବାଦେ ସଦାଚାର
ବର୍ଣ୍ଣନୋ ନାମ ତ୍ରୟୋବିଂଶୋଧ୍ୟାୟ

□

## ଚତୁର୍ବିଂଶ ଅଧ୍ୟାୟଃ

### ପିତୃସେବା ମାହାତ୍ମ୍ୟ

କହିଲେ ପୁଲସ୍ତ୍ୟେ ନମି ଶାନ୍ତନୁ କୁମର
ଦୟାବହି ଦିଅନ୍ତୁ ମୋ ପ୍ରଶ୍ନର ଉତ୍ତର
ପ୍ରବଳ ହୋଇଛି ମୋର ଇଚ୍ଛା ଋଷିସାଇଁ
ବିଶ୍ୱେ ଶ୍ରେଷ୍ଠ ପୁଣ୍ୟ କିଏ ତା ଜାଣିବା ପାଇଁ
ସଂସାର କହେ ଯାହାକୁ ପୁଣ୍ୟଙ୍କେ ଉତ୍ତମ
କହନ୍ତୁ କିପରି ତାହା କିବା ତାର ନାମ
କେ କରେ ସହସ୍ରେ ଯାଗ ପୁଣ୍ୟଲାଭ ପାଇଁ
ପୁଣ୍ୟ ପାଇଁ କେହି କୋଟି ଧର୍ମ ଆଚରଇ

ମହାପୁଣ୍ୟ ବୋଲିପୂର୍ବୁ ହୁଏ ଯା କଥିତ
ବୁଝାଇ କହନ୍ତୁ ମୋତେ ସେ ପୁଣ୍ୟ ଚରିତ
ଭୀଷ୍ମଙ୍କର ଏହି ପ୍ରଶ୍ନେ ହର୍ଷେ ମୁନୀବର
କହିଲେ ପୂର୍ବଘଟଣା ବ୍ୟାସ-ଆଶ୍ରମର
ଦିନେ ବ୍ୟାସଙ୍କର ସବୁ ଶିଷ୍ୟ ଗଣ୍ଡହେଲେ
ତୁମପରି ଏହି ପ୍ରଶ୍ନ ତାଙ୍କୁ ପଚାରିଲେ
ପଚାରିଲେ ଦ୍ୱିଜଗଣ ଆହେ ଋଷିବର
ଶ୍ରେଷ୍ଠଜ୍ଞାନୀ ରୂପେ ଜାଣେ ତୁମ୍ଭଙ୍କୁ ସଂସାର
ପୂଣ୍ୟ ବୋଲି ଅଛି ଯାହା ସଂସାର ମଧରେ
ଶ୍ରେଷ୍ଠ ଅଟେ କିଏ କହ ତାହାଙ୍କ ମଧରେ
ଧର୍ମର ମଧରେ ପୁଣି କିଏ ଅଟେ ସାର
ଯାହା ଆଚରିଲେ ମୋକ୍ଷ ଲାଭ କରେ ନର
ଅକ୍ଷୟ ସ୍ୱର୍ଗ ମିଳଇ କେଉଁ ପୁଣ୍ୟ କଲେ
ଲୋକ ମଙ୍ଗଳ ନିମନ୍ତେ କହ ତାହା ଭଲେ
ଏହିପରି ଧର୍ମ କଥା ବିଚାରି କହିବ
ବଡ଼ସାନ ସମସ୍ତଙ୍କ ସୁସାଧ ହୋଇବ
ଯାର ଆଚରଣ କଷ୍ଟ ନୁହଇ ବହୁତ
ଉଚିତ ସୁଫଳ ଲଭି ସର୍ବେ ହେବେ ମୁକ୍ତ
ଜାତି ଧର୍ମ ନିର୍ବିଶେଷେ ତାର ଆଚରଣ
କରିବେ ସମସ୍ତେ କିଛି ନଥିବ ବାରଣ
କହ ସେ ଯଜ୍ଞ ଯାହାକୁ ଆଚରି ସଂସାରେ
ଉଚ୍ଚ ନୀଚ ସର୍ବେପୁଣ୍ୟ ଲଭିବେ ଅଚିରେ
ଯାହା କଲେ ସ୍ୱର୍ଗେ ମଧ ଯେବେ ଯିବନରେ
ପୂଜିବେ ସନ୍ତୋଷ ତାକୁ ସେଠାରେ ଅମର
ଆହେ ଋଷି ଆମ୍ଭଠାରେ ହୋଇ ସୁପ୍ରସନ୍ନ
କହ ଯାହା ଭବେ ସର୍ବେ କରିବେ ପାଳନ
ସେ ପ୍ରାର୍ଥନା ଶୁଣି ବ୍ୟାସ ବିପ୍ର ମାନଙ୍କର
କହିଲେ ଯା ପଞ୍ଚାଖ୍ୟାତ ନାମ ଅଟେ ତାର
ଏ ପାଞ୍ଚରୁ ଏକ ଯେବେ ନର କରିପାରେ
ସନ୍ଦେହ ନଥାଏ କିଛି ତ ମୋକ୍ଷ ଲାଭରେ
ଶେଷେ ସ୍ୱର୍ଗପୁରେ ତାର ହୁଅଇ ନିବାସ
ଇହଲୋକେ ସେହି ଲାଭ କରେ ଦିବ୍ୟଯଶ
ଅଟନ୍ତି ଏ ପାଞ୍ଚ ଶ୍ରେଷ୍ଠ ସମସ୍ତ ଯଜ୍ଞରେ
ଏଥିରେ ସନ୍ଦେହ କିଛି ନଧର ଚିତ୍ତରେ
ଭକ୍ତିରେ ପିତାମାତାଙ୍କୁ କରିବ ପୂଜନ
ସେବାରେ ସନ୍ତୁଷ୍ଟ କରୁଥିବ ତାଙ୍କ ମନ
ଅର୍ଚ୍ଚନା କରିବ ଅନନ୍ଦରେ ସ୍ୱପତିର
କରିବ ସଭିଙ୍କଠାରେ ସମ ବ୍ୟବହାର
ହୋଇବ ସେ ବ୍ୟବହାର ପ୍ରେମ ଧରେ ଯୁକ୍ତ
ନ ହୋଇବ କେବେହେଲେ ମିତ୍ରଦ୍ରୋହେରତ
ଭକ୍ତି କରିବ ବିଷ୍ଣୁଙ୍କୁ ନିଷ୍କାମ ଭାବରେ
ଯାଖ୍ୟାତି ଅଛି ଅନନ୍ୟ ଭକତି ନାମରେ
ସବୁ ଯଜ୍ଞ ମଧେ ଶ୍ରେଷ୍ଠ ଅଟେ ଏହିପାଞ୍ଚ
ବନା କଷ୍ଟେ ହୁଏ ସାଧ ହୋଇଣ ସୁସଞ୍ଚ
ଜାତି ଧର୍ମ ବର୍ଣ୍ଣଭେଦ ଏହା ପାଳନରେ
ବାରଣ ନଥାଏ ସର୍ବେ ପାଳିବେ ସୁଖରେ
ଅଭୁତ ଫଳ ଏଥିରୁ ସମସ୍ତେ ଲଭିବେ
ଏହା ସମ ଯଜ୍ଞ ଆଉ କିଛି ନାହିଁ ଭବେ
ମାତ ପିତାଙ୍କ ଅର୍ଚ୍ଚନା ଅଟଇ ପ୍ରଧାନ
ସବୁଧର୍ମ ସିଦ୍ଧି ତହୁଁ ଲାଭକରେ ଜନ
ତହୁଁଯାହା ସିଦ୍ଧିମିଳେ ତା ସମ ବିଶ୍ୱରେ
କଦାପି ନ ମିଳେ ଅନ୍ୟ ଧର୍ମାଚରଣରେ
ପିତା ଧର୍ମ ପିତା ସ୍ୱର୍ଗ ତପ ଅଟେ ପିତା
ପିତାଙ୍କ ସନ୍ତୋଷେ ତୁଷ୍ଟ ସମସ୍ତ ଦେବତା
ସେବାରେ ଗୁଣରେ ପିତୃ ସନ୍ତୋଷ ଯେ କରେ
ଗଙ୍ଗାସ୍ନାନ ଫଳ ତାକୁ ନିତି ଘରେ ମିଳେ
ପିତ ସର୍ବ ଦେବମୟ ମାତା ସବୁତୀର୍ଥ
ତାଙ୍କୁ ସେବା କଲେ ନରହୁଅଇ କୃତାର୍ଥ
ତାଙ୍କର ପୂଜା କରିବ ତେଣୁ ଯତନରେ
ଜ୍ଞାନି ଯିଏ ନ କରିବ ହେଳା ଏ କର୍ମରେ
ସକାଳୁ ଉଠି ଯେ ସୁତ ଭକତି ଭାବରେ
ପିତାମାତାଙ୍କୁ ପ୍ରଥମେ ପ୍ରଦକ୍ଷିଣ କରେ
ସପ୍ତଦ୍ୱୀପା ମହୀ ପ୍ରଦକ୍ଷିଣ କଲା ଫଳ
ଲାଭହୁଏ ତାର ଏଥି ସନ୍ଦେହ ନ କର
ଯେହୁ ସ୍ୱଜାନୁ ପର୍ଯ୍ୟନ୍ତ ମଥାକରି ନତ
ନମେ ଅବା ତଳେ ଶୋଇ କରେ ଦଣ୍ଡବତ
ସବୁସୁଖ ଲାଭ ତାର ଅବଶ୍ୟ ହୁଅଇ
ବିପଦ ଆପଦ ତାକୁ କେବେ ନ ପଡ଼ଇ
ମାତା ପିତା ପଦରଜ ଯେହୁ ବେଳେ ନିଏ
ଅବା ଚିତା କରି ଧରିଥାଏ କପାଳରେ
ତା ତହୁଁ ପବିତ୍ର କିଛି ସଂସାରରେ ନାହିଁ
ବାଧା ତାହାକୁ କଦାପି ଛୁଇଁ ନ ପାରଇ

ଯେଉଁ ସୁତ ପିତା ମାତା ପଦଧୌତ ଜଳ
ପାନକରେ ସେହି ନିତି ଲଭେ ପୁଣ୍ୟଫଳ
ଶତ କୋଟି ଜନ୍ମ ଯେତେ ପାପ କରିଥାଏ
ତାର ଫଳେ ସର୍ବ ପାପ ନାଶ ହୋଇଯାଏ
ମାନବ ମଧ୍ୟରେ ଧନ୍ୟ ନିଷ୍ପାପ ସେ ସୁତ
ପିତୃ ସେବାରେ ନିଜକୁ ଯେ କରିଛି ପୂତ
ପିତା ମାତାଙ୍କର ସେବା ଯେ ସୁତ କରଇ
ଗଣେଶ ସମାନ ସେହି ପଣ୍ଡିତ ହୁଅଇ
କଥାରେ କାର୍ଯ୍ୟରେ ପିତୃ ଅବଜ୍ଞା ଯେ କରେ
ପୁରୁଷ ମଧ୍ୟେ ଅଧମ ସେ ଅଟେ ସଂସାରେ
ପିତୃ ସନ୍ତୋଷ ନକରି ଅଧମ ଯେ ସୁତ
ଭୋଜନ କରଇ ତାର ପାପ ଅକଥିତ
ମୃତ୍ୟୁପରେ କୃମୀ ପୂର୍ଣ୍ଣ ନରକ କୁଣ୍ଡରେ
ପଡ଼ି ବହୁ କଳ୍ପଯାଏ ଦୁଃଖ ଭୋଗକରେ
ରୋଗଗ୍ରସ୍ତ, ବଳହୀନ, ବୁଦ୍ଧି ବୃତ୍ତିଶୂନ୍ୟ
ହୁଏପିତା ମାତାଙ୍କୁ ଯେ ନକରେ ପୋଷଣ
ତେଜି ତାଙ୍କୁ ଯେଉଁ ସୁତ ନିଜ ସୁଖ ପାଇଁ
ଆଡ଼ ହୁଏ ତେବେ ତାର ଭଲଗତି ନାହିଁ
ଚାଣ୍ଡାଳ ଯୋନୀରେ ପରେତାର ଜନ୍ମ ହୁଏ
ଦୁଷିତ କର୍ମ କରେ ସେ ବହୁ ଜନ୍ମ ଯାଏ
ଥାଏ ଯଦି ପୂର୍ବ ଜନ୍ମ ପୁଣ୍ୟ କିଛି ତାର
ଏହି ଦୋଷରୁ ସେ ସବୁ ହୋଇଯାଏ ଦୂର
ନ କିରଣ ନିଜ ପିତା ମାତା ଆରାଧନା
ଯେ କରେ ଅନ୍ୟ ଦେବତାମାନଙ୍କ ଅର୍ଚ୍ଚନା
ବିଶ୍ୱେ ବୁଲି କରୁ ତୀର୍ଥ ସେହି ଶହେ ଥର
ପିତୃସେବ ବିନା ତାହା ହୁଅଇଁ ନିଷ୍ଫଳ
କୀଟଠାରୁ ମଧ୍ୟ ତାର ଜନ୍ମ ଅଟେ ହୀନ
ସର୍ବଦା ମହା ରୌରବ ହୁଏ ତାର ସ୍ଥାନ
ମହିମା ଏପରି ଅଟେ ପିତୃ ଅର୍ଚ୍ଚନାର
ଧନ୍ୟ ସେହି ଭବେ ପିତୃସେବେ ଯେଉଁ ନର
ହେ ଜାନକୀପତି ରାଜ ମୋର ହୃଦୟରେ
ମୋ ବିଶ୍ୱାସ ହେଉ ଦୃଢ଼ ତୁମ୍ଭ ଶ୍ରୀ ପୟରେ
ଜନ୍ମେ ଜନ୍ମେ ଲଭି ପ୍ରଭୁ ତୁମ୍ଭ ନାମାମୃତ
ଗୋପୀନାଥମନେ ବାଣୀ ହେଉଥାଉ ପୁତ

ଇତି ଶ୍ରୀ ପଦ୍ମ ପୁରାଣେ ସୃଷ୍ଟିଖଣ୍ଡେ
ବ୍ୟାସ– ବିପ୍ର ସମ୍ବାଦେ
ପିତୃସେବା ମାହାତ୍ମ୍ୟ ବର୍ଣ୍ଣନୋ ନାମ
ଚତୁର୍ବିଂଶୋଧ୍ୟାୟଃ



## ପଞ୍ଚବିଂଶ ଅଧ୍ୟାୟ

### ତୁଳାଧାର ଚରିତ

ଏକଦିନେ ବଇକୁଣ୍ଠପତି ନାରାୟଣ
ଦ୍ୱିଜଗଣେ କରିଥିଲେ ଉପଦେଶ ଦାନ
ପଚାରିଲେ ନାମ ଦ୍ୱିଜୋ ତାଙ୍କ ପଦାବ୍ଜରେ
ଆହେ ପ୍ରଭୁ କହ ଦୟା ବହି ହୃଦୟରେ
ପ୍ରଭାବ ସହିତ ତୁଳାଧାରର ଚରିତ
ସମ୍ପୂର୍ଣ୍ଣଭାବେ ଶୁଣିବା ଆମ୍ଭର ଇପ୍‌ସିତ
ଯେବେ ପ୍ରଭୁ ଆମ୍ଭଠାରେ ଅଛି ଅନୁଗ୍ରହ
କହନ୍ତୁ ଶୁଣିବୁ ସର୍ବେ ଚିତ୍ତ କରି ଥୟ
ଶୁଣି ସେ ପ୍ରଶ୍ନ କହିଲେ ଦେବ ଭାଗବାନ
ଜଣେ ତୁମ୍ଭ ହୃଦ ଅଟେ ସତ୍ୟର ସଦନ
ଲୋଭର ସତ୍ତା ତୁମର ହୃଦୟରେ ନାହିଁ
ମାତ୍ସର୍ଯ୍ୟ ଯାଇଛି ତୁମ୍ଭଠାରୁ ଦୂର ହୋଇ
ସାମାନ୍ୟ ହେଲେ ହେଁ ପୂତ ଅଟେ ତୁମ୍ଭଦାନ
ପବିତ୍ରତା ଗୁଣେ ତାହା ଅଟଇ ମହାନ
ସଦକ୍ଷିଣା ଯଜ୍ଞ ନୁହେ ତୁଳ ତା ସଙ୍ଗରେ
ମୋକ୍ଷ ପଦ ଲାଭ ନିଶ୍ଚେ ହୁଏ ତାର ଫଳେ
ସତ୍ୟର ପ୍ରଭାବ ଦ୍ୱିଜେ ଅଟଇ ଏପରି
ଉଦିତ ହୁଅନ୍ତି ସୂର୍ଯ୍ୟ ସତ୍ୟେ ଅନୁସରି
ସତ୍ୟ ପ୍ରଭାବରୁ ବହେ ବାୟୁ ଅନୁକୂଳ
ସତ୍ୟ ସକାଶରୁ ସିନ୍ଧୁ ନଲଙ୍ଘଇ କୂଳ
ସ୍ୱ ମର୍ଯ୍ୟାଦା ନ କରେ ସେ କଦାପି ଲଙ୍ଘନ
ସତ୍ୟ ଯୋଗୁଁ କୂର୍ମ ଧରା କରିଛି ଧାରଣ
ସତ୍ୟଶକ୍ତି ବଳେ ନରେ ଅଛନ୍ତି କ୍ଷିତିରେ
ଅଛନ୍ତି ପର୍ବତେ ଜଣ ସତ୍ୟର ବଳରେ
ଜାଣ ସତ୍ୟଭ୍ରଷ୍ଟ ହୋଇଥାଏ ଯେଉଁନର
ପତନ ଅବସ୍ଥା ଉପଗତ ହୁଏ ତାର
ସର୍ବଦା ସତ୍ୟଭାଷଣ କରେ ଯେଉଁ ଜନ
ମିଥ୍ୟା କଥା ଯାର ମୁଖେ ଲଭିନାହିଁ ସ୍ଥାନ
ସତ୍ୟେ ଆଚରଣ ଯାର ହୁଏ ପ୍ରତିଷ୍ଠିତ
ଅସତମାର୍ଗରେ ଯାର ନ ଚଳଇ ଚିତ୍ତ

ମର ଦେହେ ସେହି ଲୋକ ସ୍ୱର୍ଗପୁରେ ଯାଇ
ଅଚ୍ୟୁତ ବୈକୁଣ୍ଠ ଭୋଗ ଅବଶ୍ୟ ଲଭଇ
ଶୁଣ ଦ୍ୱିଜଗଣ ସେହି ସତ୍ୟ ପ୍ରଭାବରେ
ମୁନିମାନେ ଲାଭ ମୋତେ କରନ୍ତି ଅଚିରେ
ଏହି ସତ୍ୟ ପ୍ରଭାବରେ ରାଜା ଯୁଧିଷ୍ଠିର
ମର ଦେହ ଧରି ଯାଇଥିଲେ ସ୍ୱର୍ଗପୁର
ଯେଣୁ ସଦା ସତ୍ୟ ଥିଲା ତାହାଙ୍କ ଆଶ୍ରୟ
ସତ୍ୟବ୍ରତ ପାଳନରେ ଯେଣୁ ଥିଲା ଲୟ
ଯୁଧିଷ୍ଠିର ରାଜା ସେହି ସତ୍ୟ ପ୍ରଭାବରେ
ଜିଣିଲେ ସହଜେ ଶତ୍ରୁ କୁଳକୁ ଯୁଦ୍ଧରେ
କଲେ ପୁଣି ଇହଲୋକେ ସ୍ୱଧର୍ମ ପାଳନ
ରାଜସୂୟ କରି କଲେ କୀର୍ତ୍ତି ଉପାର୍ଜନ
ଚଉଦ ହଜାର ବିପ୍ରେ ରାଜ ଉପଚାରେ
ପୂଜି ନିତି କରୁଥିଲେ ତୃପ୍ତ ଭୋଜନରେ
ଯେତେଧନ ଇଚ୍ଛା କରୁଥିଲେ ବିପ୍ରଗଣ
ଦେଇପାରୁଥିଲେ ତାହା ନହୋଇ କୃପଣ
ତାଙ୍କୁ ମାଗିବା ବ୍ରାହ୍ମଣ ନହୁଏ ନିର୍ଦ୍ଧନ
ସତ୍ୟର ଶକ୍ତି କେବଳ ଅଟେ ତା କାରଣ
ପ୍ରତିଜ୍ଞା ପାଳିଲେ ଘରେ ବସି ପୂର୍ବପରି
ନୁହେ ଅନ୍ୟ ମାତ୍ର ଏହା ସତ୍ୟ ବାହାଦୂରୀ
ସତ୍ୟର ମହିମା କେହି କହି ନ ପାରଇ
ଯାରଫଳେ ବଳୀରାଜା ହେଲେ ସୁରସାଇଁ
ପାତାଳରେ ବଳି ମାତ୍ର ତାର ସତ୍ୟବଳ
ରଖିଅଛି ନେଇ ମତେ କରି ଦ୍ୱାରପାଳ
ସକ୍ଷମ କେ କହିବାକୁ ପୁଣ୍ୟକର୍ମ ତାର
ଯା ଫଳେ ତା ଘରେ ମୁହିଁ ରହେ ନିରନ୍ତର
ଦୈତ୍ୟ ଜନମରୁ ପୂର୍ବେ ତାକୁ କରିପାର
ରଖିଛି ପାତଳେ କରି ଅମର ଈଶ୍ୱର
ସତ୍ୟରକ୍ଷା କରି ହରିଶ୍ଚନ୍ଦ୍ର ନରପତି
ମର ବେଶେ ସ୍ୱଦେହରେ ଧରି ଦିବ୍ୟ ଜ୍ୟୋତି
ବିଶୁଦ୍ଧ ହୋଇ ବସିଲେ ସତ୍ୟଲୋକେ ଯାଇ
ସତ୍ୟଶକ୍ତି ଲୋକ ମୁଖେ କହି ନ ହୁଅଇ
ଏହିପରି ରାଜା ସିଦ୍ଧ ମହର୍ଷି ବହୁତ
ଜ୍ଞାନୀଏ ସତ୍ୟସକାଶୁ ହୋଇଣ ମୁକତ
ଅକ୍ଷୟ ଧାମ ନିରତେ କରୁଛନ୍ତି ଭୋଗ
ସତ୍ୟଶକ୍ତି ଯୋଗୁଁ ଲଭି ଅଖଣ୍ଡ ସୁଯୋଗ
ତେଣୁ ସତ୍ୟରେ ଆଦର ରହିଛି ଯାହାର
ମୁକ୍ତି ପ୍ରାଇଁ ଅନ୍ୟଧର୍ମ ଲୋଡ଼ାନାହିଁ ତାର
ତୁଳାଧାର ନୃପଥିଲେ ମହାତ୍ମା ସେପରି
ନଥିଲା କେ ସତ୍ୟନିଷ୍ଠ ଭାବେ ତାଙ୍କପରି
ଅନୁପମ ଅଟେ ବିଶ୍ୱେ ପ୍ରତିଷ୍ଠା ତାଙ୍କର
ମନେରଖ ଅଟଇ ସେ ମହିମା ସତ୍ୟର
ଶତ ଅଶ୍ୱମେଧ ସଙ୍ଗେ ଯଦ୍ୟପି ତୁଳିବ
ସତ୍ୟନିଷ୍ଠା ତାହାଠାରୁ ନିଶ୍ଚେ ବଳିଯିବ
ହଜାରେ ଅଶ୍ୱମେଧରୁ ସତ୍ୟଅଟେ ଭାରି
ତା ସଙ୍ଗତେ ଦାନ ଜପ ଯାଗ ନୁହେଁ ସରି
ସତ୍ୟାଶ୍ରୟୀ ପକ୍ଷେ କିଛି ନୁହଇ ଦୁର୍ଲଭ
ଯା ଇଚ୍ଛା କରେ ସେ ତାହା ତାରହୁଏ ଲାଭ
ସତ୍ୟର ଶକ୍ତି ମୁଖରେ ନହୁଏ ବରଣୀ
ସତ୍ୟରୁ ବଉଳ ଧେନୁ ହେଲା ସ୍ୱର୍ଗଗାମୀ
ସତ୍ୟହେତୁ ମୋର ଧାମ ଲାଭକଲା ସେହି
ଜନ୍ମମରଣ ଚକ୍ରରୁ ଗଲା ମୁକ୍ତ ହୋଇ
ସତ୍ୟ କେବଳ ଅଟଇ ସାକ୍ଷୀ ଜୀବନର
ପରକାଳେ ହୁଏ ତାହା ଆଶ୍ରୟ ଲୋକର
ସତ୍ୟଛଡ଼ା ଅନ୍ୟ ଯାହାଅଛି ଜଗତରେ
ବିଚାରିଲେ ପରିଣତ ହୁଏ ତା ମିଛରେ
ଅଳ୍ପ ବହୁ ଅର୍ଥ ଅବା କ୍ରୟ ବିକ୍ରୟରେ
ପଣ୍ଡିତ ସେ ସତ୍ୟେ ଯେହୁ ଦୃଢ଼କରି ଧରେ
ସତ୍ୟ କେବଳ ଅଟଇ ସାକ୍ଷୀ ସ୍ୱକର୍ମର
ମିଥ୍ୟା ଯହିଁ ଥାଏ ତାହା କେବେ ନୁହେଁ ଭଲ
ସ୍ୱର୍ଗ ଲାଭ ହୁଏ ମାତ୍ର ସତ୍ୟ କଥନରେ
ମିଥ୍ୟାଶ୍ରୟୀ ନର ବାସ କରେ ନରକରେ
ସଭାରେ କହଇ ସତ୍ୟ ଯେଉଁ ବାବଦୁକ
ସଂସାରେ ଦୁର୍ଲଭ ଅଟେ ତାହାପରି ଲୋକ
ଅନ୍ତକାଳେ ବ୍ରହ୍ମଲୋକେ ହୁଏ ତାର ସ୍ଥାନ
ବହୁଯଜ୍ଞେ ମଧ୍ୟ ଯାହା ମିଳିବା କଠିନ
ସଭାରେ ପ୍ରକାଶେ ସତ୍ୟ ଯେହୁ ନିର୍ଭୟରେ
ଶତ ଅଶ୍ୱମେଧ ଫଳ ସେହି ଲାଭକରେ
ମିଛକହେ ଯେଉଁଲୋକ ଧନେ ରଖିଥିଲେ
ରୌରବ ନରକ ତାର ନିଶ୍ଚେ ହୁଏ ଲାଭ
ଜାଣ ଅଟଇ ତାହାର ସାକ୍ଷୀ ତୁଳାଧାର
ସତ୍ୟ ଯୋଗୁଁ ଲାଭକଲା ସ୍ୱର୍ଗେ ଦିବ୍ୟପୁର

ଦେବଗଣଙ୍କ ସର୍ବଦା ହେଲା ସେ ପୂଜିତ
ନୋହିଲା କୌଣସିମତେ ଯେଣୁ ଲୋଭଗ୍ରସ୍ତ
ଅତ୍ୟନ୍ତ ନିର୍ଲୋଭ ପୂର୍ବେ ଥିଲା ଶୂଦ୍ରଜଣେ
ଧନକୁ ସେ ଜୀବନରେ ଅତି ତୁଚ୍ଛମଣେ
ଶାକାନ୍ନରେ କଟୁଥାଏ ତାହାର ସମୟ
ଶୋଇବା ବେଳେ ସେ ନିଏ ଶିଳାର ଆଶ୍ରୟ
ଦିଖଣ୍ଡ ଗାମୁଛା ଥାଏ ପରିଧେୟ ତାର
ଆଣ୍ଠୁ ନ ଲୁଚଇ ଯେଣୁ ଅଳପ ଓସାର
ତଥାପି ପରଦ୍ରବ୍ୟରେ ନଥାଏତା ଆଶ
ସତ୍ୟକିନ୍ତୁ ରହିଥାଏ ସଦା ତାର ପାଶ
ଦିନେ ମୁହିଁ ଭଲଲୁଗା ଦୁଇଖଣ୍ଡ ନେଲି
ସେ ଶୂଦ୍ରର ଯିବା ବାଟେ ଗୁପ୍ତେ ରଖିଦେଲି
ଲତା ଉହାଡ଼ରେ ରହି କଲି ଅନୁମାନ
ଦେଖିଲା ଶୂଦ୍ର ସେ ବେନି ନୂତନ ବସନ
ଅନ୍ୟର ବସ୍ତ୍ର ତାହାକୁ ବିଚାରି ହୃଦରେ
ନ ଛୁଇଁ ଗଲା ସେ ଶୂଦ୍ର ତାହାର ମାର୍ଗରେ
ଦେଖି ତାହା ମନେ ମୋରହେଲା ଏ ବିଚାର
ନ ନେଲା ବା ଭାବି ତାକୁ ଅଳପ ମୂଲ୍ୟର
ତେଣୁ ଅନ୍ୟ ଦିନେ ଏକ ସୁନାମୁଣ୍ଡା ନେଇ
ହେ ବିପ୍ରେ ସେ ଶୂଦ୍ରଯିବା ମାର୍ଗେ ଦେଲିଥୋଇ
ନିକାଞ୍ଚନେ ନଈକୂଳେ ସେ ଅମୂଲ୍ୟଧନ
ଦେଖି ମଧ ସେଥିପ୍ରତି ନବଳାଇ ମନ
ବିଚାରିଲା ମନେ ଯେବେ ଏହାକୁ ମୁଁ ନେବି
ସଞ୍ଚିତ ସମସ୍ତ ଧର୍ମ ନଷ୍ଟ କରି ଦେବି
ଏହାଭାବି ଶୂଦ୍ରତାକୁ ନଛୁଇଁଲା କରେ
ପ୍ରବେଶ ହୋଇଲା ଘରେ ଅତି ଆନନ୍ଦରେ
ଦେଖି ତାହା ଦେବତାଏ ଧନ୍ୟ ଧନ୍ୟ କଲେ
ଭବେ ଯାପରି ଧାର୍ମିକ କେ ନାହିଁ କହିଲେ
କ୍ଷଣକ ବେଶେ ମୁଁ ତେବେ ତା ଘରକୁ ଗଲି
ଭୂତ ଭବିଷ୍ୟତ ସବୁ ତା ଆଗେ କହିଲି
ମୋପାଶେ ଭାରିଯା ତାର ଉପସ୍ଥିତ ହୋଇ
ପଚାରିଲା ଯେବେ ଶୂଦ୍ର କାର୍ଯ୍ୟ ଦେଲି କହି
କହିଲି ତୋହର ପତି ରତନ ଦେଖିଲା
ଆଣି ତାହାକୁ ସଙ୍ଗେ ଘରକୁ ଆସିଲା
ମୂଲ୍ୟ ସେ ଧନ ଯେବେ ଆଣିଥାନ୍ତା ଘରେ
ପୂର୍ଣ୍ଣହୋଇଥାନ୍ତା ଘର ସବୁ ବିଭବରେ

ଶୁଣି ତାହା ଶୂଦ୍ର ତାର ପତ୍ନୀ ସଙ୍ଗତରେ
ଡାକି ନେଇଗଲା ଏକ ନିଭୃତ ମନ୍ଦିରେ
କହିଲା ହେ ପ୍ରଭୁ ଶୁଣ ମୋହର ବଚନ
ଭାଗ୍ୟ ଜାଣ ଅକଣ୍ଟକ ନୁହେ କଦାଚନ
ଅତୁଳ ଐଶ୍ୱର୍ଯ୍ୟ ମଧ ଯାଏ କ୍ଷୟ ହୋଇ
ସତ କି ମିଛ ଏକଥା ଦିଅନ୍ତୁ ବୁଝାଇ
କ୍ଷପଣକରୂପେ ହସି କହିଲି ମୁଁ ତାକୁ
ତେଜିଲ କିପାଁ ବାଟରେ ପାଇଲ ଯାହାକୁ
ବାନ୍ଧବେ ସନ୍ତୋଷ କରି ନିଜେ ସୁଖୀ ହୋଇ
ସେ ଧନବଳେ ସଂସାରେ ଚଳିଥାନ୍ତି ଭାଇ
ଧନହୀନ ବନ୍ଧୁଙ୍କର ଦେଖୁଛତ ଗତି
ବଞ୍ଚିମଧ ନିତି ମୃତ୍ୟୁ ଦୁଃଖ ସେ ଭୋଗନ୍ତି
ଏଣୁ ସେ ରତନ ଆଣି ରହ ଅତି ସୁଖେ
ତୁମ୍ଭ ସୌର୍ଯ୍ୟେ ବୀର୍ଯ୍ୟୋମାନେ ପ୍ରଶଂସିବେଲୋକେ
କହିଲା ତା ଶୁଣି ଶୂଦ୍ର ଶୁଣ ଦ୍ୱିଜବର
ହୋଇଅଛି ବହୁ ଦିନୁ ଏ ବ୍ରତ ମୋହର
କାମନା ମୋହର ଏଥି କିଛି ମାତ୍ର ନାହିଁ
କେବେ କାହାଠାରେ ମୁହିଁ କ୍ରୋଧ ନ ହୁଅଇ
ଯେତେ ତୀର୍ଥ ଅଛି ସ୍ନାନ କଲି ସବୁଠାରେ
ହୃଦେ ସଦା ଥାଏ ଦୟା ସମସ୍ତ ପ୍ରାଣୀରେ
କାୟ ମନବାକ୍ୟେ କାରେ ହିଁସା ନ କରଇ
ଶୁଦ୍ଧ ସନ୍ତୋଷକୁ ମାତ୍ର ଧନ ବୋଲି କହି
ଏହାଠାରୁ ବଳି ସିଦ୍ଧି ନାହିଁ ଜଗତରେ
ଜପ ତପ ଯାଗଫଳ ଏଥୁ ସବୁ ମିଳେ
ନିଜେ କୃଷି କରି ଯଦି ସେଥିରେ ଚଳିବ
ଉତ୍ତମ ବୃତ୍ତିରେ ନିଶ୍ଚେ ଗଣ ତା ହୋଇବ
ଅମୃତ ମଣେ ହି ସମ ଅଟେ ଶାକାହାର
ସ୍ୱଶ୍ରମଲବ୍ଧେ ଜୀବିକା ଚଳୁଚି ଯାହାର
ପୁଣ୍ୟ ତୀର୍ଥେ ତପକଲେ ମିଳେ ଯେଉଁ ଫଳ
ଉପବାସରେ ସେ ଫଳ ମିଳଇ କେବଳ
ସୁଭାଗ୍ୟ ଅଟେ ମୋହର ପରମ ସନ୍ତୋଷ
ଅଳ୍ପ ହେଉ ପଛେ ଦାନ କରେ ମୁଁ ଅବଶ୍ୟ
ପରସ୍ତ୍ରୀ ଦେଖିଲେ ମଣେ ନିଜ ମାତାପରି
ପରଦ୍ରବ୍ୟ ମୋ ଦୃଷ୍ଟିରେ ଟେଳା ସଙ୍ଗେସରି
ଶ୍ରେଷ୍ଠ ବ୍ରତ ଏହା ମୋର ଅଟେ ଦ୍ୱିଜବରେ
ଚିତ୍ତରେ ଏଥିରେ ତିଳେ ସଂଶୟ ନଧର

ଭୟଙ୍କର ଅଟେ ସର୍ପ ସମ ପରନାରୀ
ଏ ଭାବନା ଶ୍ରେଷ୍ଠ ଯଜ୍ଞ ଅଟଇ ମୋହରି
କହିଲିତ ମୋର କଥା ଆହେ ଗୁଣାକର
ତେଣୁ ସେ ସ୍ୱର୍ଗରେ ନାହିଁ ଲୋଡ଼କିଛି ମୋର
ତିନିବାର ସତ୍ୟକରି କହେ ଏଣୁ ମୁହିଁ
ତ୍ରିକାଳେ ମୁଁ ସେ ପଦାର୍ଥ କେବେ ନେବିନାହିଁ
ଜାଣି ଜାଣି ପଙ୍କମଧ୍ୟେ ପାଦକୁ ରଖିଣ
ଧୋଇବାରେ ପୁଣି କହ କିଅଛି କାରଣ
ପ୍ରଥମରୁ ପଙ୍କେ ପାଦ ନ ଦେବାର ଭଲ
ପାଦ ଦେଲେ ସିନା ପରେହେବ କଲବଲ
କହିଲେ ବୈକୁଣ୍ଠ ପତି ଶୁଣ ଦ୍ୱିଜଗଣ
ଯେକ୍ଷଣି ଶେଷ ହୋଇଲା ଶୂଦ୍ରର କଥନ
ଆକଶରୁ ପୁଷ୍ପବୃଷ୍ଟି ହେଲା ତାରଶିରେ
ଗତ୍ର ମଧ୍ୟ ଛାଇହେଲା ସ୍ୱର୍ଗ ସୁମନରେ
ଦୁନ୍ଦୁଭି ସ୍ୱର୍ଗରେ ବଜାଇଲେ ଦଇବତ
ନାଚିଲେ ମୋଦେ ଅପ୍ସରା ଗାଇଣ ସଙ୍ଗୀତ
ଗନ୍ଧର୍ବେ ଗାଇଲେ ଗୀତ ଅତି ହର୍ଷଭରେ
ତେବେ ସ୍ୱର୍ଗୁ ଯାନ ଅବତରିଲା ଧରାରେ
କହିଲେ ଦେବେ ସେ କାଳେ ସେ ଶୁଦ୍ରକୁ ଯାଇ
ହ୍ରସଯାନେ ସ୍ୱର୍ଗୁ ଆସିଅଛିତୁମ ପାଇଁ
ସତ୍ୟଲୋକେ ଯାଇତୁମ୍ଭେ ହେବ ଏବେ ସ୍ଥିତ
ଭାଗ୍ୟ ଭୋଗକର ତହିଁ ଯଥା ଶଚୀକାନ୍ତ
ଦଶରଥ ସୁତ ପ୍ରଭୁ ଜାନକୀ ରମଣ
ରକ୍ଷାକରି ପ୍ରଭୁ ମୋର ବିନୀତ ବଚନ
ମୋ ହୃଦୟ ହେଉ ପ୍ରଭୁ ସଦା ତୁମବାସ
ଯେଣୁ ଗୋପୀନାଥ ପ୍ରଭୁ ଅଟେ ତବ ଦାସ

ଇତି ଶ୍ରୀପଦ୍ମ ପୁରାଣେ ସୃଷ୍ଟି ଖଣ୍ଡେ
ନାରାୟଣ ବିପ୍ର ସମ୍ବାଦେ
ତୁଳାଧର ଚରିତ୍ର ବର୍ଣ୍ଣନୋ ନାମ
ପଞ୍ଚବିଂଶୋଧ୍ୟାୟଃ

❑

## ଷଡ଼ବିଂଶ ଅଧ୍ୟାୟଃ

### ଧାତ୍ରୀ ଓ ତୁଳସୀ ମାହାତ୍ମ୍ୟ

ମହେଶ୍ୱର ଦିନେ ବସିଥିଲେ ଏକାନ୍ତରେ
ପ୍ରବେଶ ହୋଇଲେ ସ୍କନ୍ଦ ତେବେସେହିଠାରେ
ପଚାରିଲେ ଆହେ ପ୍ରଭୁ କରୁଣା ସାଗର
ବୃକ୍ଷଙ୍କ ମଧ୍ୟେ ପବିତ୍ର କେଉଁ ତରୁବର
ଆହେ ବିଶ୍ୱମ୍ଭର ଜଗତର ହିତପାଇଁ
ଦୟାକରି ସେହିକଥା କହନ୍ତୁ ବୁଝାଇ
ସ୍କନ୍ଦଙ୍କର ସେହି ପ୍ରଶ୍ନେ ପାର୍ବତୀଙ୍କ ବର
କହିଲେ କହିବି ଶୁଣ ଶୁଣ ସା ଧାତ୍ରୀର
ଲୋକ ବିଶ୍ରୁତ ଅଟଇ ଭବେ ଧାତ୍ରୀ ଫଳ
ତିଳେ ହେଁ ସଂଶୟ ମନେ ଏଥିରେ ନଧର
ନର ବା ନାରୀ ଧାତ୍ରୀ ଯେ କରଇ ରୋପଣ
ସମସ୍ତ ପାପରୁ ସେହି ହୁଅଇ ମୋଚନ
ଭବ ବନ୍ଧନରୁ ସେହି ମୁକ୍ତ ହୋଇଯାଏ
ସମସ୍ତ ଜନ୍ମର ପାପ ତାର ଭସ୍ମହୁଏ
ଅଟେ ପୁଣି ଧାତ୍ରୀଫଳ ଆୟୁବୃଦ୍ଧି କର
ଯେ ଖାଏ ଐଶ୍ୱର୍ଯ୍ୟେପୂର୍ଣ୍ଣହୁଏ ତାର ଘର
ଯାହାଘରେ ଧାତ୍ରୀ ତରୁ ଅବା ଫଳ ଥାଏ
ଭୂତ ପ୍ରେତଙ୍କ ଉତ୍ପାତ ସେ ଘରେ ନ ରହେ
ଏକାଦଶୀରେ ଯେ ଧାତ୍ରୀ କରଇ ଭକ୍ଷଣ
ବହୁଗୁଣେ ପୁଣ୍ୟତାର ହୁଅଇ ବର୍ଦ୍ଧନ
ଗୟା ଗଙ୍ଗା କାଶୀ ଆଦି ପୁଷ୍କର ତୀର୍ଥରେ
ସ୍ନାନ କରିବ ପୁଣ୍ୟ ସେ ହେଲେ ଲାଭକଲେ
ଶୁକ୍ଳ କୃଷ୍ଣପକ୍ଷେ ବେନି ଏକାଦଶୀ ଦିନ
ଧାତ୍ରୀ ତରୁ ମୂଳେ ଯେହୁ କରେ ଜଳଦାନ
ତାର ବହୁ ଜନ୍ମ ପାପ ହୋଇଯାଏ କ୍ଷୟ
ଅନ୍ତେ ବଇକୁଣ୍ଠ ପୁର ଲଭେ ସେ ନିଶ୍ଚୟ
ଧାତ୍ରୀ ଫଳ ଘେନି ଯେହୁ ନିତିକରେ ସ୍ନାନ
ଅବା ଯେ ପ୍ରତ୍ୟହ ଧାତ୍ରୀ କରଇ ଭକ୍ଷଣ
ସବୁବେଳେ ଧାତ୍ରୀଫଳ ଯେହୁ ଧରିଥାଏ
ନିଃସନ୍ଦେହ ଏହା ସେହି ବିଷ୍ଣୁଲୋକ ପାଏ
ଧାତ୍ରୀ ଫଳହାରେ ଯେହୁ ଉପବାସ କରେ
ସପ୍ତ ଜନ୍ମ ପାପ ତାର ଚାଲିଯାନ୍ତି ଦୂରେ
ଏଣୁ ବିଜ୍ଞ ଯେହୁ ହେବ ଏପରି କରିବ
ସ୍ନାନହାରେ ଅଂଳାଫଳେ କେବେ ନ ଭକ୍ଷିବ
ଅକ୍ଷୟ ସ୍ୱର୍ଗ ନିବାସ ଲାଭହୁଏ ତାର
ଧାତ୍ରୀ ସେବନ ଅଭ୍ୟାସ ଅଛଇ ଯାହାର
ବିଷ୍ଣୁଙ୍କ ସାଯୁଜ୍ୟ ଲାଭ ସେ ନର କରଇ
ଅଭ୍ୟାସ କରି ଏହାକୁ ଯେବେ ସେ ପାଳଇ

ସବୁମନ୍ତେ ତେଣୁ ତୁମେ କରିଣ ଯତନ
ମନେରଖି କର ଧାତ୍ରୀ ବ୍ରତକୁ ପାଳନ
ସୁରକ୍ଷା ଯେ କରେ କେଶ ଅଂଳା ତେଲଦେଇ
ମାତୃ ସ୍ତନ ସଙ୍ଗେ ଆଉ ତା ଭେଟ ନୁହଇ
ଧାତ୍ରୀ ଦର୍ଶନ ସ୍ପର୍ଶନ ନାମ ଉଚ୍ଚାରଣ
ମନେରଖ ଅଟେ ନର ମୁକ୍ତିର କାରଣ
ଯେ କରେ ତାପ୍ରତି ତୁଷ୍ଟ ହୋଇ ନାରାୟଣ
ଦିବ୍ୟଗତି ଶେଷେ ତାକୁ କରନ୍ତି ପ୍ରଦାନ
ସୁପବିତ୍ର ଧାତ୍ରୀ ଫଳ ଥାଏ ଯେଉଁଠାରେ
ଲକ୍ଷ୍ମିନାରାୟଣ ବାସ କରନ୍ତି ସେଠାରେ
ଯହିଁ ଲକ୍ଷ୍ମୀନାରାୟଣ ବ୍ରହ୍ମା ଥାନ୍ତି ତହିଁ
ଅଳାଫଳ ତେଣୁ ଖୋଜି ରଖ ଘରେ ନେଇ
ଅଲକ୍ଷ୍ମୀ ନରହେ ତହିଁ ଧାତ୍ରୀ ଯହିଁ ଥାଏ
ଦେବଙ୍କର ଆଗମନ ସେସ୍ଥାନକୁ ହୁଏ
ନୈବେଦ୍ୟ କରି ଯତନେ ଦେଲେ ଧାତ୍ରୀଫଳ
ପ୍ରଦାନ କରନ୍ତି ବିଷ୍ଣୁ ତୋଷେ ଯାଗଫଳ
ଦେହରେ ଅଳା ଲଗାଇ ସ୍ନାନ କଲାପରେ
ଅଭିଷ୍ଟ ମିଳଇ ମାଧବଙ୍କ ଅର୍ଚ୍ଚନାରେ
ଧାତ୍ରୀଫଳେ ବିଷ୍ଣୁଙ୍କୁ ଯେ କରଇ ପୂଜନ
ଲାଭହୁଅଇ ତାହା କୋଟିଏ ସୁବର୍ଣ୍ଣ
ଯେ ଗାରୁଡ଼ ମୁନିଙ୍କର ହୁଅଇ ଯେ ଗତି
ଧାତ୍ରୀ ସେବାକଲେ ସ୍କନ୍ଦ ମିଳେ ତା ଝଟତି
ବହୁ ତୀର୍ଥ ସ୍ନାନ ଅବା ବହୁ ବ୍ରତ ଫଳ
ଧାତ୍ରୀ ସେବକକୁ ତାହା ମିଳଇ ଚଞ୍ଚଳ
ସଗଣ ଦେବୀ ଦେବତା ହୋଇ ସୁପ୍ରସନ୍ନ
ସମ୍ମୁଖକୁ ଆସି ବର କରନ୍ତି ପ୍ରଦାନ
ରାକ୍ଷସ ପିଶାଚ ଦୁଷ୍ଟ ଗ୍ରହଛନ୍ତି ଯେତେ
ଧାତ୍ରୀ ସେବିବା ଲୋକକୁ ଡ଼ରନ୍ତି 'ସମସ୍ତେ'
ସବୁଯଜ୍ଞ କର୍ମେ ଲୋଡ଼ା ଆମଳକୀ ଫଳ
ଧାତ୍ରୀ ବିନା ସବୁ କର୍ମ ହୁଅଇ ନିଷ୍ଫଳ
ଏହି କଥା ମାତ୍ର ସୁତ ମନେ ରଖିଥିବ
ଧାତ୍ରୀ ଫଳରେ ସୂର୍ଯ୍ୟଙ୍କୁ ପୂଜା ନ କରିବ
ତେଣୁ ରବିବାରେ ଅବା ସପ୍ତମୀ ତିଥିରେ
ଛୁଇଁବ ଅଳାଫଳ କଦାପି ଭୂଲରେ
ଜଗତର ପତ୍ର ପୁଷ୍ପ ଯେତେ ଅଛି ରହି
ସେ ସବୁ ମଧ୍ୟେ ତୁଳସୀ ଉତ୍କୃଷ୍ଟ ଅଟଇ

ସର୍ବ କାମପ୍ରଦା ବିଷ୍ଣୁପ୍ରିୟା ସେ ବୈଷ୍ଣବୀ
ମୋକ୍ଷ ଲାଭ କରେ ନର ତୁଳସୀକୁ ସେବି
ତୁଳସୀ ଅଟଇ ସର୍ବ ଲୋକ ଶୁଭକର
ତାକୁ ସେବି ସବୁ ଭାଗ୍ୟ ଲାଭକରେ ନର
ତୁଳସୀକୁ ଯେହୁ ସେବା କରେ ବହିଭାବ
ଅକ୍ଷୟ ସ୍ୱର୍ଗ ତାହାର ହୁଅଇ ସୁଲଭ
ସର୍ଜିଲେ ତୁଳସୀ ପୂର୍ବେ ବିଷ୍ଣୁ ଦଇବତ
ବିଚାରିଣ ହୃଦୟରେ ସର୍ବଲୋକ ହିତ
ପ୍ରତିଷ୍ଠିତ ସବୁ ଧର୍ମ ତୁଳସୀର ଦଳେ
ନଧର ମନେ ସନ୍ଦେହ ସ୍କନ୍ଦ ଏଥି ତିଳେ
ଜଳ ତୁଳସୀରେ ଯେହୁ ପୂଜଇ ଶ୍ରୀହରି
ବିଷ୍ଣୁଙ୍କ ସଯୁଜ୍ୟ ଲାଭ ହୁଅଇ ତାହାରି
ପତ୍ରଠାରୁ ମଞ୍ଜରୀର ମାହାତ୍ମ୍ୟ ଦିଗୁଣ
ତାର ପୁଣ୍ୟଫଳ ବାକ୍ୟେ ନୋହିବ ବର୍ଣ୍ଣନ
ବିଷ୍ଣୁ ମନ୍ଦିର ଆଗରେ ତୁଳସୀ ବଣରେ
ବ୍ରହ୍ମା ଲକ୍ଷ୍ମୀଥାନ୍ତି ସଦା ଦେବଙ୍କ ମଙ୍ଗରେ
ଅକୁଣ୍ଠ ଚିତ୍ତରେ ତେଣୁ ବୃକ୍ଷ ତୁଳସୀର
ମନେକରି କରୁଥିବ ପୂଜା ନିରନ୍ତର
ପ୍ରେତ ପିଶାଚ କୁଷ୍ମାଣ୍ଡ ଭୂତାଦି ଦଇତ
ଯେବେ ଥିବେ ସେ ସ୍ଥାନରୁହେବେ ତିରୋହିତ
ଅଲକ୍ଷ୍ମୀ ଡାକିନୀ ଆଦି ଯେତେ ମାତୃଗଣ
ତୁଳସୀକୁ ଦେଖି ଭୟେ ପଳାନ୍ତି ବହନ
ଜଗତରେ ପତ୍ର ପୁଷ୍ପ ଯେତେ ଛନ୍ତି ରହି
ସେ ସବୁ ମଧ୍ୟେ ତୁଳସୀ ଉତ୍କୃଷ୍ଟ ଅଟଇ
ସର୍ବକାମପ୍ରଦା ବିଷ୍ଣୁପ୍ରିୟା ସେ ବୈଷ୍ଣବୀ
ମୋକ୍ଷ ଲାଭ କରେ ନର ତୁଳସୀକୁ ସେବି
ତୁଳସୀ ଅଟଇ ସର୍ବ ଲୋକ ହିତକର
ତାକୁ ସେବି ସବୁ ଭୋଗ ଲାଭ କରେ ନର
ତୁଳସୀକୁ ଯେହୁ ସେବା କରେ ବହି ଭାବ
ଅକ୍ଷୟ ସ୍ୱର୍ଗ ତାହାର ହୁଅଇ ସୁଲଭ
ରୋପିଲେ ତୁଳସୀ ପୂର୍ବେ ବିଷ୍ଣୁ ଦଇବତ
ବିଚାରିଣ ହୃଦୟରେ ସର୍ବ ଲୋକ ହିତ
ପ୍ରତିଷ୍ଠିତ ସବୁଧର୍ମ ତୁଳସୀର ଦଳେ
ନଧର ମନେ ସନ୍ଦେହ ସ୍କନ୍ଦ ଏଥି ତିଳେ
ଲକ୍ଷ୍ମୀ ବିଷ୍ଣୁ ସହ ମାନ୍ୟ ଅଛି ଯଥା ମୋର
ସେହି ମାନ୍ୟ ଲୋକେ ରହିଅଛି ତୁଳସୀର

ତୁଳସୀପତ୍ର ଗୋଟିକୁ ନ ମଣିବ ସାନ
ଶହେ ସ୍ୱର୍ଣ୍ଣ ମୁଦ୍ରା ସଙ୍ଗେ ତା ମୂଲ୍ୟ ସମାନ
ସୁବାସ ରହିଛି ଯାହା ତୁଳସୀ ପତ୍ରର
ନାହିଁ ତାହା ଅନ୍ୟ କେଉଁ ପତ୍ର ବା ଫୁଲରେ
ସନ୍ତୁଷ୍ଟ ତୁଳସୀ ଦଳେ ଦୈତ୍ୟର ଯେପରି
ଅନ୍ୟ କେଉଁ ପତ୍ରେ ପୁଷ୍ପେ ନୁହନ୍ତି ସେପରି
ତୁଳସୀରେ ଯେହୁ ପୂଜା କରେନାରାୟଣ
ନାରାୟଣପୁରେ ସେହି ଲଭିଥାଏ ସ୍ଥାନ
ଦାନ ଯଜ୍ଞ ଜ୍ଞାନ କର୍ମ ଇତ୍ୟାଦି କାର୍ଯ୍ୟରେ
ତୁଳସୀ ଦଳ ଯୋଜିତ ହେଲେ ଉଚିତରେ
ସୁଖ ଭାଗ୍ୟ ଯଶଶୀରୀ କୁଳଶୀଳ ଧର୍ମ
ରାଜ୍ୟପୁତ୍ର କଳତ୍ରାଦି ହୁଏ ବିବର୍ଦ୍ଧନ
ବିଜ୍ଞାନ ବେଦ ବିଜ୍ଞାନେ ପ୍ରବୀଣ ସେ ହୁଏ
ତୁଳସୀ ଦଳେ ଯେ ବିଷ୍ଣୁ ପୂଜା କରୁଥାଏ
ଅଟନ୍ତି ଗଙ୍ଗା ଯେପରି ପରମ ପାବନ
ପବିତ୍ରରେ ସେହିପରି ତୁଳସୀକୁ ଘେନ
ସେ ତୁଳସୀ ଦଳ ଜଳେ ପୂଜେ ଯେ ଶ୍ରୀହରି
ବିଷ୍ଣୁଙ୍କ ସଂଯୁଜ୍ୟ ଲାଭ ହୁଅଇ ତାହାରି
ପତ୍ରଠାରୁ ମଞ୍ଜରୀର ମହାତ୍ମ୍ୟ ଦ୍ୱିଗୁଣ
ତାର ପୁଣ୍ୟଫଳ ବାକ୍ୟେ ନୋହିବ ବର୍ଣ୍ଣନ
ବିଷ୍ଣୁମନ୍ଦିର ଆଗରେ ତୁଳସୀ ବଣରେ
ବ୍ରହ୍ମା ଲକ୍ଷ୍ମୀଥାନ୍ତି ତହିଁ ଦେବଙ୍କ ସଙ୍ଗରେ
ତୁଳସୀ ଦେବୀଙ୍କୁ ତେଣୁ ଅକୁଣ୍ଠ ଚିତ୍ତରେ
ନିରନ୍ତର ପୂଜା କରୁଥିବ ସେହିଠାରେ
ପ୍ରେତ ପିଶାଚ କୁଷ୍ମାଣ୍ଡ ଭୂତାଦି ଦଇତ
ଯେବେଥିବେ ସେ ସ୍ଥାନରୁ ହେବେ ତିରୋହିତ
ଅଲକ୍ଷ୍ମୀ ଡାକିନୀ ଆଦି ଯେତେ ମାତୃଗଣ
ତୁଳସୀ ଦର୍ଶନେ ଭୟେ ପଳାନ୍ତି ବହନ
ବ୍ରହ୍ମହତ୍ୟା ଆଦିଠାରୁ ଯେ ପାପ ଅଧିକ
ପାପଜବ୍ୟାଧି ଯେ ଅଟେ ପରାଣ ଘାତକ
ତୁଳସୀର ସେବା ଫଳେ ସର୍ବେ ହୋନ୍ତି କ୍ଷୟ
ମନରେ ଏଥିରେ ତିଳେ ନମଣ ସଂଶୟ
ବିଷ୍ଣୁପୂଜା ଅର୍ଥେ ଯେହୁ ତୁଳସୀ ରୋପଇ
ବିଶ୍ୱେ ଶତମୁଖେ ତାର ପୁଣ୍ୟ ନୁହେଁ କହି
ବିଷ୍ଣୁଙ୍କ ଚରଣେ ଅବା ବିଷ୍ଣୁ ପ୍ରତିମାରେ
ଭକ୍ତିଭରେ ଅବା ଶାଳଗ୍ରାମ ଶିଳାପରେ
ତୁଳସୀ ଯେହୁ ଚଢ଼ାଉଥାଏ ପ୍ରତିଦିନ
ହୋଇଯାଏ ନିଶ୍ଚେ ସେହି ବିଷ୍ଣୁଙ୍କ ସମାନ
ତୁଳସୀ ପ୍ରସାଦ ବିଷ୍ଣୁ ପୂଜନ ଶେଷରେ
ଯେହୁ ଆଣି ସ୍ୱଶିରରେ ଭକ୍ତିଭରେ ଧରେ
ହେଲେ ସମସ୍ତ ପାପରୁ ସେ ହୁଏ ମୁକତ
ନ୍ୟନ୍ତି ତାକୁ ବିଷ୍ଣୁ ଦୂତେ କରିଣ ସ୍ୱାଗତ
କଳିରେ ତୁଳସୀବୃକ୍ଷ ଯେ କରେ ରୋପଣ
ପୂଜି ଶିରେ ଧରେ ଗୁଣ କରିଣ କୀର୍ତ୍ତନ
ତୁଳସୀ ହରଣ କରି ସବୁ ପାପ ତାର
ସାଯୁଜ୍ୟ ମୁକ୍ତି ତାହାଙ୍କୁ ଦିଅନ୍ତି ଆବର
ଆଚରି ନିଜେ ଯେ ପରେ ଦିଏ ଉପଦେଶ
ଅକ୍ଷୟ ବୈକୁଣ୍ଠପୁର ସେ ଲଭେ ଅବଶ୍ୟ
ଶ୍ରୀହରି ଭକ୍ତ ଅଟଇ ଭବେ ଯେଉଁ ନର
ଜାଣ ସୁତ ଅତିପ୍ରିୟ ସେ ଅଟେ ମୋହର
ସବୁ ଦେବ ଦେବୀଙ୍କର ପ୍ରିୟ ଅଟେ ସେହି
ସଂଶୟ ଏହି କଥାରେ ତିଳେମାତ୍ର ନାହିଁ
ଶ୍ରାଦ୍ଧେ ଯଜ୍ଞେ ଯେ କରଇ ତୁଳସୀ ସେବନ
ସବୁ ସିଦ୍ଧି ଲାଭକରି ସେହୁ ହୁଏ ଧନ୍ୟ
ତେଣୁ ତୁମପ୍ରତି ଏହି ଉପଦେଶ ମୋର
ଭକ୍ତିଭରେ କର ସେବା ନିତି ତୁଳସୀର
ସେବାକରେ ତୁଳସୀକୁ ଯେ ନର ଭକ୍ତିରେ
ସେଥିରୁ ସେ ସବୁ ପୁଣ୍ୟ ଫଳ ଲାଭ କରେ
ସବୁ ଦେବ ଦେବୀ ସେବା ଫଳ କରେ ଲାଭ
ଅନ୍ତେ ସେ ଲଭଇ ପଦ-ଅଟେ ଯେ ଦୁର୍ଲଭ
ପ୍ରାଣ ପ୍ରୟାଣ ସମୟେ ଯେ ଦେଖେ ତୁଳସୀ
ଭସ୍ମ ହୁଏ ତାର ବହୁ ଜନ୍ମ ପାପରାଶି
ଆହେ ରାମ କଉଶଲ୍ୟା ହୃଦାନନ୍ଦ କର
ରାଜ ମୋର ହୃଦେ ପ୍ରଭୁ ରଜନୀ ବାସର
ମୋ ରସନା ହେଉ ଧନ୍ୟ ଗାଇ ତୁମ ନାମ
ଗୋପୀନାଥର ପ୍ରାର୍ଥନା ବାରେ ପ୍ରଭୁ ଶୁଣ

ଇତି ଶ୍ରୀ ପଦ୍ମ ପୁରାଣେ ସୃଷ୍ଟି ଖଣ୍ଡେ
ଧାତ୍ରୀ ତୁଳସୀ ମହିମା ବର୍ଣ୍ଣନୋ-ନାମ
ଷଡ଼ବିଂଶୋଧ୍ୟାୟଃ

□

# ସପ୍ତବିଂଶୋଧ୍ୟାୟଃ

## ଗଙ୍ଗାମାହାତ୍ମ୍ୟ କଥନ

ଭକ୍ତିଭରେ ବିପ୍ରଗଣ ଯେବେ ପଚାରିଲେ
ଶୁକତାତ ହର୍ଷଭରେ ତାହାଙ୍କୁ କହିଲେ
ହେ ବିପ୍ରେ ବିଚାରକର ଅଳ୍ପ ଏ ଜୀବନ
ନରନାରୀ ପାପ ଗଙ୍ଗା କରନ୍ତି ମୋଚନ
କ୍ଷୟହୁଏ ପାପ ଗଙ୍ଗା ନାମ ସ୍ମରଣରେ
ମହତ ପାତକ କ୍ଷୟ ନାମ କୀର୍ତ୍ତନରେ
ସ୍ନାନକରି ଗଙ୍ଗାରେ ଯେ କରେ ଜଳପାନ
ପିତୃଙ୍କ ସନ୍ତୋଷ ପାଇଁ କରେ ଯେ ତର୍ପଣ
ତା ସବୁ ପାତକ ହୁଏ ଦିନେ ଦିନେ କ୍ଷୟ
ମନରେ ଏଥିରେ ତିଳେ ନଧର ସଂଶୟ
ଶୁଷ୍କତୃଣ ଅବା ତୁଳା କୁଢ଼େ ଅଗ୍ନିପରି
ପାପ ଭସ୍ମହୁଏ ସ୍ପର୍ଶ ମାତ୍ରେ ଗଙ୍ଗାବାରି
ଗଙ୍ଗାବାରୀସ୍ପର୍ଶେ ଲାଭହୁଅଇ ନିଶ୍ଚୟ
ବୈକୁଣ୍ଠ ଶ୍ରୀହରି ସଙ୍ଗ ନମଣ ସଂଶୟ
ପିଣ୍ଡଦିଏ ପିତୃଗଣେ ଯେହୁ ଗଙ୍ଗାତୀରେ
ଶୁଦ୍ଧମନେ ପୁଣି ବେଦ ବିହିତ ବାକ୍ୟରେ
କଥାରେ ତା ପୁଣ୍ୟଫଳ ନହୋଇବ କହି
ସୁରେ ପୂଜନ୍ତି ତାହାକୁ ପାଶରେ ବସାଇ
ହଜାର ହଜାର ଦିବ୍ୟ ବର୍ଷ ଏହିପରି
ସୁଖେ ସ୍ୱର୍ଗପୁରେ କାଳ କଟଇ ତାହାରି
ତିଳ ତର୍ପଣ ଯେ କରେ ଗଙ୍ଗାନଦୀତୀରେ
ଶ୍ରଦ୍ଧାଭରେ ସବିଧିରେ ପିତୃ ଉଦ୍ଦେଶ୍ୟରେ
ବହୁଗୁଣ ପୁଣ୍ୟଫଳ ସେହି କରେ ଲାଭ -
ଯାଗଫଳ ମଧ୍ୟତାର ହୁଅଇ ସୁଲଭ
ଗବ୍ୟଯୁକ୍ତ ପିଣ୍ଡ ଯେବେ ଗଙ୍ଗାତୀରେ ଦେବ
ସ୍ୱର୍ଗବାସ ଭାଗ୍ୟେ ତାର ଅତୁଟ ରହିବ
ଏପରି ପିଣ୍ଡ ଦାନର ଅପ୍ରମିତ ଫଳ
ଶତ ଯାଗ ଫଳ ମଧ୍ୟ ନୁହେ ତାରତୁଲ
ଗଙ୍ଗାସ୍ନାନ ପାଇଁ ଯେହୁ ବାରେ ମାତ୍ର ଯାଏ
ସପତ ପୁରୁଷ ତାର ମୋକ୍ଷଗତି ପାଏ
ସପ୍ତ ପୁରୁଷଙ୍କୁ ତାରି ନିଯେ ଯାଏ ତରି
ଥରେ ଯାର ଶିରସ୍ପର୍ଶକରେ ଗଙ୍ଗାବାରି

ଧାତା ବର୍ଣ୍ଣି ନପାରିବେ ଯେଉଁ ଗଙ୍ଗାଗୁଣ
ମୋ ମୁଖେ କି ହୋଇପାରେ ତାଗୁଣ କୀର୍ତ୍ତନ
କହିଲେ ବିହସି ବେଦ ବିଭାଗଗୋସାଇଁ
ଶୁଣ ଦ୍ୱିଜେ ଗଙ୍ଗାଗୁଣ ଏପରି ଅଟଇ
ସିଦ୍ଧ ଗନ୍ଧର୍ବ ତାପସ ଅବା ଶ୍ରେଷ୍ଠ ସୁରେ
କରନ୍ତି ତପସ୍ୟା ଯେବେ ରହି ଗଙ୍ଗାତୀରେ
କରନ୍ତି ସେ ସ୍ୱର୍ଗଭୋଗ ଯା ଅଟେ ଅକ୍ଷୟ
କରନ୍ତି ପୁଣି ତ୍ରିପୁର ଐଶ୍ୱର୍ଯ୍ୟ ସଞ୍ଚୟ
ଶୁଣି ଦ୍ୱିଜେ ଯେତେ ତରୁଛନ୍ତି ଗଙ୍ଗାତୀରେ
କଳ୍ପଦ୍ରୁମ ରୂପେ ଗଣା ହୁଅନ୍ତି ସଂସାରେ
ଗଙ୍ଗାନଦୀତୀରେ ବସି ଯେ ତପ କରଇ
ଅକ୍ଲେଶରେ ସେହି ସ୍ୱର୍ଗ ନିବାସ ଲଭଇ
ବହୁ ତପ ଯଜ୍ଞ ଦାନେ ମିଳେ ଯେଉଁଗତି
ସ୍ନାନକଲେ ଜାହ୍ନବୀରେ ମିଳେ ତା ସମ୍ପ୍ରତି
ଜାତିକୁଳ ତେଜି ହୋଇଥିଲେ ହେଁ ପତିତ
ଦୂଷିତ କରମ କରିହେଉ ବା ନିନ୍ଦିତ
ହୋଇଥାଉ ଅବା ନୀଚ ଜାତିରେ ଜନମ
ଗୁରୁହତ୍ୟା ପାପେ ଅବା ହେଉ ସେ ନିମଗ୍ନ
ହୋଇଥାଉ ଅବା ଦ୍ରୋହୀ ସବୁଲୋକଙ୍କର
କରିଥାଉ ଅବା ପାପ ଯା ଅଟେ ଅପାର
ପିତାକୁ ଛାଡ଼ଇ ପୁତ୍ର ଯେଉଁ ପାପକଲେ
ଛାଡ଼ନ୍ତି ସୁହୃଦେ ଯେଉଁ ପାପ ଆଚରିଲେ
ଯେଉଁ ପାପୀହୁଏ ପତ୍ନୀ ତ୍ୟାଗ କଲେ ପତି
ସେପରି ପାପୁଁ ଜାହ୍ନବୀ ଦିଅନ୍ତି ମୁକତି
ଏ ପାପୀକୁ ଭାଇ ବନ୍ଧୁ କଲେ ହେତ୍ୟକତ
ଭାଗୀରଥୀ ନଛାଡ଼ନ୍ତି କେବେ ତାରସାଥ
ଶିଶୁର ମଳକୁ ଶୌଚ ମାତା ଯଥା ତାରସାଥ
ସେ ମାତୃ ଧରମ ଗଙ୍ଗା ସେପରି ଆଚରେ
ମଳରୂପ ପାପ ତାରକରି ପ୍ରକ୍ଷ୍ୟାଳନ
ଜାହ୍ନବୀ ଦିଅନ୍ତି ତାକୁ ସୁନିର୍ମଳ ସ୍ଥାନ
ଥରେ ମାତ୍ର ଯେହୁଗଙ୍ଗା ଦର୍ଶନ କରିବ
ସବୁଭୋଗ ପଦାର୍ଥର ଅଧିକାରୀ ହେବ
ପୃଥିବୀରେ ନାମ ତାର ହୋଇବ ବିଖ୍ୟାତ
ପୁଣି ହୋଇବ ଲୋକରେ ବିଶେଷେ ପୂଜିତ
ନୀଚକୁଳେ ଜନ୍ମ ମଧ୍ୟ ହୋଇଥାଉ ତାର
ଗଙ୍ଗାଙ୍କ କୃପାରୁ ସେହି ଲଭଇ ନିସ୍ତାର

ଗଙ୍ଗା ତଟରେ ଅଟଇ ଯା ନିତ୍ୟ ନିବାସ
ସଦା ସୁରଗଣ ରହିଥାନ୍ତି ତାର ପାଶ
ନିବାସ ଅଟନ୍ତି ଗଙ୍ଗା ସବୁ ସୁରଙ୍କର
ଶୁଣ ବିପ୍ରେ ଅଟଇ ଯା କାରଣ ତାହାର
ଯେଣୁ ହରି ଥାନ୍ତି ସଦା ଗଙ୍ଗାନଦୀ ତୀରେ
ଦେବେ ମଧ୍ୟ ରହିଥାନ୍ତି ମୋଦେ ସେହିଠାରେ
ବିଷ୍ଣୁମୟ ଗଙ୍ଗାତାର ତୀରେ ଯେଉଁନର
ବସିକରେ ତର୍ପଣାଦି କାର୍ଯ୍ୟ ପିତୃଙ୍କର
ତେବେ ପିତୃଗଣ ମଧ୍ୟ ଥିଲେ ନରକରେ
ସେହିକ୍ଷଣି ମୁକ୍ତ ହୋଇ ବସନ୍ତି ସ୍ୱର୍ଗରେ
ପରସ୍ତ୍ରୀ ହରଣ ପରଦ୍ରବ୍ୟ ପହରକ
ଅଥବା ଯେ ଅଟେ ପର ବାଧା ପ୍ରଦାୟକ
ଅବଗାହନ ଗଙ୍ଗାରେ ଯେବେ ସେହି କରେ
ସବୁ ପାପ ନାଶି ଯାଇ ବସେ ସୁର ପୁରେ
ବେଦ ଶାସ୍ତ୍ରରେ ବିହୀନ ଗୁରୁ ନିନ୍ଦାରତ
ନିରନ୍ତରେ ଅବା ହେଉ ବ୍ୟସନରେ ଲିପ୍ତ
ଥରେ ମାତ୍ର ଯେବେ ସେହି ଗଙ୍ଗାସ୍ନାନ କରେ
ସବୁପାପା ନାଶହୁଏ ସ୍ୱର୍ଗଲାଭ କରେ
ଯେଉଁ ଫଳ ଲାଭ ହୁଏ ବହୁ ଯଜ୍ଞ କରି
ଯେଉଁଫଳ ମିଳେ ବହୁ ବିତ୍ତ ଖର୍ଚ୍ଚ କରି
ସ୍ୱର୍ଗ ମୋକ୍ଷ ପ୍ରଦା ଗଙ୍ଗା ଦିଅନ୍ତି ସେ ଫଳ
ସେ ଯେଣୁ ଅଟନ୍ତି ସବୁ ସୁଖର ଆକର
ପୂଜେ ଗଙ୍ଗା ଯେହୁ କରି ଚିତ୍ତ ନିରୋଧନ
ପତିତ ପାବନୀ ରୂପ ଯେ କରଇ ଧ୍ୟାନ
ଭୁକ୍ତିଭୁକ୍ତି ନିଜେ ଆସି ଆଗକୁ ତାହାର
ଶରଣ ନେବାକୁ ହେଉଥାନ୍ତି ତତପର
ଅନେକ ଜନ୍ମର ପାପ ନର ନାଶକରି
ଅନ୍ତେ ଯାଇ ବୈକୁଣ୍ଠରେ ଭେଟଇ ଶ୍ରୀହରି
ଆନନ୍ଦେ ଯେ ଯାଇ କରିଥାଏ ଗଙ୍ଗାସ୍ନାନ
ମନୁଷ୍ୟ ମଧ୍ୟରେ ସେହି ଅଟେ ପୁଣ୍ୟବାନ
ରାହୁଗ୍ରସ୍ତ ଦିବାକରେ ପ୍ରୟାଗ ତିର୍ଥରେ
ଯେଉଁଫଳ ମିଳେ ଶତଧେନୁ ପ୍ରଦାନରେ
ଆନନ୍ଦରେ ଗଙ୍ଗାସ୍ନାନ କରେ ଯେଉଁନର
ସେ ଫଳ ଅବଶ୍ୟ ଲାଭ ହୁଅଇ ତାହାର
ଯେ କୌଣସି କାର୍ଯ୍ୟେ ଅବା ଯାଉଥାଉ ଯହିଁ
ଦୈବାୟତ୍ତେ ଯେବେ ଗଙ୍ଗାତୀରେ ମିଳେଯାଇ
ଗଙ୍ଗାସ୍ନାନର ଉଦ୍ଦେଶ୍ୟ ନଥିଲେ ହେ ତାର
ସ୍ନାନ କରେ ଅବା ସ୍ପର୍ଶ କରେ ଯେବେ ନୀର
ସେ ଫଳେ ସକଳ ପାପୁ ସେ ହୋଇ ମୁକର
ପିତୃକୁଳେ ତାରି ନିଯେ ହୁଅଇ କୃତାର୍ଥ
ଇନ୍ଦ୍ରିୟ ବିଷୟେ ଅବା ଲିପ୍ତ ଥାଉ ହୋଇ
ଜନ୍ମାନ୍ତର ବାସନା ବା ଥାଉ ତାର ରହି
ସେ ସବୁ ବିନଷ୍ଟ ହୁଏ ଗଙ୍ଗା ଦର୍ଶନରେ
ସନ୍ଦେହ ଏଥିରେ ବିପ୍ର ନଘେନ ମନରେ
ପରସ୍ୱ ହରଣେ ଯାର ଥାଏ ଅଭିଳାଷ
ଥାଉ ଅବା ତାର ପର ନାରୀପତି ଆଶା
ଅବା ଥାଉ ତାର ଅନ୍ୟ ଧର୍ମରେ ଆଦର
ଗଙ୍ଗା ଦର୍ଶନେ ସେ ପାପ ସବୁ ହୁଏ ଦୂର
ଭାଗିରଥୀଙ୍କ ପ୍ରଭାବ ଅଟଇ ଏପରି
ଥରେ ଯେବେ ନର ସ୍ନାନ କରେ ସେହିବାରି
ଅଳପ ଲାଭରେ ସେହି ହୁଅଇ ସନ୍ତୋଷ
ସର୍ବେ ସମପ୍ରୀତି ତାର ବଢ଼ଇ ଅଶେଷ
ଗଙ୍ଗା ନଦୀରେ ସେ ନର ସ୍ନାନ କରେ ଯାଇ
ତା ହୃଦରେ ସମଭାବ ଅଧିକେ ବଢ଼ଇ
ବ୍ରହ୍ମାଠାରୁ କୀଟ ଯାଏଁ ତାଠାରେ ସମାନ
ତା ଦୃଷ୍ଟିରେ ଜଗତରେ ନୁହେଁ କେହି ସାନ
ଯେଉଁନର ରହି ଗଙ୍ଗା ଦେବୀ ଆଶ୍ରୟରେ
ନିଜକୁ ଅର୍ପଣ କରେ ସମସ୍ତ ପ୍ରକାରେ
ଗଙ୍ଗା ନଦୀ ତୀରେ ରହି କଟାଏ ଜୀବନ
ତିନିପୁରେ ନାହିଁ କେହି ତା ସମାନ ଧନ୍ୟ
ସିଦ୍ଧି ଲାଭ ସେହି କରେ ସମସ୍ତ କର୍ମରେ
ବିପ୍ରେ ନଧର ସଂଶୟ କିଛି ହିଁ ଏଥିରେ
କଇଁଚ ମାଛ ଯେତେକ ଗଙ୍ଗାର ଗର୍ଭରେ
ପରେ ସ୍ୱର୍ଗ ଲାଭ ହୁଏ ତାହାଙ୍କ ଭାଗ୍ୟରେ
ଗଙ୍ଗାନଦୀ ତଟେ ମରିଯାଏ ଯେଉଁ ନର
ତ୍ରିପୁରେ ଧନ୍ୟ ଅଟଇ ଜୀବନ ତାହାର
ସ୍ୱର୍ଗ ମୋକ୍ଷ ଭଳେ ତାକୁ ହୁଅଇ ପ୍ରାପତ
ପୂଜା କରନ୍ତି ତାହାକୁ ଶଚୀଦେବୀ କାନ୍ତ
ଯେଉଁଗତି ଲଭେ ଯୋଗୀ ଯୋଗ ସାଧନରେ
ସେ ଗତି ମିଳଇ ମୃତ୍ୟୁହେଲେ ଗଙ୍ଗାତୀରେ
ଶତ ଚାନ୍ଦ୍ରାୟଣ କଲେ ପୁଣ୍ୟ ହୁଏ ଯାହା
ଗଙ୍ଗାଜଳ ପାନେ ନର ଲାଭକରେ ତାହା

ଯେତେ ତୀର୍ଥ ଅଛି ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ
ସାଢ଼େ ତିନିକୋଟି ଅଟେ ତାହା ଗଣତିରେ
ତା ମଧ୍ୟରେ ଗଙ୍ଗାତୀର୍ଥ ଅଟଇ ପ୍ରଧାନ
ଶ୍ରୀମୁଖରେ ଏହା କହିଛନ୍ତି ନାରାୟଣ
ବିଷ୍ଣୁ ପଦ ନଖ କୋଣୁ ଜନମ ଯାହାର
ହୋଇକି ପାରେ ତୁଳନା ତା ସଙ୍ଗେ ଆନର
ଗଙ୍ଗାଙ୍କର ବ୍ୟାପ୍ତି ରହିଅଛି ତିନିପୁରେ
ତେଣୁ ତ୍ରିପଥଗା ନାମେ ଖ୍ୟାତ ସେଲୋକରେ
ସ୍ନାନପରେ ପାଠକରେ ଯେହୁ ଗଙ୍ଗାସ୍ତବ
ସମସ୍ତ ଭୂତି ତାଠାରେ ହୁଅଇ ସମ୍ଭବ
ପ୍ରାର୍ଥନା କରେ ଯେ ଗଙ୍ଗା ଗୁଣ ଗାନକରି
ଧର୍ମଦ୍ରବେ ରକ୍ଷା କର ମୁଖରେ ଉଚାରି
ଶରଣ ରଖନ୍ତି ଗଙ୍ଗା ତାକୁ ପଦାଗ୍ରତେ
ହେ ବିପ୍ରେ ସଂଶୟ ଏଥି ନମଣ କିଞ୍ଚିତେ
କହିବ ଆବର ପାପ କରନ୍ତୁ ଖଣ୍ଡନ
ତୁମ୍ଭର ପାଦରେ ମାଗୋ ପଶୁଛି ଶରଣ
ତୁମ୍ଭ ପାଦରେଣୁ ମାଗୋ ଅଟଇ ଅମୃତ
ବଢ଼ିଯାଉ ପାନକରି ମୋହର ସୁକୃତ
ସମସ୍ତ ଦୁରିତ ହର ଜାହ୍ନବୀ ମୋହର
ପାପୀ ମୁହିଁ ଉର୍ଦ୍ଧ୍ୱଗତି ମୋତେ ଦାନକର
ସନ୍ତୋଷ ହୁଅନ୍ତି ଗଙ୍ଗା ଏପରି ସ୍ତବରେ
ତା ଫଳେ ନ ପଡ଼େ ନର ସଂସାର ଚକ୍ରରେ
କୋଟି କୋଟି ଜନମର ପାତକ ଯାଥିବ
ଗଙ୍ଗାସ୍ନାନ ମାତ୍ରେ ସବୁ ଦୂର ହୋଇଯିବ
ଗଙ୍ଗାଙ୍କର ମୂଳମନ୍ତ୍ର ହରିଙ୍କେ କଥିତ
ତାହାକୁ କରିବ ଜପ ହୋଇ ଶୁଦ୍ଧପୂତ
ସେହି ମୂଳ ମନ୍ତ୍ର ଗୋଟି ଅଟଇ ଏପରି
ଆହେ ବିପ୍ରେ ହୃଦେ ତାକୁ ରଖ ହେତୁକରି
ଓଁ ନମୋ ଭଗବତୀ ବିଷ୍ଣୁ ସ୍ୱରୂପିଣୀ
ନମସ୍ତେ ମା ଗଙ୍ଗା ଦେବୀ ତୁମେ ନାରାୟଣୀ
ଗଙ୍ଗାତଟ ବାୟୁ ସ୍ପର୍ଶେ ଶରୀର ଯାହାର
ମୃତ୍ୟୁପରେ ବାସହୁଏ ବୈକୁଣ୍ଠରେ ତାର
ଗଙ୍ଗାତୀରେ ଯେଉଁନର ଘର କରିଥାଏ
ଯମଦଣ୍ଡ ପ୍ରତି ତାର ଖାତର ନଥାଏ
ତ୍ରିପୁରେ ଅଟଇ ଧନ୍ୟ ଜୀବନ ତାହାର
ନର ଦେହେ ସେହି ନାରାୟଣ ଅବତାର
ସ୍ୱଦେହରେ ଯେତେଦିନ ଥାଏ ଗଙ୍ଗାତୀରେ
ସେତେ ଯୁଗ ଯାଏ ସେହି ସ୍ୱର୍ଗଭୋଗକରେ
ମହିମା ଅଶେଷ ଅଟେ ଭାଗିରଥୀଙ୍କର
ତା ବର୍ଣ୍ଣନା କରିବାକୁ ସାମର୍ଥ୍ୟ କାହାର
ହେ ରଘୁକୁଳ ତିଳକ ସୀତା ପ୍ରାଣଧନ
ଗୋପୀନାଥ ହୃଦ ହେଉ ତବ ବାସସ୍ଥାନ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟି
ଖଣ୍ଡେ ବ୍ୟାସ ପୁରାଣେ ସୃଷ୍ଟି
ଗଙ୍ଗା ମାହାତ୍ମ୍ୟ ବର୍ଣ୍ଣନୋ
ନାମ ସପ୍ତବିଂଶୋଧ୍ୟାୟଃ

❑

## ଅଷ୍ଟବିଂଶୋଧ୍ୟାୟ

### ଗଣେଶ କର୍ତ୍ତୃକ ତ୍ରୈପୁରି ବଧ

ବ୍ରାହ୍ମଣ ଗୋଷ୍ଠି ମଧ୍ୟରେ ଶ୍ରୀବ୍ୟାସ ଗୋସାଇଁ
ତ୍ରୈପୁରି ବଧ ବୃତାନ୍ତ କହନ୍ତି ବୁଝାଇ
ଶୁଣ ବିପ୍ରେ ଥିଲା ଏକ ଦୈତ୍ୟକୁଳାଧମ
ତ୍ରୈପୁରି ବୋଲିଣ ଖ୍ୟାତ ଅଟେ ତାରନାମ
ଶତ ସୂର୍ଯ୍ୟପ୍ରଭା ଅଙ୍ଗେ ବହିଥାଏ ସେହି
ତାହାର ବଳକୁ କେହି ସମାନ ନୁହଇ
ଦିନେ ସେହି ଦୈତ୍ୟ ଆଗେ ଦେଖି ଗଣପତି
ଜଳି କ୍ରୋଧରେ କହିଲା ତାଙ୍କୁ ଏ ଭାରତୀ
ଆରେ ଦୁଷ୍ଟ ପିତା ତୋର ଶିବଶୂଳପାଣି
ମୋର ପିତୃହନ୍ତା ସେହି-ଅଛି ମୁହିଁ ଜାଣି
ତୁ ତାହାର ପୁତ୍ର ଯେଣୁ ବଧ୍ୟ ଅଟୁ ମୋର
ଜୀବନ ହାରିବି ଆଜି ଯୁଦ୍ଧରେ ତୋହର
ତ୍ରିପୁରା ସୁରର ସୁତ ଅଟେ ସେ ଦାନବ
ବଧିଥିଲେ ଯାକୁ ଶିବ କରିଣ ଆହବ
ଗଣପତି ଦୈତ୍ୟଠାରୁ ଶୁଣି ଏ ବଚନ
ବିହସି କହିଲେ ଶୁଣ ଆରେ ଯାତୁଧାନ
ପୂର୍ବେ ମୁଁ ଶୁଣିଛି ଦୁଷ୍ଟ ପଣ ତୋ ବାପର
ତା ଯୋଗୁଁ ତାପିତ ସ୍ୱର୍ଗେ ହେଲେ ସବୁସୁର
ତିନିପୁରକୁ ସେ ଦୁଷ୍ଟ ହେଉଥିଲା ତ୍ରାସ
ସେ ପାପୁ ଶିବଙ୍କ କରେ ଲଭିଲା ବିନାଶ

ଭଲ ହୋଇ ନାହିଁ କେହି ମହାପାପ କରି
ଉପଯୁକ୍ତ ପ୍ରାୟଶ୍ଚିତ ହୋଇଲା ତାହାରି
ମୋ ତାତ ତା ପାପକର୍ମ ଜ୍ଞାନବଳେ ଜାଣି
ବଳେ ଏକଶରେ ତାକୁ ପକାଇଲେ ହାଣି
ତାକୁ ବଧି ଆରେ ଦୁଷ୍ଟ ମୋହର ଜନକ
ପାପଜ ଦଣ୍ଡରୁ ତାର ହୋଇଲେ ତ୍ରାତକ
ମୋ ପିତାଙ୍କ ହାତେ ମରି ଲଭିଲା ନିସ୍ତାର
ନୋହିଲେ ନରକ ତାର ହୋଇଥାନ୍ତା ଘର
ଆଜି ମଧ ମାତ୍ର ଏକ ଶରେ ତୋତେ ମୁହିଁ
ପ୍ରେତପତିଙ୍କ ସଦନେ ବସାଇବି ନେଇ
ଜାଣୁଅଛି ସେହି ଇଚ୍ଛା ତୋର ଅଛି ହୋଇ
ରହ କ୍ଷଣେ ଇଚ୍ଛାତୋର ଯିବ ପୂର୍ଣ୍ଣହୋଇ
କହିଲେ ବ୍ୟାସ ସମ୍ବୋଧି ଶୁଣ ବିପ୍ରଗଣ
ଦୈତ୍ୟକୁ ଏପରି କହି ବିଘ୍ନ ବିନାଶନ
ତ୍ରିଲୋକେ ବୁଦ୍ଧିରେ ଶ୍ରେଷ୍ଠ ହୋଇକ୍ରୋଧଭର
ସନ୍ଧିଲେ କୌଣପାପରେ ଦଶ ଦିବ୍ୟଶର
କାଳାନଳ ସମ ତୀକ୍ଷ୍ଣ ସେ ଦଶ ନାରାଚ
ତା ଆଗରେ ଯମଦଣ୍ଡ ହୋଇଯିବ ତୁଚ୍ଛ
ସେ ଶରେ ଭେଦିଲେ ଯେବେ ଦୈତ୍ୟର ଶରୀର
କ୍ରୋଧରେ ଦୁଷ୍ଟ କୌଣପ ହେଲା ଥରହର
ସୁର ପ୍ରପୂଜିତ ଗଣପତିଙ୍କୁ ଉଦ୍ଦେଶି
ବହୁ ତୀକ୍ଷ୍ଣଶର ଦୈତ୍ୟ ବେଗେହେଲା ପେଶି
ମଣ୍ଡିଦେଲା ଦୈତ୍ୟଶର ଆକାଶ ଅଙ୍ଗଣ
ବାଟେ ଗଣେଶଙ୍କ ଶରେ କରିଣ ବାରଣ
ଅତି କ୍ରୋଧହେଲେ ଗଣପତି ତାହାଦେଖି
ହସିଦେଇ ଥରେ ମନେ ନୋହି କିଛି ଦୁଃଖୀ
ପେଷିଲେ ଯେ ବାଣଗଣ ତୁଳ ନାହିଁ ତାର
ଶୀଘ୍ର ଭେଦକଲା ଯାଇ ଦୈତ୍ୟର ଶରୀର
ପାଇ ଅଙ୍ଗେ ପୀଡ଼ା ଦୈତ୍ୟ ଲଭି ସେହିବାଣ
ଜ୍ଞାନଶୂନ୍ୟହୋଇ ରହିଗଲା କିଛିକ୍ଷଣ
ଦେଖି ତାହା ଦଇତର ଦୁଇ ସେନାପତି
ଭଦ୍ର ସୌଭଦ୍ର ନାମରେ ଭୟଙ୍କର ଅତି
ସେହି ଦୁଇ ଦୈତ୍ୟଙ୍କର ବଳ ଅପ୍ରମିତ
ଯୁଦ୍ଧରେ ପାରନ୍ତି ଜିଣି କ୍ଷଣେ ତ୍ରିଜଗତ
ଦୁହେଁ ଦୁଇ ଗଦା ଧରି ହୋଇ ଆଗୁସାର
ନିଠାଇ ପିଟିଲେ ଗଣାଧକ୍ଷଙ୍କ ଉପର

ଛୁଇଁବା ଆଗୁଁ ଶରୀର ସେହି ଗଦାବର
ଶତଖଣ୍ଡ କଲା ଗଣିପତିଙ୍କର ଶର
ଏ ମଧରେ ଲଭି ସଂଜ୍ଞା ତ୍ରିପୁରର ସୁତ
ଆସିଲା ଯୁଦ୍ଧକୁ ଚଢ଼ି ନୂଆ ଏକ ରଥ
ସନ୍ଧାନିଲା ବକ୍ରଠାରୁ ଟାଣ ଶରରାଶି
ନଭୁ ଖସି ଗଣନାଥ ଦେହେ ଗଲେ ପଶି
ରୁଧିରେ ଅପ୍ଲୁତ ହେଲା ଶରୀର ତାଙ୍କର
ବଜ୍ରସମ ଶର ପାଇଁ ଦୁଷ୍ଟ ଦାନବର
ଦିଶିଲେ କ୍ରୋଧରେ କାଳାନ୍ତକ ଯମପରି
ଛାଇଦେଲେ ଅସୁରକୁ ତୀକ୍ଷ୍ଣ ଶରମାରି
ଦୈତ୍ୟର ଲଲାଟ ଲକ୍ଷ କରି ତିନିଶର
ମାରି ହୃଦକୁ ଭେଦିଲେ ତୀକ୍ଷ୍ଣ ସାତଶର
ଚାରିଗୋଟି ଶରେ ନାଭୀଦେଶ ଲକ୍ଷକଲେ
ସାତଗୋଟି ଶରେ ତାର ମସ୍ତକ ଖୋଳିଲେ
ବିନାୟକ ବାଣେ ଦୈତ୍ୟ ହୋଇଣ ମର୍ଦ୍ଦିତ
ରଥଉପରୁ ଭୂମିରେ ହୋଇଲା ପତିତ
ଜାଣି ତାହା ସୁତତାକୁ ରଥକୁ ଉଠାଇ
ରଣ ଭୂମିରୁ ସେକ୍ଷଣି ଗଲା ଆଡ଼ହୋଇ
ଯୁଦ୍ଧଭୂମିରୁ ଅସୁର ଯିବାର ଦେଖିଲେ
ସୁରପୂଜ୍ୟ ଶିବସୁତ ନୀତି ସୁମରିଲେ
ନକରିଣ ରଣ ରହିଗଲେ ହୋଇ ସ୍ଥିର
ତାପରେ ଯା ହେଲା ଶୁଣ ଆହେ ବିପ୍ରବର
ବହୁ ସମୟ ପର୍ଯ୍ୟନ୍ତ ଜ୍ଞାନହୀନ ହୋଇ
ରଥପରେ ଦୈତ୍ୟବର ପଡ଼ିଥିଲା ଶୋଇ
ତଦପରେ ଚେତାପାଇ ସୁତକୁ ଚାହିଁଲା
ଯୁଦ୍ଧୁ ଆସିଥିବା ଜାଣି ବହୁ ଗାଳି ଦେଲା
କହିଲା ହେ ସୁତ ରଥ ଏହିକ୍ଷଣି ନେଇ
ଯୁଦ୍ଧେ ଶିବସୁତ ଆଗେ ଦିଅ ପହୁଞ୍ଚାଇ
ଆଜି ଯୁଦ୍ଧେ ନିଶ୍ଚୟ ମୁଁ ତାର ପ୍ରିୟପ୍ରାଣ
ତୀକ୍ଷ୍ଣଶର ସାନ୍ଧି ଦେଖ କରିବି ହରଣ
କହିଲା ସାରଥୀ ଶୁଣି ଦୈତ୍ୟର ବଚନ
ବୃଥା କିପାଁ ଏହିପରି କହୁଛ ରାଜନ
ହର ସୁତ ସଙ୍ଗେ ଯୁଦ୍ଧାଙ୍ଗଣେ ଯୋଡ଼ିଦେବ
ଏ ଜଗତେ ନାହିଁ କାହିଁ ଏପରି ମାନବ
ତାଙ୍କ ଶର ସହିବାକୁ ସାମର୍ଥ୍ୟ କାହାର
ବଜ୍ର ସମ ଅଟେ ତାଙ୍କ ଆଶୁଗ ପ୍ରହାର

ତାଙ୍କଶରେ ଦେଖୁଛତ ହେଲ ସଜ୍ଞାହୀନ
ନଭାବି ସେ କଥା କିପାଁ କହ ଏ ବଚନ
ସଜ୍ଞାହୀନ ଯେଣୁ ତୁମେ ହୋଇଲ ନୃପତି
ତାଦେଖି ତୁମକୁ ରଥେ ଆଣିଲି ମୁଁ ଏଥି
ଏବେ ଯାହାଭଲ ଦିଶୁଅଛି ତାହାକର
ସେଥିରେ ଆଉ କି ଅଛି କହିବାକୁ ମୋର
ତୁମସହ ବାଜି ମଧ୍ୟ ହୋଇ ସଜ୍ଞାହୀନ
ଅଛନ୍ତି କେ କହ ରଥ କରିବ ବହନ
ଶୁଣି ତାହା ଦୈତ୍ୟ କ୍ଷଣେ ମଉନ ହୋଇଲା
ଭଲ ବୈଦ୍ୟକୁ ଡକାଇ ଶୀଘ୍ର ପଠାଇଲା
କହିଲା ଚିକିତ୍ସା ଅଶ୍ୱେ କରିବ ସେପରି
ଯୁଦ୍ଧେ ଯିବାକୁ ସକ୍ଷମ ହୋଇବେ ଯେପରି
ଆଜ୍ଞାପାଇ ଚିକିତ୍ସକ ଶୀଘ୍ର ଚଳିଗଲେ
ଉତ୍ତମ ଔଷଧି ଦେଖି ପ୍ରୟୋଗ ସେ କଲେ
ପିଆଇଲେ ଅଶ୍ୱେ ଅଭିମନ୍ତ୍ରିତ ଯେ ଜଳ
ଘାଆ ଶୁଖିଗଲା ପୁଣି ବଢ଼ି ଗଲା ବଳ
ସଜ୍ଞା ଲଭି ଅଶ୍ୱେ ହେଲେ ଅତି ବଳକର
ପୂର୍ବପ୍ରତି ତେଜ ଓଜବଢ଼ିଲା ତାଙ୍କର
ତା ଦେଖି ଦୈତ୍ୟ ସାରଥୀ ଅତିହୃଷ୍ଟ ହେଲା
ତୁରଗ ମାନଙ୍କୁ ଆଣି ରଥରେ ଯୋଚିଲା
ଅଣାଇଲା ଦୈତ୍ୟପୁଣି ଶତମତ୍ତକରି
ଦନ୍ତଘାତେ ମେରୁ ଯେହୁ ପାରେ ଛିଦ୍ରକରି
ଶସ୍ତ୍ରଧାରି ବହୁ ସୈନ୍ୟ ଅତିବଳକର
ସଙ୍ଗେ ଧରି ଦୈତ୍ୟ ଯୁଦ୍ଧେ ହୋଇଲାବାହାର
ରଥରେ ନବସି ଦୈତ୍ୟ ବସିଲା ହାତୀରେ
ଶୋଭିଲା ଯେସନେ ଇନ୍ଦ୍ର ଐରାବତପରେ
ଯୁଦ୍ଧକୁ ଯାଇ ଦଇତ ଧନୁ କରେ ଧରି
ବହୁତ ସେନାଙ୍କୁ ଶରେ ପକାଇଲା ମାରି
ଯମଦଣ୍ଡପରି ଦୈତ୍ୟ କାଳାନ୍ତକ ଶର
ନିରତ କଲେ ଯୁଦ୍ଧରେ ସୈନ୍ୟଙ୍କ ସଂହାର
ଯେଉଁ ଦିଗେ ଅସୁରର ହାତୀ ଯାଉଥିଲା
ସେ ଦିଗେ ସୈନ୍ୟଭିତରେ କାଉଳି ପଡ଼ିଲା
ଦୈତ୍ୟର ଆଗରେ କେହି ରହିନପାରିଲେ
ପୃଷ୍ଠ ଭଙ୍ଗଦେଇ ଯୁଦ୍ଧୁ ଧାଇଁ ପଳାଇଲେ
ନିଃଶେଷ ହୋଇଲେ ଦେବସୈନ୍ୟ ଏହିପରି
ଗର୍ଜିଲା ଅସୁର ଦଶଦିଗ ପୂର୍ଣ୍ଣକରି
କେତେ ଦେବସେନାଗର୍ଜି ପାଦେମର୍ଦ୍ଦିଦେଲେ
କେତେ ସୈନ୍ୟଙ୍କୁମାହୁନ୍ତେନିର୍ଦ୍ଦୟେମାଇଲେ
ଆତୁର ହୋଇଲେ ଦେବେ ଅସୁରର ବଳେ
ଅଙ୍ଗକ୍ଷତ ହେଲେ ଦୈତ୍ୟ ଘୋରଶରଜାଳେ
ପ୍ରହାରିଲେ ହେଲେ ଗଜଦେହେ ବହୁଶର
ରୋମଟିଏ ମଧ୍ୟ ବଙ୍କାନହେଲା ତାହାର
ମଦେ ମତ୍ତହୋଇ ଅତି ଉଦ୍ଧତ ସେ କଲା
ଦେବ ସୈନ୍ୟଙ୍କୁ ପାଦରେ ଦଳି ମାରିଦେଲା
ଦେଖି ଗଣପତି ଦେବତାଙ୍କ ଏ କରମ
କ୍ରୋଧେ ଦିଶିଲେ ପ୍ରଳୟ କାଳାନଳ ସମ
ବଜ୍ରାଗ୍ନିପରାଏ ଶର ହାତରେ ଧଇଲେ
ମନ୍ତ୍ରି ତାକୁ ଗଜେ ଲକ୍ଷ କରି ସନ୍ଧାନିଲେ
ଘାଉଆ ହୋଇଲା ଗଜ ପ୍ରାଣରେ ନମଲା
ପୂର୍ବପରି ଯୁଦ୍ଧ କ୍ଷେତ୍ରେ ବଳ ପ୍ରକାଶିଲା
ବିନାୟକେ ଆଗେ ଦେଖି ଦୁର୍ଦ୍ଦାନ୍ତ ଅସୁର
ଲକ୍ଷକରି ସନ୍ଧାନିଲା ବହୁ ନିଦ୍ୟଶର
ଉଭୟେ ଯୁଦ୍ଧରେ ଦକ୍ଷ କଲେ ଘୋର ରଣ
ସ୍ତବ୍ଧ ହେଲା କର୍ଣ୍ଣ ଶୁଣି ସେ ଶବ୍ଦ ଭୀଷଣ
ବିନ୍ଧାବିନ୍ଧି ହେଲେ ଦୁହେଁ ବହୁ ତୀକ୍ଷ୍ଣଶର
ନଦେଖିଲା ନେତ୍ର ହରାଜିଣା ଅବା କାର
ଅସୁରର କରୀ ତେବେ ହୋଇ ମଦମତ୍ତ
ପୀଡ଼ ଦେଲା ଗଣେଶଙ୍କ ମୂଷାକୁ ବହୁତ
ମୂଷା ମଧ୍ୟ ଯୁଦ୍ଧେ ତିଳେ ପାଦ ନ ଘୁଞ୍ଚାଇ
ହାତୀ ସଙ୍ଗତେ ଯୁଝିଲା ସାହାସ ଦେଖାଇ
ଅଦ୍ଭୁତ ସେ ଯୁଦ୍ଧ ଦେଖି ଦୁଇ ପଟ ସେନା
ଚାହିଁ ରହିଲେ ଆଶ୍ଚର୍ଯ୍ୟ ହୋଇ ଅକଳନା
କ୍ରମେ ସେହି ଦୁହିଁଙ୍କର ସଂଗ୍ରାମ ବଢ଼ିଲା
ଶବଦରେ ଦଶଦିଗ ଆଚ୍ଛାଦିତ ହେଲା
ଦାନ୍ତକୁଦାନ୍ତେ ପାଦକୁ ପାଦରେ ଯୋଚିଲେ
ମହତ ସେ ଯୁଦ୍ଧ ଦୁହେଁ ଦୁହିଁଙ୍କୁ ଭେଟିଲେ
ଆକ୍ରାନ୍ତ ହୋଇଣ କରୀ ମୂଷା ଦନ୍ତ ଘାତେ
ଶରୀରକୁ ମଣ୍ଡିଦେଲା ବହୁତ ରକତେ
ପରେ ଗଣେଶଙ୍କ ତୀକ୍ଷ୍ଣ ଶରାଘାତ ପାଇ
ଭୂମିରେ ପଡ଼ିଲା ଲୋଟି ମୁଣ୍ଡକୁ ଫଟାଇ
ତାସହିତ ଦୈତ୍ୟ ମରି ଭୂଇଁରେ ଲୋଟିଲା
ଶିବସୁତ ଗଣେଶଙ୍କ କୀର୍ତ୍ତି ପ୍ରକାଶିଲା

ସମସ୍ତେ ଶୁଣି ଆନନ୍ଦେ ନାନା ଉପଚାରେ
ପୂଜାକଲେ ହରଷରେ ଶମ୍ଭୁଙ୍କ କୁମରେ
ଦେଖି ତାହା ସାଧୁବାଦ କଲେ ସୁରଗଣ
ଆବର ସନ୍ତୋଷ ହେଲା ମୁନିଗଣ ମନ
ନୃପତି ମରିବା ଦେଖି ଅସୁର ସଇନ
ଭୟଭୀତ ହୋଇ ଧାଇଁ କଲେ ପଳାୟନ
ସମ୍ବାଦ ପାଇ ମହେଶ ତହିଁ ପ୍ରବେଶିଲେ
ସଙ୍ଗତେ ତାଙ୍କର ଗିରିସୁତା ମଧ ଥିଲେ
କହିଲେ ଦେବଙ୍କୁ ତୁମ୍ଭେ ରହି ଏ ସ୍ଥାନରେ
ଅସୁର ବଂଶ ନିର୍ମୁଳ କରିବ ଶସ୍ତ୍ରରେ
ବିଶ୍ୱେ ଅସୁର ଗୋଟିଏ ମଧ ନରହିବେ
ଯେପରି ସେହି କଥାରେ ସୁରେ ଦୃଷ୍ଟିଦେବେ
ଶିବଙ୍କର ସେହି ଆଜ୍ଞା ଶିରୋଧାର୍ଯ୍ୟକରି
ଦେଉଛନ୍ତି ସୁରେ ଦୈତ୍ୟ ବଂଶ ଲୋପକରି
ଏ ଅଧ୍ୟାୟ ଶେଷ ହେଲା ଏବେ ଏହିଠାରେ
କହେ ଗୋପୀନାଥ ସ୍ମରି ଶ୍ରୀରାମ ହୃଦରେ

□

## ଊନତ୍ରିଂଶ ଅଧ୍ୟାୟ

### ସୂର୍ଯ୍ୟମାହାତ୍ମ୍ୟ ବର୍ଣ୍ଣନ

ବ୍ୟାସଙ୍କୁ କହିଲେ ମୋଦେ ବଇଶମ୍ପାୟନ
ମୋହର ସନ୍ଦେହ ଦେବ କରନ୍ତୁ ଭଞ୍ଜନ
ଦେଖାଯାଉଅଛି ଯାହା ନିତି ନଭୋଦେଶେ
କିନାମ ତାହାରସେହି ଅଟଇ କିଏସେ
କାହାର ପୁତ୍ର ସେ କହ କିପରି ଜନ୍ମିଲା
ଏତେ ତେଜ କିପରି ତାଠାରେ ସମ୍ଭବିଲା
କହ ପ୍ରଭାବ ତାହାର ଅଟଇ କିପରି
କେଉଁ ଦେଶେ ହୋଇଅଛି ଜନମ ତାଙ୍କରି
କିପରି ତା ଏତେ ତେଜ ହୋଇଲା ସମ୍ଭବ
କି କାର୍ଯ୍ୟ ଅଟଇ ତାର ତା ମଧ କହିବ
ଏପରି ମହିମା କିମ୍ପା ହୋଇଲା ତାହାର
ଯା ଘେନି ପୂଜନ୍ତି ତାଙ୍କୁ ଋଷି ସୁର ନର
ବିପ୍ର ଋଷି ମହାଋଷି କରନ୍ତି ପୂଜନ
କହନ୍ତୁ ଅଛି ତହିଁରେ କିଅବା କାରଣ
ତା ଶରୀରେଏତେ ତେଜ କାହିଁକିହୋଇଲା
ସେ ତେଜ ତାହାକୁ କହ କିଏ କେବେ ଦେଲା
ଯେତେ ନରନାରୀ ଛନ୍ତି ଅଖିଳ ମଧରେ
କାହିଁକି ଦିଅନ୍ତି କହ ସମ୍ମାନ ତାହାରେ
ଋଷିଙ୍କର ଏହି ପ୍ରଶ୍ନେ ହସି ଶୁକତାତ
କହିଲେ କହିବି ଶୁଣ ସୂର୍ଯ୍ୟଙ୍କ ଚରିତ
ବ୍ରହ୍ମାଦେହୁ ଜାତ ଏହି ବ୍ରହ୍ମତେଜ ଧଣି
ତେଣୁ ସୂର୍ଯ୍ୟ ବ୍ରହ୍ମମୟ ରଖ ହେତୁଙ୍କରି
ସାକ୍ଷାତେ ବହ୍ମ ସେ ଧର୍ମ କାର୍ଯ୍ୟ ସିଦ୍ଧିପାଇଁ
ବୈଶମ୍ପାୟନ ସନ୍ଦେହ ଏଥି କିଛି ନାହିଁ
ନିର୍ମଳ ମୟୁଖ ତାଙ୍କ ଅଟଇ ଅସହ୍ୟ
ତାଙ୍କ ଆଗେ ଅଗ୍ନିତେଜ ଅଟେ ଅତି ହେୟ
ପ୍ରଥମେ ସୂର୍ଯ୍ୟ ସେ କାଳେ ହୋଇଲେ ସର୍ଜନ
ସେ ତେଜ ସହନେ କେହି ନୋହିଲେ ଭାଜନ
ନରହିଲା ଧୈର୍ଯ୍ୟକାର ତା ଦର୍ଶନ ପାଇଁ
ଯେ ଚାହିଁଲା ତାର ଆଖି ଗଲା ଅନ୍ଧ ହୋଇ
ନଦ ନଦୀ ସାରାଦି ହୋଇଲେ ବ୍ୟାକୁଳ
ସେ ଚଣ୍ଡ କିରଣ ଶୋଷିନେଲା ସବୁ ଜଳ
ଜଳଜନ୍ତୁ ଯେତେ ଜଳମଧ୍ୟେ ରହିଥିଲେ
ସହି ନ ପାରି ସେ ତାତି ଛଟପଟ ହେଲେ
ଶୁକ୍ରଆଦି ସୁରଗଣେ କରି ତା ଦର୍ଶନ
ଦୁଃଖିତେ ଭେଟିଲେ ଯାଇ ଚତୁରଆନନ
ଜଣାଇଲେ ସବୁଯାଇ ବ୍ରହ୍ମାଙ୍କ ଆଗରେ
ଶୁଣି ତା କହିଲେ ବ୍ରହ୍ମା ଅତି ମୋଦ ଭରେ
ମନେ ରଖିଥିବ ଏହା ଅହେ ସୁରଗଣ
ସତ୍ୟ ଶୁଦ୍ଧ ବ୍ରହ୍ମଅଟେଦେହର କାରଣ
ଦେହରେ ରହି ଯେ କରୁଅଛି ଯାତାୟାତ
ସୁଧାଂଶୁ ସେ ଅଟେ ରଜ ଗୁଣରେ ପୂରିତ
ତିନିଭୁବନରେ ଛନ୍ତି ଯେତେ ଚରାଚର
ଏହି ଦୁହେଁ କରୁଛନ୍ତି ପାଳନା ତାହାର
ଅଣ୍ଡଜ ସ୍ୱେଦଜଜରାୟୁଜ ଓ ଉଦ୍‌ଭିଦ
ପ୍ରାଣୀ ଅଛନ୍ତି ଏପରି ଭବେ ଚଉବିଧ
ରହିଛନ୍ତି ଏ ସମସ୍ତେ ସୂର୍ଯ୍ୟ ପ୍ରଭାବରେ
ଶକ୍ତି ସୂର୍ଯ୍ୟଙ୍କର କହି ନୁହଇ ମୁଖରେ
ଏହିପରି ଜଗତର ରକ୍ଷଣ ପାଳନ
ହେଉଅଛି ସବିତାଙ୍କ ଯୋଗୁଁ ସଙ୍ଘଟନ
ଚରାଚର ରକ୍ଷଣରେ ସୂର୍ଯ୍ୟଙ୍କରପରି
ନାହାନ୍ତି କେ ତିନିପୁରେ ରଖ ହେତୁ କରି

ଜୀବନଯାକ ସୂର୍ଯ୍ୟଙ୍କୁ ଯେ କରେ ଦର୍ଶନ
ବିଶେଷରେ ଆୟୁତ ର ହୁଅଇ ବର୍ଦ୍ଧନ
ସୂର୍ଯ୍ୟଙ୍କର ଆରାଧନା ବିପ୍ରଯେବେ କରେ
ନାଶହୁଏ ତାର ସବୁ ପାପ ନିଶ୍ଚୟରେ
ସଂସାରକୁ ନୁହେ ଆଉ ତାର ଆବର୍ତ୍ତନ
ମଲେ ତାରହୋଇଥାଏ ସତ୍ୟଲୋକେ ସ୍ଥାନ
ଜୀବନ୍ତରେ ସବୁ ସିଦ୍ଧି ବିଶ୍ୱେ କରେ ଲାଭ
ତାଭାଗ୍ୟରେ ସବୁସୁଖ ହୁଅଇ ସୁଲଭ
ବ୍ରାହ୍ମଣ ସୁବିଜ୍ଞ ଯେବେ ସନ୍ଧ୍ୟା ବନ୍ଦନରେ
ଦୁଇବାହୁ ଉପରକୁ ଟେକି ଭକ୍ତିଭରେ
ଆରାଧନା କରୁଥାଏ ମୋଦେ ସୂର୍ଯ୍ୟଙ୍କର
ଦୂର ହୋଇଯାଏ ସବୁ ଦୁରିତ ତାହାର
କରନ୍ତି ମଧ୍ୟ ତାହାକୁ ପୂଜା ଦେବଗଣ
ତିଳେହେଁ ସଂଶୟ ଚିତ୍ତେ ଏଥିରେ ନଆଣ
ସୂର୍ଯ୍ୟଙ୍କ ମଣ୍ଡଳ ସ୍ଥାନ ସନ୍ଧ୍ୟ ଦେବୀଙ୍କର
ଗାୟତ୍ରୀ ନାମରେ ଯାର ରହିଛି ପ୍ରଚାର
ସେହି ଅଟନ୍ତି କେବଳ ବେଦଙ୍କର ମାତା
ସନ୍ଧ୍ୟା ଏହିସବୁ ନାମେ ହୁଅନ୍ତି ବିଦିତା
ଯେଉଁ ବିପ୍ର ଉପାସନା ଏହାଙ୍କୁ କରଇ
ସ୍ୱର୍ଗରେ ନିବାସ ତାର ସର୍ବଦା ହୁଅଇ
ଶ୍ରେଷ୍ଠ ପୁରୁଷାର୍ଥ ଲାଭକରି ଜୀବନରେ
ସନ୍ଦେହ ନଥାଇ ଶ୍ରେଷ୍ଠ ମୁକ୍ତିଲାଭକରେ
ଉଚ୍ଛିଷ୍ଟ ଅମେଧ ଯାହା ଜଗତରେ ଅଛି
ସୂର୍ଯ୍ୟଙ୍କ କିରଣ ପାତେ ପବିତ୍ର ହେଉଛି
ସନ୍ଧ୍ୟାଙ୍କର ଉପାସନା ଯଦ୍ୟପି କରିବ
କଳ୍ମଷ ଯେତେକ ସବୁ ପବିତ୍ର ହୋଇବ
ଯେଉଁ ବିପ୍ର ମତେ ମୋକ୍ଷ କରିଣ କାମନା
ବେଦ ବିଧି ମତେ ମୋକ୍ଷ କରିଣ କାମନା
ତାହାର ସବୁ ପାତକ ହୋଇଯାଏ କ୍ଷୟ
ମନରେ ନଧର ଏଥି ତିଳେହେଁ ସନ୍ଦେହ
ଚଣ୍ଡାଳ ଯୋନିକୁ ଯେବେ କରିବ ଦର୍ଶନ
ଗୋମାତାକୁ କରିଥାଏ ଯେ ଜନ ହନନ
ତ୍ୟାଗକରି ଯେହୁ ହୁଅଇ ପତିତ
ଅବା ଯେ ହୋଇଅଛି କୁଷ୍ଟବ୍ୟାଧି ଗ୍ରସ୍ତ
କୋପେ ଉପପାତକରେ ଲିପ୍ତ ଯେଉଁନର
ଦର୍ଶନେ ଯେଉଁ ପାପ ହୁଅଇ ଲୋକର

ସୂର୍ଯ୍ୟଙ୍କ ଦର୍ଶନ ଫଳେ ସବୁଯାଏ ନାଶ
ସାଯୁଜ୍ୟ ମୁକତି ତାକୁ ମିଳଇ ଅବଶ୍ୟ
ଉପାସନା ଯେ କରଇ ସୂର୍ଯ୍ୟଦେବଙ୍କର
ସମସ୍ତ ରୋଗ ତାହାର ହୋଇଯାଏ ଦୂର
ଆରୋଗ୍ୟ ଲଭି ସେ ପାଏ ସୁଖ ଜୀବନରେ
ଏତେ ଗୁଣ ରହିଅଛି ଆଦିତ୍ୟଙ୍କ ଠାରେ
ସୂର୍ଯ୍ୟ ଉପାସନା ଫଳେ ପ୍ରଭାବ ବଢ଼ଇ
ଦୃଷ୍ଟିହୀନତା ଘୁଚିରେ ଯାଏ ଦୂରହୋଇ
ଦୁଃଖ ନାଶ ଯାଏ କେବେ ଦରିଦ୍ର ନହୁଏ
ଶୋକ ଚିନ୍ତା ତା ଜୀବନେ କଦାପି ନଥାଏ
ହରିହରଙ୍କ ଦର୍ଶନ କରେ ଯେଉଁନର
ସଦ୍ୟଫଳ ଲାଭ କେବେ ନହୁଏ ତାହାର
ପ୍ରତ୍ୟକ୍ଷରେ ମିଳେ ନାହିଁ ଏହାଙ୍କ ଦର୍ଶନ
କରାଯାଏ ମାତ୍ର ଧ୍ୟାନେ ତାହାଙ୍କ ମନନ
ସୂର୍ଯ୍ୟ ଭଗବାନ କିନ୍ତୁ ନୁହନ୍ତି ସେପରି
ପ୍ରତ୍ୟକ୍ଷ ଦର୍ଶନ ଦ୍ୟନ୍ତି ବିଶ୍ୱେ ଦୟାକରି
କହିଲେ ଅମରଗଣେ ଆହେ ଚଉମଥା
କହିଲ ଯେପରି ରବି ଆରାଧନା କଥା
କହିଲ ପୁଣି ଯା ସୂର୍ଯ୍ୟ ମହିମା ଅପର
ନିଶ୍ଚୟ କି ତାହା ଠିକେ କରନ୍ତୁ ପ୍ରଚାର
ସୂର୍ଯ୍ୟଙ୍କ ଭଜନା ମାତ୍ର କରିବ ବା ନର
ଅବା କରିବ ଭଜନା ଅନ୍ୟ ଦେବଙ୍କ
ସୂର୍ଯ୍ୟଙ୍କ ସହିତ ଅନ୍ୟ ଦେବଙ୍କ ଭଜନ
ହୋଇ ପାରିବକି ନାହିଁ କହନ୍ତୁ ବହନ
ମାତ୍ର ସୂର୍ଯ୍ୟଙ୍କ ଦର୍ଶନ ଅଟଇ ଭୀଷଣ
ତେଜ ଅଟଇ ପ୍ରଳୟ କାଳାଗ୍ନି ସମାନ
ଚାହିଁବ ତାଙ୍କୁ କହନ୍ତୁ କିଏ କେଉଁପରି
ସନ୍ଦେହ ଏ ବିଷୟରେ ବିଶେଷ ଆମ୍ଭରି
ସେ ଯେ ହେଉପ୍ରାଣୀ ସୂର୍ଯ୍ୟ ମଣ୍ଡଳେ ଚାହିଁଲେ
ତା ତାତିରେ ମୃତପରି ହୋଇଯାଏ ଭଲେ.
ଉଗ୍ର ସୂର୍ଯ୍ୟଙ୍କ ତେଜରେ ଶୁଖଇ ସାଗର
ପୋଖରୀ ହ୍ରଦ ତଡ଼ାଗ କେତେ ବା ମାତର
ତାହାଙ୍କ ସେ ତେଜ କରିବାକୁ ନେତ୍ରଗତ
ଆମ୍ଭେ ଦେବଗଣ ମଧ୍ୟ ନୋହୁ ସମରଥ
ଅନ୍ୟ ଛୋଟ ଜୀବକଥା ଭାବିବା କିପାଇଁ
କିପରି ହେବୁ ସମର୍ଥ ଅରଚନା ପାଇଁ

ତେଣୁ କହନ୍ତୁ ଆପଣ ଉପାୟ ତାହାର
ଯେପରି କରିବେ ସର୍ବେ ଅର୍ଚ୍ଚନା ତାଙ୍କର
କହିଲେ ବ୍ୟାସ ଶୁଣ ହେ ବଇଶମ୍ପାୟନ
ଦେବଙ୍କ ମୁଖରୁ ଶୁଣି ବଚନ ଏସନ
ଦେବଙ୍କୁ ସଙ୍ଗରେ ଧରି ସାବିତ୍ରିଙ୍କ ପତି
ଦର୍ଶନକଲେ ସେକ୍ଷଣି ଯାଇ ଖଗପତି
ବ୍ରହ୍ମା ପୁଣି ସ୍ତୁତିକଲେ ତାଙ୍କୁ ଭକ୍ତିଭରେ
ସମସ୍ତ ଲୋକର ହିତ ଚିନ୍ତି ମାନସରେ
ଆହେ ସୂର୍ଯ୍ୟତୁମେ ଅଟ ସର୍ବଲୋକେଶ୍ୱର
ପୁଣି ଅଟ ତୁମେ ଚକ୍ଷୁ ସମସ୍ତ ଲୋକର
ସାକ୍ଷାତ ବ୍ରହ୍ମରୂପେ ତୁମ୍ଭର ଅଟଇ
ତୁମ୍ଭ ଜ୍ୟୋତି କାଳାନଳ ଜ୍ୟୋତିକୁ ନିନ୍ଦଇ
ସର୍ବ ଦେବଙ୍କର ସ୍ଥିତି ତୁମ୍ଭେ ଦିବାକର
ସଖା ତୁମର ସର୍ବଦା ଅଟନ୍ତି ସମୀର
ତୁମର ଯୋଗରୁ ଅନ୍ନ ଆଦି ହୁଏ ଜୀର୍ଣ୍ଣ
ସତ୍ୟ ଏହା ତୁମଯୋଗୁଁ ରହଇ ଜୀବନ
ପ୍ରଳୟରେ ଉତ୍ପତ୍ତିରେ ତୁମେ ହିଁ ଈଶ୍ୱର
ତୁମ ଅଭାବେ ଜୀବନ ନରହେ କାହାର
ସମସ୍ତ ଲୋକର ପ୍ରଭୁ ତୁମେ ହେ ସବିତା
ତୁମେ ମଧ୍ୟ ଅଟ ବିଶ୍ୱ ତ୍ରାତା ଗୋପ୍ତାପିତା
ଚର ଅଚର ବିଶ୍ୱର ତୁମ୍ଭ ପ୍ରସାଦରେ
ରହିଅଛି ସ୍ଥିର ହୋଇ ସବୁରି ମତରେ
ଦେବଙ୍କ ମଧ୍ୟରେ ନାହିଁ ତୁମପରି କେହି
ସର୍ବ ଅଖିଳରେ ତୁମେ ଅଟ ଭାବଗ୍ରାହୀ
ସକଳ ଭୁବନେ ସର୍ବ ବାହ୍ୟ ଅଭ୍ୟନ୍ତରେ
ହେ ସବିତା ରହିଅଛ ତୁମେ ନିରନ୍ତରେ
ତିନିପୁରେ ନାହିଁ ଏହିପରି ସ୍ଥାନ କାହିଁ
ଯେଉଁଠି ତୁମର ସ୍ଥିତି ଅଭାବ ଅଟଇ
ତୁମ୍ଭ ସତ୍ତା ସଦା ସବୁଠାରେ ବିଦ୍ୟମାନ
ତ୍ରିଲୋକ ଈଶ୍ୱର ତୁମ୍ଭେ ତେଣୁ ବିବସ୍ୱନ
ତୁମ୍ଭେ ଧରି ରଖିଅଛ ବିଶ୍ୱ ଚରାଚର
ରୂପରସ ଗନ୍ଧ ସବୁ ତୁମ୍ଭେ ତ୍ରିପୁରର
ବିଶ୍ୱର ସବୁ ସ୍ଥିତିରେ ତୁମ୍ଭେ ହିଁ କାରଣ
ସମ୍ପୂର୍ଣ୍ଣେ କି ବର୍ଣ୍ଣି ହେବ ପ୍ରଭୁ ତୁମ୍ଭ ଗୁଣ
ତୁମେ ବିଶ୍ୱେ ଶ୍ରେଷ୍ଠ ତୀର୍ଥ ଯଜ୍ଞର ମଧ୍ୟରେ
ତୁମ୍ଭେ ଅଟ ସାକ୍ଷୀ ପ୍ରଭୁ ସମସ୍ତ କର୍ମରେ
ଅଟ ପୁଣି ତୁମେ ସବୁ ଗୁଣର ଆକାର
ସର୍ବଙ୍କ ମଧ୍ୟରେ ଶ୍ରେଷ୍ଠ ତୁମେ ଚଣ୍ଡକର
ତୁମେ ଅଟ ବିଶ୍ୱ ସୃଷ୍ଟି ସଂହାର କରତା
ବିଶ୍ୱର ପାଳକ ପୁଣି ଅଟ ତୁମେ ତ୍ରାତା
ସର୍ବଦା ଉଜ୍ଜଳ ତୁମେ ଆହେ ଚଣ୍ଡକର
ତୁମ ହେତୁ ନାଶହୁଏ ମହା ଅନ୍ଧକାର
ଦାରିଦ୍ର୍ୟ ହୁଅଇ ନାଶ ତୁମର ଭଜନେ
ଆହେ ପ୍ରଭୁ ତ୍ରିପୁରର ବନ୍ଧୁ ଅଟ ତୁମେ
ତୁମଯୋଗୁ ଦୃଷ୍ଟିଶକ୍ତି ହୁଏ ବିବର୍ଦ୍ଧନ
ହୋଇଅଛି ତେଣୁ ବିଶ୍ୱଚକ୍ଷୁ ତୁମନାମ
ବ୍ରହ୍ମାସ୍ତୁତି ଶୁଣି ତୋଷହୋଇ ଚଣ୍ଡକର
କହିଲେ ଶ୍ରବଣକର ସାବିତ୍ରୀଙ୍କ ବର
ତ୍ରିପୁରରେ ଶ୍ରେଷ୍ଠ ତୁମେ ମନୀଷୀ ଗଣରେ
ପୁଣି ତୁମେ ଅଟ ଶ୍ରେଷ୍ଠ ସମସ୍ତ ବିଶ୍ୱରେ
ସଦା ଇଚ୍ଛାକରେ ବିଶ୍ୱ କରୁଣା ତୁମ୍ଭର
କି କରିବି ସେ ଆଦେଶ ଦିଅନ୍ତୁ ସତ୍ୱର
ପାଳିବି ନିଶ୍ଚୟ ମୁହିଁ ତୁମ୍ଭର ବଚନ
ଯା ତୁମ୍ଭର ଇଚ୍ଛା ତାହା କରିବି ପୂରଣ
ଶୁଣି ସୂର୍ଯ୍ୟଙ୍କର ସେହି ସୁମଧୁର ବାଣୀ
ତୋଷେ କହି ଆରମ୍ଭିଲେ ଦେବ କୁଶପାଣି
ମୋହର ମିନତି ଘେନି ଆହେ ସୁରେଶ୍ୱର
ତୁମ୍ଭର କିରଣ ପ୍ରଭୁ କିଛି ଊଣାକର
ପୂର୍ଣ୍ଣତେଜ ଏବେ ଯାହା ରହିଛି ତୁମ୍ଭର
ସହିବାକୁ ତାହା ଶକ୍ୟ ନୁହେ ଚରାଚର
ଯେ ରୀତିରେ ଊଣାହେବ ତୁମ୍ଭର କିରଣ
ସେହି ଉପାୟ ବିଚାରି କହିବ ଆପଣ
ବ୍ରହ୍ମାଙ୍କ ବଚନ ଶୁଣି ଦେବ ଚଣ୍ଡକର
କହିଲେ ହେ ବ୍ରହ୍ମ ଜାଣେ କାରଣ ମୁଁ ତାର
ତତ୍ପର ମୋ ଏ କିରଣ ଲୋକ ବିନାଶରେ
ବିନିଯୋଗ ନୁହଇ ଏ ଲୋକ ରକ୍ଷଣରେ

ତେଣୁ କହୁଛି ତୁମ୍ଭଙ୍କୁ ହେ ଚତୁରାନନ
ଲୋକ ଶୁଭ ପାଇଁ କରଏହାକୁ ଛେଦନ
ବ୍ରହ୍ମା ଶୁଣି ସୂର୍ଯ୍ୟଙ୍କର ବଚନ ଏପରି
ସ୍ମରିଲେ ସେକ୍ଷଣି ବିଶ୍ୱକର୍ମ ଧ୍ୟାନକରି
ଜାଣି ବିଶ୍ୱକର୍ମା ପିତାମହଙ୍କ ସ୍ମରଣ
ସେହିକ୍ଷଣି ସେ ସ୍ଥାନକୁ କଲେ ଆଗମନ
ଦେଖି ପିତାମହ ବିଶ୍ୱକର୍ମାଙ୍କୁ ଆଦରେ
କହିଲେ ଗଢ଼ିବ ଶସ୍ତ୍ର ଶ୍ରେଷ୍ଠ ଯା ବିଶ୍ୱରେ
ବିଶ୍ୱକର୍ମା ବ୍ରହ୍ମାଙ୍କର ଆଦେଶ ପାଇଲେ
ସେହିକ୍ଷଣି ଶ୍ରେଷ୍ଠ ଏକ ଅସ୍ତ୍ର ନିର୍ମାଣିଲେ
ସେ ଅସ୍ତ୍ରେ ଛେଦିତ  ହେଲା ସୂର୍ଯ୍ୟଙ୍କ କିରଣ
ଯାହା ହୋଇଥିଲା ତ୍ରିପୁରର ଅସହଣ
ଛେଦିତ କିରଣ ରାଶି କରି ଏକତ୍ରିତ
କହିଲେ ବିଶ୍ୱକର୍ମାଙ୍କୁ ବ୍ରହ୍ମା ଲୋକତାତ
ଚକ୍ର ଏକ ନିର୍ମାଣିବ ଏ ତେଜ ଅଂଶରେ
ସୁଦର୍ଶନ ନାମେ ହେବ ଖ୍ୟାତ ଜଗତରେ
ଅୟୁଧ ହୋଇବ ତାହା ନାରାୟଣଙ୍କର
ବିଶ୍ୱକର୍ମା ଶୁଣି ବ୍ରହ୍ମାଙ୍କର ସେହି ଗୀର
ନିର୍ମାଣିଲେ ଅତି ଯତ୍ନେ ଚକ୍ର ସୁଦର୍ଶନ
ପରେ ବିଷ୍ଣୁଙ୍କର  ହେଲା ସେ ଚକ୍ରର ସ୍ଥାନ
ଆଉ ଯେତେକ କିରଣ ତହୁଁ ବଳିଥିଲା
ବିଜ୍ଞ ପିତାମହଙ୍କର ଚିତ୍ତ ଆକର୍ଷିଲା
ନିର୍ମିତ ହୋଇଲା ଦଣ୍ଡ ତାହାର ଅଂଶରେ
ଯମଦଣ୍ଡ ବୋଲି ତାହା ଖ୍ୟାତ ଜଗତରେ
ତ ବଳେ ଶାସନ ଯମ କରନ୍ତି ସଂସାର
ବିଶ୍ୱ ବିନ୍ଧାଣି ଅଟନ୍ତି ନିର୍ମାତା ତାହାର
ବଳକା ତେଜରୁ କିଛି ପୁଣି ସଂଗୃହିଲେ
ଆଉର ତହିଁରୁ ଏକ ତ୍ରିଶୂଳ ଗଢ଼ିଲେ
ଦେଖି ତାକୁ ବ୍ରହ୍ମା ହର୍ଷେ ଦେଲେ ଶିବକରେ
ଶୂଳୀ ନାମେ ଶିବତେଣୁ ଖ୍ୟାତ ତ୍ରିଲୋକରେ
ସେ ତେଜୁ ହେଲା ନିର୍ମିତ ପୁଣି ଏକ ଅସି
କାଳଙ୍କର କରେ ବ୍ରହ୍ମାହେଲେ ତାହାହସି

ଅଟଇ ସେହି ଖଡ଼୍ଗର ମହିମା ଅଭୁତ
କ୍ଷଣକେ ସେ କରିପାରେ ତ୍ରିପୁର ନିପାତ
ରାତି ଦିନ ରହିଥାଏ ତାହା କାଳକରେ
ଆଉର ନିଯୁକ୍ତ ହୁଏ ପ୍ରାଣୀ ଶାସନରେ
ପ୍ରମୋଦିନୀ ଶକ୍ତି ଯାହା ଥିଲା ସେ କିରଣେ
ନିର୍ମିତ ହୋଇଲା ଶୂଳ ଅସୁର ନାଶନେ
ବ୍ରହ୍ମା ତାକୁ ନେଇ ଦେଲେ ଆଦ୍ୟାଶକ୍ତି ହାତେ
ଶୂଳ ବୋଲି ନାମ ତାର ବିଦିତ ଜଗତେ
ବିଶ୍ୱକର୍ମା ପୁଣି ବ୍ରହ୍ମା ଆଦେଶ ପାଇଲେ
ରବିଙ୍କଠାରୁ ସହସ୍ରେ ତେଜ ଛିନ୍ନକଲେ
ଅଜନ୍ମା ଅଟଇ ସେହି ରବିତେଜ ଜାଳ
ଅଦିତିଙ୍କର ଗର୍ଭରେ ହେଲାଯାଇ ଠୁଳ
ସେଗର୍ଭରୁ ପରେ ଯେଉଁ ସୁତ ଜନମିଲା
ଜଗତରେ ନାମ ତାର ଆଦିତ୍ୟ ହୋଇଲା
ଜାତ ପରେ ପରେସେହି ନୂତନ ନନ୍ଦନ
ମେରୁ ପର୍ବତ ଶିଖରେ କଲା ବିଚରଣ
ଲକ୍ଷେ ଯୁଣ ଉଚ୍ଚ ସେହି ଶିଖରୀ ଶିଖର
ସର୍ବଦା ଦିବା ପ୍ରକାଶ ହେଲା ତା ଉପର
ଗ୍ରହ ନକ୍ଷତ୍ରାଦି ତାକୁ ରହିଥିଲେ ଘେରି
ରାତି ଦିନ କିଏ ଜଣା ନୋହିଲା କାହାରି
ଅଟନ୍ତି ଦ୍ୱାଦଶାତ୍ମକ ସେ ଅଦିତି ସୁତ
ଦ୍ୱାଦଶ ମାତ୍ର ତହିଁରୁ ହୋଇଲା ସମ୍ଭୂତ
ଥିଲା ମଧ୍ୟରେ ତାହାରଷଡ଼ ସଙ୍କ୍ରମଣ
ତହୁଁ ସଙ୍କ୍ରାନ୍ତିର ସୃଷ୍ଟି ହେଲା ବୋଲି ଜାଣ
ଏ ସଂକ୍ରାନ୍ତି ମାନଙ୍କର ଭିନ୍ନ ଭିନ୍ନ ଫଳ
ଶୁଣ କହିବି ତୁମ୍ଭଙ୍କୁ ବୁଝାଇ ସକଳ
ଧନୁ କନ୍ୟା ମୀନ ମିଥୁନ ଏ ଚାରିଙ୍କର
ଷଡ଼ଶୀତି ବୋଲି ନାମ ହୋଇଛି ପ୍ରଚାର
ବିଛା କୁମ୍ଭ ସିଂହ ବୃକ୍ଷ ମଧ୍ୟ ସେ ପ୍ରକାରେ
ବିଷ୍ଣୁପଦୀ ରୂପେ ଖ୍ୟାତ ଅଟନ୍ତି ସଂସାରେ
ଯେ କରେ ବିଷ୍ଣୁପଦୀରେ ପିତୃଙ୍କ ତର୍ପଣ
ମହତ ପୁଣ୍ୟ ତାହାର ହୁଅଇ ଅର୍ଜନ
ପିତୃଙ୍କୁ ତାରି ସେ ପୁଣ୍ୟେ ନିଯେ ଯାଏ ତରି
ଜୀବନରେ କ୍ଳେଶ କିଛି ନହୁଏ ତାହାରି

ସେହି ପୁଣ୍ୟ ରହିଥାଏ ହୋଇଣ ଅକ୍ଷୟ
ଏଥିରେ ତିଳେ ମନରେ ନ ଘେନ ସଂଶୟ
ଋତୁ ଶୀତିରେ ଏସବୁ ଯେହୁ ଆଚରିବ
ତାହାଠାରୁ ଶହେ ଗୁଣ ଫଳ ସେ ପାଇବ
ସଙ୍କ୍ରାନ୍ତିରେ ବିପ୍ରେ ଯେହୁ ତୁଳା ଦାନ କରେ
ତାର ପୁଣ୍ୟ ଫଳ କହି ନୁହଇ ବାକ୍ୟରେ
ନିଜ ଓଜନରେ ତୁଳା କରିଣ ଓଜନ
ବିପ୍ରେଦାନ କଲେ ହୁଏକୋଟିଗୁଣ ପୁଣ୍ୟ
ତୁଳାରେ ଉତ୍ତମ ଶଯ୍ୟା କରିଣ ନିର୍ମାଣ
ଉପ ଧାନସହ ବିପ୍ରେ ଯେ କରେ ପ୍ରଦାନ
କୋଟିଗୁଣ ହୋଇଯାଏ ତାର ପୁଣ୍ୟଫଳ
ଲଭି ମୋକ୍ଷ ବଇକୁଣ୍ଠେ ସେ ଯାଏ ଚଞ୍ଚଳ
ବିପ୍ରଙ୍କୁ ଦାନ ଦେବାରେ ଯେ କରିବ ଲୋଭ
ପିତୃ ପୁରୁଷଙ୍କ ସଙ୍ଗେ ନର୍କେ ସେ ପଡ଼ିବ
ନିର୍ଲୋଭୀ ହୋଇଣ ଯେହୁ ଏହି ଦାନକରେ
ନିଶ୍ଚୟ ସେ ଲଭେ ଜନ୍ମ ନୃପତି କୁଳରେ
ଶେଷହେଲା ଏଥି ସୂର୍ଯ୍ୟ ମାହାତ୍ମ୍ୟ ବର୍ଣ୍ଣନ
କହିଲେ ବ୍ୟାସ ଶୁଣିଲେ ବଇଶମ୍ପାୟନ
ଏ ପଦ୍ମ ପୁରାଣ ଅଟେ ପୁରାଣେ ପ୍ରଥମ
ସୃଷ୍ଟିଖଣ୍ଡ ତା ମଧ୍ୟରେ ଅଟଇ ପ୍ରଧାନ
ତାର ଗାତ୍ରେ ଅଛି ବହୁ ବିଷୟ ସଞ୍ଚାର
ଭକ୍ତିଭରେ ତେଣୁ ଏହା ପଢ଼େ ଯେଉଁ ନର
ରୋଗ ଶୋକ ଭୟ ହୀନ ସେ ହୁଏ ନିରତେ
ଲଭେ ସୁଖ ଯେତେଦିନ ଥାଏ ଏ ଜଗତେ
ଅଥବା ଯେ ପଢ଼ି ଏହା ଶ୍ରୋତାଙ୍କୁ ଶୁଣାଏ
କଦାପି ବାକ୍ୟରେ ତାର ପୁଣ୍ୟ କହି ନୁହେ
କହେ ଗୋପୀନାଥ ପ୍ରଭୁ ଶରଚାପଧର
ହୃଦୟରେ ମୋର ରାଜ ନିଶି ଓ ବାସର
ଥାଉ ତୁମ୍ଭ ନାମ ନିରନ୍ତର ମୋ ମୁଖରେ
ତୁମ୍ଭ ସ୍ମୃତି ପୂର୍ଣ୍ଣ ହେଉ ମୋହର ହୃଦରେ
ମୋ ନେତ୍ର କରୁ ଦର୍ଶନ ତୁମ୍ଭର ବିଗ୍ରହ
ତୁମ୍ଭ କୀର୍ତ୍ତୀ ଶ୍ରବଣରେ ବଢ଼ୁ ମୋ ଆଗ୍ରହ
ପୁଣି ହେ ଶ୍ରୀରାମ କହେ କରି ନିବେଦନ
ମୋହର ଏହି କାମନା କରନ୍ତୁ ପୂରଣ

ଇତି ଶ୍ରୀ ପଦ୍ମପୁରାଣେ ସୃଷ୍ଟି ଖଣ୍ଡେ ବ୍ୟାସ
ବୈଶମ୍ପାୟନ ସମ୍ବାଦେ ସୂର୍ଯ୍ୟାମାହାତ୍ମ୍ୟ
ବର୍ଣ୍ଣନେ ନାମ ଊନତ୍ରିଂଶୋଧ୍ୟାୟଃ

❑

**ସମାପ୍ତ**


ଧର୍ମ